।। **ଭାରତ ମାତାର ଲୁହ** ।। ଲେଖିକା : ଡକ୍ଟର ପ୍ରତିଭା ଶତପଥୀ ।। ପ୍ରକାଶକ : **ମିତା ବୁକ୍ସ**, କାମିନୀକୃଷ୍ଣ ମାର୍କେଟ, ବାଦାମବାଡ଼ି, କଟକ-୯ ।। ପ୍ରଥମ ପ୍ରକାଶ : ୨୦୦୨ ।। ଡି.ଟି.ପି.: ଏମ୍. ପ୍ରିଣ୍ଟର୍ସ,ବି.ଜେ.ବି. ନଗର, ଭୁବନେଶ୍ୱର ।। ମୁଦ୍ରଣ : ସାଥୀ ଅଫସେଟ୍, କଟକ ।। ମୂଲ୍ୟ : ୮୦.୦୦

II **BHARATAMATARA LUHA** II Written by : Dr. Prativa Satapathy II II Published by : **Mita Books**, Kaminikrishna Market, Badambadi, Cuttack-9 II 1st Publication - 2002II D.T.P.: M. Printers, B.J.B. Nagar, Bhubaneswar II Price : Rs.80.00

# ଲୁହ ପୋଛି ହୁଏନା ବୋଲି...

ଖୁବ୍ ନିକାଞ୍ଚନ ବେଳରେ, କେବେକେବେ ରାତି ଅଧରେ କିଛି ବୋହିପଡ଼ିବାର ଅନୁଚ୍ଚ ଶବ୍ଦ ଶୁଭିଯାଏ.. । ଦିଶିଯାଏ, ବର୍ଷାଧାର ପରି ଗଳଗଳ ଲୁହରେ ବତୁରି ଯାଉଛି ମାଟି । ବାସ୍ତବରେ ଯେ ଲୁହ ପୃଥ୍ୱୀମାତାର, ମୋ ଭାରତମାତାର । ପୃଥ୍ୱୀର ଅଜସ୍ର ଲୁହ ସହିତ ମିଶି ଏକକାର ହୋଇଛି ଭାରତମାତାର ଲୁହ । ସେଇ ଲୁହର ପ୍ରବଳ ନିର୍ଝର ମୋତେ ସିକ୍ତ କରେ, ଆକ୍ରାନ୍ତ କରେ । ସେଇ ଲୁହ ମୋ କବିତାରେ ଶେଷତମ ଦୀର୍ଘଶ୍ୱାସ ହୋଇ ପହଁରେ, ମୋ ରକ୍ତ ସୁଅରେ ଆହତ କ୍ରୌଞ୍ଚର କରୁଣ ଆର୍ତ୍ତନାଦ ଛୁଟାଏ । ଶଠତାର, ମାନବୀୟର ନିଷ୍ଠୁରତାର, ଅଦୃଷ୍ଟର ଦଣ୍ଡ, - କେତେ କେଜାଣି ମୋ ସାମ୍ନାରେ ପ୍ରମୂର୍ତ୍ତ ହୁଏ । ମାନବ ସମୂହର ଲୁହଧାର ରକ୍ତଧାରରେ ପରିଣତ ହୁଏ ଓ ସେହି ରକ୍ତଧାର ଛୁରୀ ଭଳି ବିଦ୍ଧ ହୋଇଯାଏ ମୋର କଲିଜାରେ, ନିଃଶ୍ୱାସ ଅଟକି ଯାଏ । ମଣିଷର ହତାଶା, ଅନ୍ଧବିଶ୍ୱାସ, ଅବିଚାର, ମୂର୍ଖତା, ଏ ସବୁକିଛି ପ୍ରାତ୍ୟହିକ ଜୀବନର ସ୍ତରେ ସ୍ତରେ ଅବିରତ କ୍ରିୟାଶୀଳ ହୋଇ ରହିଥାଏ । ଉପଲବ୍ଧିର କଷଟିରେ ପରଖି ପରଖି ମୁଁ ବିଗଳିତ ହୋଇପଡ଼େ ।

ନାରୀ ମଣିଷଟି ଯେ ଅବଳା, କୋମଳା, ସ୍ନେହଶୀଳା, ସେ ମାତୃଜାତିର ପ୍ରତିନିଧି । ବରଫଖଣ୍ଡ ପରି ତରଳିଯାଇ ସେ ଏକାଧିକ ଦେହରେ ସଂଚରିଯାଏ, ଏକରୁ ଅନେକ ହୋଇଯାଏ । ଶାରୀରିକ ଗଠନରୁ,ସାମାଜିକ ଅବିଚାରରୁ ସେ ବହୁଭାବରେ ଶୋଷଣ ଶିକାର ହୁଏ । ନାରୀର ସକଳ ବେଦନାର ଅଶ୍ରୁ ମହାଅଶ୍ରୁର ପ୍ରବାହଟିଏ ହୋଇ ଚିରକାଳ ମାନବଜାତିର ଅନ୍ତରବାହାରକୁ ଧୌତ କରୁଥାଏ ।

ଅଥଚ ମୁଁ, ''ଭଙ୍ଗା, ଭୁଷୁଡ଼ା ପୋଡ଼ାଜଳା ମଝିରେ ଜର୍ଜର ଲୁହ ଠୋପାକ ମୁଁ'' (ପରୀସାଙ୍ଗେ ଦିନେ-୩), ପ୍ରକୃତରେ ଲୁହ ଠୋପାଏ ହିଁ । ନିଜ ଓଜନରେ ନିଜେ ଅସମ୍ଭାଳ ହୋଇ ଖସିପଡ଼େ । କାହାରି ଲୁହ ପୋଛି ଦେବାର ସାମର୍ଥ୍ୟ ଅର୍ଜନ କରିପାରେ ନାହିଁ । ମୋକ୍ଷକୁ ଅସ୍ୱୀକାର କରି, ମଣିଷର ଦୁଃଖରେ ସମଭାଗୀ ହେବାର ଅଭିଳାଷ ପୋଷଣ କରି ମଧ, ପ୍ରକୃତପକ୍ଷେ ଲୁହ ପୋଛିଦେବା ମୋ ପରି ଜଣେ କବି ପକ୍ଷରେ ସମ୍ଭବ ହୋଇପାରେନାହିଁ । ତା'ହେଲେ କେମିତି ମୁଁ ମୋର ଆକୁଳତାକୁ ପ୍ରକାଶ କରି ଆଶ୍ୱସ୍ତ

ହୁଏ ? ବୋଧହୁଏ ଆତ୍ମସନ୍ତୋଷଟିକେ ପାଇଥାଏ । ସେଇଥିପାଇଁତ ଏଇ ଆଲୋଡ଼ନ, ହାହାକାର ଓ ଅସହାୟତା- ତା'ର ଉଚ୍ଚାରଣ ! ଆତ୍ମାର ଛଟପଟରୁ, ସୁମନାସରୁ ଖିଅପରେ ଖିଅ ଓଟାରି ଲୁଗା ଖଣ୍ଡିଏ ବୁଣୁଥାଏ - ଶବ୍ଦର ଲୁଗାରୁ ଟୁକୁରାଏ, କେଜାଣି କେଉଁ ମାହେନ୍ଦ୍ର ଲଗ୍ନରେ, କୋଉ ଶୁଭ ପ୍ରଭାତରେ ପୋଛି ଦେଇପାରିବି ଲୁହ, ଭାରତମାତାର, ପୃଥ୍ୱୀ ମାତାର, ମଣିଷର ! ବହୁ ପ୍ରଶ୍ନ ମନସ୍କତା, ଅଭିଯୋଗ ଓ ପ୍ରତିବାଦ ମଧ୍ୟରେ ଲୁହ ପୋଛିଦେଇ ପାରିବାର ଏଇ ଅଭିଳାଷ ଜାଗ୍ରତ ରହିଥାଏ ।

ଯଦି କେବେ ସମମର୍ମିତା ଖୋଜିବସେ ଆପଣମାନଙ୍କଠାରୁ, ପାଠକେ, କିମ୍ବା ମୋର ବାନ୍ଧବୀ ରୁନୁଠାରୁ, ମୁଁ ଜାଣେ ଯେ, ଆପଣ ବା ସେ ଭିନ୍ନ କେହି ନୁହନ୍ତି । ମୋର ଗୋଟିଏ ଗୋଟିଏ ରୂପ ମାତ୍ର । ସେମାନଙ୍କ ଭିତରେ ମୁଁ, ମୋ ଭିତରେ ସେମାନେ । ମୁଁ ଲୁହପୋଛିଦେବାର ଅନନ୍ୟ ଅଭିଳାଷଟିକୁ ବାଣ୍ଟିଦିଏ ସେମାନଙ୍କ ଭିତରେ । ସେମାନେ ବି ଏଇ ଭଳି ଅଭିଳାଷକୁ ପୋଷଣ କରିଥାନ୍ତି ଗୋପନରେ, ଖୁବ୍ ଭିତରେ, ଛାତିର ମଞ୍ଜ ପାଖରେ । ମୁଁ ଖାଲି ସେମାନଙ୍କ କାନରେ ଫୁଙ୍କିଦିଏ ଟିକେ -ଛାତିର ମଞ୍ଜ ପାଖରେ ଟିପ ଛୁଆଇଁ ଦିଏ, ସନ୍ତର୍ପଣରେ । ତା'ପରେ କେତେ ଚିଠି, ପ୍ରଶ୍ନ, କେତେ ଅଭିନନ୍ଦନ ବର୍ଷିଯାଏ ମୋ ଉପରେ- ''ଏତେ ଭଲ ଲେଖିଛନ୍ତି'', ''ସତେରେ ମୋ ମନକଥା ଲେଖିଦେଲେ'',''ଲେଖାଟି ପଢ଼ି ମୁଁ କାନ୍ଦି ପକାଇଲି''.......ପାଠକମାନଙ୍କ ପ୍ରତିକ୍ରିୟା । ସେମାନେ ଜାଣନ୍ତି ନାହିଁ, ଏସବୁ ଲେଖା କେବଳ ମୋର ନୁହେଁ, ଏଇ ଉପଲବ୍ଧି କେବଳ ଏକଚାଟିଆ ମୋ ନିଜର ନୁହେଁ, ସେମାନଙ୍କର ମଧ୍ୟ ଅଂଶ ରହିଛି ଏଥିରେ । ହଁ, ଅବଶ୍ୟ ଏସବୁର ଉଚ୍ଚାରଣ ହିଁ ମୋର ।



# ଅଶ୍ରୁତୀର୍ଥରେ ତର୍ପଣ

ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ଯଶସ୍ୱିନୀ କବି ଡକ୍ଟର ପ୍ରତିଭା ଶତପଥୀଙ୍କ ରଚିତ କେତୋଟି ରମ୍ୟରଚନା ଏବଂ ତାଙ୍କର ଚପଳ ମଧୁର ବାଲ୍ୟ ଓ କୈଶୋର ଜୀବନର ଗାଥା ଯେତେବେଳେ ବିଭିନ୍ନ ପତ୍ରପତ୍ରିକାରୁ ପଢୁଥିଲି, ସେତେବେଳେ ସେ ଗୁଡ଼ିକ ମତେ ଖୁବ୍ ଆନନ୍ଦ ଦେଉଥିଲା । ଏବଂ ମୁଁ କ୍ୱଚିତ୍ ଆଶ୍ଚର୍ଯ୍ୟ ମଧ ହୋଇଥିଲି - ଏହି ଛଳଛଳ ଭାବଗଦ୍‌ଗଦ୍ କବି ଗଦ୍ୟରଚନାରେ କିପରି ଏତେ ପାରଦର୍ଶିତା ଦେଖାଇ ପାରିଲେ ! ମୁଁ ମଧ ତାଙ୍କ କବିତାର ଜଣେ ବିମୁଗ୍ଧସ୍ତାବକ । ''ସାହାଡ଼ା ସୁନ୍ଦରୀ'' ଠାରୁ ''ନିମିଷେ ଅକ୍ଷର'', ''ମହାମେଘ'', ''ଶବରୀ'', ଓ ତନ୍ମୟ ଧୂଳି'' ପର୍ଯ୍ୟନ୍ତ ପ୍ରତିଭାଙ୍କର ସମସ୍ତ କବିତା ମୁଁ ଖୁବ୍ ଆଗ୍ରହର ସହିତ ପଢ଼ିଛି ଓ ଅନ୍ୟକୁ ପଢ଼ି ଶୁଣାଇଛି । ଏପରିକି ତାଙ୍କର ବିଦେଶୀ ସାହିତ୍ୟର କେତେକ ଓଡ଼ିଆ  ଅନୁବାଦ ମଧ ମୁଁ ପଢ଼ିଛି । ତାଙ୍କର ଥେସିସ୍ ଗ୍ରନ୍ଥ'କଳ୍ପନାର ଅଭିଷେକ' ଆମର  ଗବେଷଣା ସାହିତ୍ୟରେ ଏକ ଅମୂଲ୍ୟ ଅବଦାନ । ଏ ସବୁ ପରେ ମୋର ଦୃଢ଼ ଧାରଣା ହୋଇଛି ଯେ, ସବ୍ୟସାଚୀଙ୍କ ଭଳି ତାଙ୍କର ଲେଖନୀ ପଦ୍ୟ ଓ ଗଦ୍ୟ ଉଭୟ ଅଭିବ୍ୟକ୍ତିରେ ସମାନ ସିଦ୍ଧ, ସାବଲୀଳ ଓ ଭାବାର୍ଥବ୍ୟଞ୍ଜକ  ଆଳଙ୍କାରିକଙ୍କ ମତରେ କୌଣସି କବିର କାବ୍ୟ ପ୍ରତିଭା ଓ ଅଭିବ୍ୟକ୍ତିର କ୍ଷମତା ତା'ର ଗଦ୍ୟରଚନାରୁ ହିଁ ବେଶି ପ୍ରମାଣିତ ହୋଇଥାଏ । କବିତାରେ କବିର ଅନୁଭୂତି ପ୍ରକାଶ ପାଏ । କିନ୍ତୁ ପ୍ରବନ୍ଧରେ କବିର ଚିନ୍ତା ଓ ଅଭିଜ୍ଞତା ପ୍ରକାଶ ପାଏ । କବିତାରେ ଥାଏ ରାତ୍ରିର ରହସ୍ୟ । ମାତ୍ର ପ୍ରବନ୍ଧରେ ଦିନର ଉଜ୍ଜ୍ୱଳ ସୂର୍ଯ୍ୟାଲୋକ ସବୁ କିଛିକୁ ସ୍ପଷ୍ଟ କରି ଦେଖାଏ । ମାତ୍ର ଯେଉଁ ରଚନାରେ ଉଭୟ ଛାୟା ଓ ଆଲୋକର ଖେଳ ଚାଲିଥାଏ - ଅନୁଭବ ଓ ଅଭିଜ୍ଞତା ପରସ୍ପର ସହିତ ସ୍ପର୍ଦ୍ଧାକରି ପ୍ରକାଶମାନ ହେଉଥାଏ - ଯେଉଁ ରଚନାରେ ଅର୍ଥ ଗୌରବ ଓ ଭାବଗୌରବ ଉଭୟର ସମନ୍ୱୟ ଘଟିଥାଏ - ତାହାହିଁ ହେଲା ରମ୍ୟରଚନା ବା ଲଳିତ ନିବନ୍ଧ ।

ଏହି ସଂକଳନସ୍ଥ ଲଳିତ ନିବନ୍ଧଗୁଡ଼ିକର ଆବେଦନ ସେହି ଦୃଷ୍ଟିରୁ ପ୍ରତିଭାଙ୍କର ମୁଗ୍ଧ ପାଠକପାଠିକାମାନଙ୍କ ପାଇଁ ନିଶ୍ଚୟ କିଛି ସ୍ୱତନ୍ତ୍ରତା ଦାବୀ କରେ । ଏଗୁଡ଼ିକ ହେଲା ଆତ୍ମନେପଦୀ ଫିଚର ଧର୍ମୀ ଗଳ୍ପ ଓ ରମ୍ୟରଚନା । ଏସବୁ ଲେଖାର ରଚନାଶୈଳୀ ଯେପରି ମୁକ୍ତ - ସେହିପରି ମଧ ସୁସଂବଦ୍ଧ । ଜୀବନ ଓ ସମାଜ ସହିତ ଜଡ଼ିତ, ସଂପୃକ୍ତ ଓ

ଦାୟିତ୍ୱସଂପନ୍ନ ହୋଇ ତା'ର ବିଭିନ୍ନ ସମସ୍ୟା (ସେଥିରୁ କେତେକ ସମକାଳୀନ ଓ ଆଉ କେତେକ ସର୍ବକାଳର) ସଂପର୍କରେ କବି କେତେବେଳେ ତାଙ୍କର ମନନ-ସମ୍ଭୂତ କିଛି ଚିନ୍ତା ପ୍ରକାଶ କରିଛନ୍ତି ତ, ଆଉ କେତେବେଳେ ପୁଣି କେବଳ ମନନ ନୁହେଁ - ତା' ସହିତ ତାଙ୍କ ହୃଦୟର ସମ୍ବେଦନ ମିଶି ଯିବାରୁ ସେ ଗୁଡ଼ିକୁ ନେଇ ସେ ନିଜ ଭିତରେ ଘାରି ହୋଇଛନ୍ତି। କେତେବେଳେ କେଉଁ ଦୁଃଖାନ୍ତ ଘଟଣାରେ ତାଙ୍କର କବି ହୃଦୟ ବିଳପି ଉଠିଛି ତ, କେତେବେଳେ ପୁଣି ଅନ୍ଧନିୟତି ଓ ଅନ୍ଧସମାଜର ଉତ୍ପୀଡ଼ନ ଓ ଅପବିଧାନ ଉପରେ କ୍ଷୁବ୍ଧ ହୋଇ ଉଠିଛି। କେତେବେଳେ ପୁଣି ଏକ ଶୁଭକାମୀ କଲ୍ୟାଣମୟୀ ମାତୃ-ଚେତନାରେ ଉଦ୍‌ବୁଦ୍ଧ ହୋଇ ସେ ଅସହାୟ, ଅଜ୍ଞାନ, ହତଭାଗ୍ୟ ମଣିଷର ସର୍ବବିଧ ଦୁଃଖ ଯନ୍ତ୍ରଣାର ଆଶୁଉପଶମ ପାଇଁ ଏକ ବ୍ୟାକୁଳ ଅଭୀପ୍ସାମୟ ପ୍ରାର୍ଥନା ମଧ୍ୟ କରିଛନ୍ତି। ଏଇଥିଲାଗି ଏ ରଚନାଗୁଡ଼ିକର ପାଠକପାଠିକାମାନେ କେବଳ ସେଥିରୁ ଚିନ୍ତାର ବିଷୟଟିଏ ବା ଅନୁସନ୍ଧାନର ତଥ୍ୟଟିଏ ବା ତତ୍ତ୍ୱଟିଏ ପାଇବେ ନାହିଁ - ସେମାନଙ୍କ ନିଥର ହୃଦୟକୁ ସ୍ପର୍ଶ ଓ ଆଲୋଡ଼ିତ କରିବା ପାଇଁ କେତେକେତେ ଅନୁଭବ ଓ ଉପଲବ୍ଧିର ସ୍ପନ୍ଦନ ମଧ୍ୟ ଲାଭ କରିବେ। ''ଭାରତମାତାର ଲୁହ' ଆମ ସମସ୍ତଙ୍କୁ ପୋଛିବାକୁ ପଡ଼ିବ। ''ଯଶୋଧାରାର ପ୍ରଶ୍ନ''ର ଉତ୍ତର ଆମ ସମସ୍ତଙ୍କୁ ଦେବାକୁ ପଡ଼ିବ। ''ଭଲ ମଣିଷ''- ''ଆହା ପଦ ହଜିଛି''- ''ପିତୃତ୍ୱର ଅଧିକାର'' - ''ଦ୍ୱାରାବତୀ ଅନ୍ତରାଳେ'' ଭଳି ରଚନାଗୁଡ଼ିକ ସାଂପ୍ରତିକ ସମ୍ବଦପତ୍ରର ଦୁଃସମ୍ବାଦମାନଙ୍କୁ ନେଇ ଲିଖିତ ରଚନା। କିନ୍ତୁ ଏଗୁଡ଼ିକ ଆମ ମନରେ ସୃଷ୍ଟି କରନ୍ତି ବିଶ୍ୱବେଦନାର ସ୍ପନ୍ଦନ। ଏଭଳି ଲେଖାଗୁଡ଼ିକରେ କ୍ଷୁଦ୍ରଗଳ୍ପର ଆଖ୍ୟାନ୍ୟଶୈଳୀ ସହିତ ମିଶିଯାଇଛି କବି - ହୃଦୟର ବିଭିନ୍ନ ଭାବାବେଗର ଉଚ୍ଛ୍ୱସିତ ତରଙ୍ଗସବୁ।

ଏ ସଂକଳନରେ କବି ତାଙ୍କର କେତୋଟି ସ୍ୱଳ୍ପକାଳୀନ ଭ୍ରମଣକାହାଣୀର ବିବରଣୀ ମଧ୍ୟ ଦେଇଛନ୍ତି। 'ଲୋକପୂଜା ଓ ସଂସ୍କୃତି ନିରାଜନା'-'ଭାରତୀୟତାର ଉଦ୍‌ଘୋଷଣା' - 'ସହୋଦର ଭାଷା ଓ ଭୂମି' ପ୍ରଭୃତି ଏହି ଧରଣର ରଚନା। କିନ୍ତୁ ଏଗୁଡ଼ିକ କେବଳ ଏକରାହିଆ ଯାତ୍ରାବିବରଣୀରେ ଭାରାକ୍ରାନ୍ତ ନୁହନ୍ତି। ଏଗୁଡ଼ିକରେ ମଧ୍ୟ କବିଙ୍କର ସୁକୁମାର ହୃଦୟରେ ଉଷ୍ମ ଅନୁଭବ ଖୁବ୍ ସତେଜ ଓ ପ୍ରାଣବନ୍ତ ଭାବେ ଆତ୍ମପ୍ରକାଶ କରିଛି। କେଉଁ ଏକ ଦୂର ପଡ଼ୋଶୀ ରାଜ୍ୟକୁ କବି ହିସାବରେ ନିମନ୍ତ୍ରିତ ହୋଇ ଯାଇଛନ୍ତି। କିନ୍ତୁ ସେ କେବଳ ନିଜର କର୍ତ୍ତବ୍ୟ ସଂପାଦନ କରି ଫେରି ନାହାନ୍ତି। ସେହି ସବୁ ସ୍ଥାନର ନଦନଦୀ, ବନପର୍ବତ, ଲୋକାଳୟ ଓ ଦେବାଳୟ, ପଶୁପକ୍ଷୀ - ସମସ୍ତଙ୍କ ସହିତ ହୃଦୟାବେଗରେ ଏକାତ୍ମ ହୋଇ ଯାଇଛନ୍ତି। ସେ ସବୁ ସ୍ଥାନର ଜଣାଅଜଣା ନରନାରୀଙ୍କ ସହିତ ଉତ୍‌ଫୁଲ୍ଲ ପ୍ରାଣର ମଧୁର ସଂପର୍କ ଆପି ଫେରିଛନ୍ତି। ସେ ଦେଖାଉଛନ୍ତି - ହୃଦୟର ମିଳନ ପାଇଁ ବା ଏକ ମହାଭାରତୀୟ ଜାତୀୟତାକୁ ଅନୁଭବ କରିବା ପାଇଁ ଭାଷା, ଜାତି ଓ ଧର୍ମ ଆଦୌ ପ୍ରତିବନ୍ଧକ ହୋଇ ନପାରେ। ଏକ ପ୍ରୀତି ଓ ମୈତ୍ରୀକାମୀ ମୂକ ହୃଦୟ ଅନ୍ୟ ଏକ

ସମାକାଂକ୍ଷୀ ହୃଦୟ ସହିତ ଖୁବ୍ ସହଜରେ ଗଙ୍ଗା ଯମୁନା ପରି ମିଶି ଯାଇପାରେ - ଏକଥା ପ୍ରତିଭା ତାଙ୍କ ନିଜ ବ୍ୟବହାର ଓ ଅଭିଜ୍ଞତା ଭିତରେ ପ୍ରମାଣ କରିପାରିଛନ୍ତି ।

''ଧର୍ମ ପତାକା ବନାମ ଅନୁଚିନ୍ତା'' -''ଭେଜାଲ ଔଷଧ ଓ ଅକାଳମୃତ୍ୟୁ''- ''ବିଦ୍ୟା ନିକେତନର ଯନ୍ତ୍ର ମଣିଷ''- ''ଜଗତୀକରଣ ଓ ପରିପାର୍ଶ୍ୱ'' ପ୍ରଭୃତି ରଚନାରେ କିନ୍ତୁ ସେ ପ୍ରଚଳିତ ସମାଜର ବହୁବିଧ ନୈତିକ, ମନସ୍ତାତ୍ତ୍ୱିକ ଓ ଆଧ୍ୟାତ୍ମିକ ସମସ୍ୟାର ଉତ୍ଥାପନ କରିଛନ୍ତି - ସେସବୁର କିଞ୍ଚିତ୍ ବିଶ୍ଳେଷଣ ମଧ୍ୟ କରିଛନ୍ତି, କିନ୍ତୁ ଏହି ନିବନ୍ଧଗୁଡ଼ିକରେ ମଧ୍ୟ କେବଳ ତାଙ୍କର ବୌଦ୍ଧିକ ବସ୍ତୁ-ନିର୍ଦ୍ଦେଶର ପାରଙ୍ଗମତା ପ୍ରଦର୍ଶିତ ହୋଇନାହିଁ । ତାଙ୍କ ଶୁଭେଚ୍ଛା ପ୍ରଣୋଦିତ ହୃଦୟର ବ୍ୟାକୁଳ ଆବେଗାତ୍ମକ କଲ୍ୟାଣକାରୀ ଆହ୍ୱାନ ମଧ୍ୟ ଉଚ୍ଚାରିତ ହୋଇଛି । ଉଚ୍ଚାରିତ ହୋଇଛି ମଧ୍ୟ ତାଙ୍କର ଅନୁଶୋଚନାପୂର୍ଣ୍ଣ ଭର୍ତ୍ସନା ବାକ୍ୟ ଏବଂ ସର୍ବୋପରି ଏଗୁଡ଼ିକରେ ତାଙ୍କ ଅନ୍ତରାତ୍ମାର ଗଭୀର ବିଶ୍ୱାସର ପରମ ଆସ୍ଥାପୂର୍ଣ୍ଣ ବାଣୀ ମଧ୍ୟ ଉଚ୍ଚାରିତ ହୋଇଛି । କେତୋଟି ବାକ୍ୟ ଶୁଣନ୍ତୁ -

''ଜଗତୀକରଣକୁ ରୋକି ହେବ ନାହିଁ - ଉର୍ଦ୍ଧ୍ୱଶ୍ୱାସ ପ୍ରତିଯୋଗିତାକୁ ବାତିଲ କରି ହେବ ନାହିଁ । ବସ୍ତୁବାଦର ଗହଗହ କୁଆପଥର ବର୍ଷା ଚାରାଗଛଗୁଡ଼ିକୁ ନଷ୍ଟଭ୍ରଷ୍ଟ କରିବ ଇ କରିବ । ତଥାପି, ମଣିଷ ଖୋଜିବ - ଆହା ମୋର ପଦ୍ମପୋଖରୀ - ମୋର ରଙ୍ଗବେରଙ୍ଗର ପ୍ରଜାପତି - କି ସୁନ୍ଦର ମୋର ସେ ସବୁ ଅନ୍ଧାରରାତିର ଜୁଳୁଜୁଳା ପୋକମାନେ - ଆଉ ମଧ୍ୟ ମୋର ଆତ୍ମବଉଳ - ମୋର ବଉଳ କୋଳି !... ନ ହେଲେ ମାନବ ପ୍ରାଣର ନିସ୍ତାର ନାହିଁ - ତା'ର ଆତ୍ମା ପାଇଁ ଆଶ୍ୱାସନା ନାହିଁ ।''

ପାଠକେ ! ଏସବୁ ପଙ୍କ୍ତିର ଅନ୍ତରାଳରୁ ନିଷ୍କଳ କବିତାର ଧ୍ୱନିଶୁଣି ପାରୁଛନ୍ତି ତ ? ପୁଣି ଦେଖିପାରୁଛନ୍ତି ତ, କି ଚମତ୍କାର ଆବେଗାପ୍ଲୁତ ଗଦ୍ୟ ବିନ୍ୟାସର ଛନ୍ଦୋମୟ ଅଭିବ୍ୟକ୍ତି ।

ଏ ସଂକଳନରେ ମଧ୍ୟ କେତୋଟି ନିବନ୍ଧ ରହିଛି ଯୋଉଥିରେ ଲେଖିକା କାବ୍ୟ-ତତ୍ତ୍ୱ ବା ନାନ୍ଦନିକ ତତ୍ତ୍ୱଭିତ୍ତିକ ଆଲୋଚନାର ସୂତ୍ରପାତ କରିଛନ୍ତି । କହିବା ବାହୁଲ୍ୟ ଯେ, ପ୍ରତିଭା କେବଳ ଜଣେ ଭାବ-ବିହ୍ୱଳ ଆବେଗ-ସର୍ବସ୍ୱ କବିମାତ୍ର ନୁହନ୍ତି । ସେ ମଧ୍ୟ ଜଣେ ପ୍ରବୀଣା ବିଦୂଷୀ ଅଧ୍ୟାପିକା । ''କବିର ସୁକୃତ''- ''ମୂଲ୍ୟବୋଧର ଅବକ୍ଷୟ'', ''କାବ୍ୟିକଭାଷାର ରହସ୍ୟମୟତା''- ''ଏକବିଂଶ ଶତାବ୍ଦୀର ସାହିତ୍ୟ'' ପ୍ରଭୃତି ରଚନାରେ ଲେଖିକା ଏକ ଅଧ୍ୟାପିକା-ସୁଲଭ ଚିରାଚରିତ ଗୁରୁଗମ୍ଭୀର ରସହୀନ ତତ୍ତ୍ୱ-ବ୍ୟାଖ୍ୟାନ କରିନାହାନ୍ତି । ଏହି ରଚନାଗୁଡ଼ିକରେ ବି ସେ ନିଜ ସାହିତ୍ୟିକ ଜୀବନର ସାରସ୍ୱତ ଅଭିଜ୍ଞତାରୁ ଅନେକ ଭାବ-ଗଭୀର ଓ ଚିନ୍ତା ସମୃଦ୍ଧ ସତ୍ୟ ଆହରଣ କରି ସେଗୁଡ଼ିକର ନିଦର୍ଶନାତ୍ମକ ପ୍ରତିଷ୍ଠା ଅତି ଚମତ୍କାର ଭାବରେ ସଂପାଦିତ କରିପାରିଛନ୍ତି । ତତ୍ତ୍ୱ ଓ ରସର ମଧୁର ସମନ୍ୱୟରେ ଏହି ଲେଖାଗୁଡ଼ିକ ବେଶ୍ ସାର୍ଥକ ହୋଇଛି ।

ପ୍ରତିଭା ଦେବୀ ଉତ୍କଳଭାରତୀ ମା' ସାରଳାଙ୍କର ଜଣେ ବରପୁତ୍ରୀ । ସେଥିପାଇଁ ସେ

ତାଙ୍କର ନବନବ ଉନ୍ମେଷଶାଳିନୀ ଭାବ ଓ ଚିନ୍ତାଗୁଡ଼ିକୁ ପ୍ରକାଶ କରିବାରେ ନିୟତ ମୁଖରା ।

କିନ୍ତୁ ଆଶ୍ଚର୍ଯ୍ୟ କଥା - ଏହି ଆବେଗଚଞ୍ଚଳା, ସଦାସ୍ପନ୍ଦନଶୀଳା, ଶବ୍ଦ ଓ ଧ୍ୱନିମୁଖରା କବି-ହୃଦୟଟି ବେଳେବେଳେ କାହିଁକି କେଜାଣି ହଠାତ୍ ସ୍ତବ୍ଧ ଓ ନିର୍ବାକ ହୋଇଯାଏ । କେତେବେଳେ ପରମ ବିସ୍ମୟରେ ତ କେତେବେଳେ ପରମ ଆନନ୍ଦ ଆହ୍ଲାଦର ବିହ୍ୱଳତାରେ - ପୁଣି କେତେବେଳେ ବା ଏକ ଗଭୀର ସାର୍ବଜନୀନ କାରୁଣ୍ୟବୋଧରେ ତାଙ୍କର ସେହି କବିସୁଲଭ ବିଦଗ୍ଧ ପ୍ରଗଲ୍ଭତା ହଠାତ୍ କିପରି ଏକ ଅହେତୁକୀ ଗଭୀର ଗମ୍ଭୀରତାରେ ନିସ୍ତବ୍ଧ ହୋଇ ରହିଯାଏ ? ଏହା ତାଙ୍କର ଅଧିକାଂଶ କବିତାରେ ଯେପରି - ଏହି ସଦ୍ୟତମ ଗଦ୍ୟରଚନା ଗୁଡ଼ିକରେ ସେହିପରି ଏକ ରହସ୍ୟମୟ ଅନନ୍ୟ ବିଭବ । ଉତ୍ତାଳତରଙ୍ଗକ୍ଷୁବ୍ଧ, ଗର୍ଜନମୁଖର, ଉଚ୍ଛ୍ୱାସିତଫେନ ମହାସମୁଦ୍ର କାହିଁକି ବେଳେବେଳେ ମୁହୂର୍ତ୍ତକ ପାଇଁ ହଠାତ୍ ସ୍ଥିର, ସ୍ତବ୍ଧ ଓ ମୂକ ହୋଇ ରହିଯାଏ ? ଏହାର କାରଣ ବୋଧହୁଏ ରହିଛି ସମୁଦ୍ରର ଅତଳାନ୍ତିକ ଗଭୀରତା ଭିତରେ - ନିରୁତ୍ତର ରହସ୍ୟଟିଏ ସତେକି ! ସବୁ ସତ୍‌କବିଙ୍କର ହୃଦୟ ଏହି ରହସ୍ୟମୟ ଗଭୀର ସମୁଦ୍ର ଭଳି । ନିମିଷକର ଏହି ମୂକତା ଓ ସ୍ତବ୍ଧତା ସର୍ବବିଧ ସାରସ୍ୱତ ମୁଖରତାର ମୂଳଉତ୍ସ ନୁହେଁ କି ? ପ୍ରତିଭା ଗଭୀର ହୃଦୟର କବି ଓ ବିଶଦ ମାନସିକତାର ଲେଖକ । ନିଜର ଜୀବନ-ଚର୍ଯ୍ୟାରେ ନାନାଦି ଶିଖର ଆରୋହଣ ଓ ନାନାଦି ବିବର ଅବତରଣର ମୁକ୍ତ ଓ ଦୁଃସାହସିନୀ ଏହି ନାରୀ-କବି ନିୟତ ସୃଷ୍ଟିକାରିଣୀ ପ୍ରକୃତିମାତାଙ୍କ ଭଳି କେତେବେଳେ ପର୍ବତ ପରି ସ୍ଥିର ନିସ୍ତବ୍ଧ ଓ ଅଟଳ ତ - କେତେବେଳେ ପୁଣି ବନ୍ୟାକୁଳିତା ପ୍ରବାହ-ତାଡ଼ିତା, ଉଭୟକୂଳ ପ୍ଲାବିନୀ କଳକଳ ନାଦିନୀ ସମୁଦ୍ରାଭିମୁଖିନୀ ଏକ ପ୍ରଚଣ୍ଡବେଗା ସ୍ରୋତସ୍ୱିନୀ । ଏହି ପ୍ରାଣବତୀ କବି ତାଙ୍କର ଜୀବନରେ ଯେପରି, ତାଙ୍କର ସାହିତ୍ୟ ସୃଷ୍ଟିରେ ବି ସେହିପରି ମୁକ୍ତମନା, ମୁକ୍ତହୃଦୟା, ମୁକ୍ତଗତି ଓ ମୁକ୍ତବାକ୍ । ଜୀବନ ପ୍ରତି ଓ ପୃଥିବୀ ପ୍ରତି ସେ ପ୍ରେମପ୍ରବଣା, କାରୁଣ୍ୟ ପ୍ରବଣା ଓ ସନ୍ତାପ ପ୍ରବଣା ମଧ୍ୟ । କିନ୍ତୁ ଏହା ସତ୍ତ୍ୱେପି ଜୀବନ ପ୍ରତି ଓ ତା'ର ସ୍ରଷ୍ଟାଙ୍କ ପ୍ରତି ତାଙ୍କ ମନରେ ରହିଛି ଏକ ଶାନ୍ତ ଓ ମହିମ୍ନ ଭାବ । ସେଇଥିପାଇଁ ତାଙ୍କ ଲେଖନୀ-ନିଃସୃତ କବିତା ଭଳି ଏହି ଗଦ୍ୟରଚନାଗୁଡ଼ିକ ବି ଉନ୍ନତ ସାହିତ୍ୟର ମର୍ଯ୍ୟାଦାରେ ଉତ୍କଳଭାରତୀଙ୍କ ପୂଜାମଣ୍ଡପରେ ଏକ ପବିତ୍ର ନୈବେଦ୍ୟ ରୂପେ ସ୍ଥାନିତ ହେବ - ଏଥିରେ ମୁଁ ନିଃସନ୍ଦେହ ।

ଏତିକିମାତ୍ର କହି ସାରି ବର୍ତ୍ତମାନ ମୁଁ ତାଙ୍କର ପାଠକ ପାଠିକାମାନଙ୍କୁ 'ଭାରତମାତାଙ୍କ ଲୁହ ସରୋବର'ରେ ତୀର୍ଥସ୍ନାନ କରିବାକୁ ସାଦର ନିମନ୍ତ୍ରଣ ଜଣାଉଛି । ପ୍ରତିଭାଙ୍କ ହୃଦୟ ଓ ଲେଖନୀ ଚିରଦିନ ଏହିପରି ମଧୁସ୍ରାବୀ ରହିଥାଉ ।

**ମହାପାତ୍ର ନୀଳମଣି ସାହୁ**

ତା.୨-୨-୨୦୦୨

୭୮୭-ଆକାଶପାତାଳ
ସହୀଦନଗର, ଭୁବନେଶ୍ୱର

# ଆନ୍ତରିକ ଧନ୍ୟବାଦ

- ନୀଳମଣିବାବୁ ଓ ପାପାନାନୀଙ୍କୁ ,—ଘୋର ଅନ୍ଧାର ଭିତରେ ଆଶ୍ୱାସର ହାତ ବଢ଼ାଇଥିବାରୁ,
- ବିଶିଷ୍ଟ ସାହିତ୍ୟ ସାଧକ ପ୍ରଫେସର ଶରତ କୁମାର ମହାନ୍ତିଙ୍କୁ— 'ଭାରତମାତାର ଲୁହ' କୁ ଏକତ୍ର ଲିପିବଦ୍ଧ କରିବାର ସମମର୍ମିତା ଜଣାଇଥିବାରୁ,
- ଗାନ୍ଧିକା ପାରମିତାକୁ—ସଂଘଟିତ ଘଟଣାଗୁଡ଼ିକ ପ୍ରତି ମୋର ଏଇ ସବୁ ସଂବେଦନଶୀଳ ପ୍ରତିକ୍ରିୟାକୁ, 'ଯଥାର୍ଥ' କହି ମୋତେ ପ୍ରୀତ କରିଥିବାରୁ ,
- ଦୈନିକ ଓ ମାସିକ ପତ୍ର ଓ ପତ୍ରିକାର ସଂପାଦକମାନଙ୍କୁ- ଏହି ସରସ ରଚନାମାନଙ୍କର ପ୍ରଥମ ପ୍ରକାଶନର ଦାୟିତ୍ୱ ନେଇଥିବାରୁ,
- ପାଠକମାନଙ୍କୁ —ଉଦ୍‌ବେଳ ଅଭିନନ୍ଦନ ଜଣାଇ ମୋତେ ଅଭିଭୂତ କରିଥିବାରୁ,

**ପ୍ରତିଭା ଶତପଥୀ**

# ସୂଚୀପତ୍ର

## ତାଆରି ପାଇଁ (ଦ୍ୱିତୀୟ ଭାଗ)





# ଯଶୋଧାରାଙ୍କ ପ୍ରଶ୍ନ- ଏକବିଂଶ ଶତାବ୍ଦୀର

କଲିଂବେଲ ଶୁଭିଲା- ମୁଁ କବାଟ ଖୋଲିବାକୁ ଯାଇ ପୁଣି ଫେରିଆସିଲି । ତାଲାପଡ଼ିଛି ଚାବି ଆଣିବାକୁ ହବ । ତିନିଟା ଛୋଟ ଛୁଆ ୬/୪/୨ ବର୍ଷର । ଦାଣ୍ଡ ପାଚେରି କବାଟରେ ତାଲା ନ ଦେଲେ ଯାଇ ରାସ୍ତାରେ ଉଠିବେ । ଗାଡ଼ିମଟର, ଗୋରୁ କୁକୁର ବି ଅଛନ୍ତି । କବାଟ ଖୋଲିଲି । ନମ୍ର ସୁନ୍ଦର ୧୬ ବର୍ଷର ଝିଅଟିଏ- ମୋ ପାଦ ଛୁଇଁଲା । ''ନାନୀ, ଚିହ୍ନିପାରୁଛନ୍ତି ? ମୁଁ ଗୀତା, ଧୀରେନ୍ଦ୍ର କରଙ୍କ ଝିଅ ।'' ''ଆଉ କହିବା ଦରକାର ନାହିଁ । ଆ-'' ମନେପଡ଼ିଲେ ମଣିନାନୀ । ମୋର ଦିବଂଗତା ପିଉସୀର ନଣନ୍ଦ । ଇଂଜିନିୟର ଘରଣୀ । ମୋତେ ପ୍ରାୟ ୧୪/୧୫ବର୍ଷ ହୋଇଥିଲା ବେଳେ ମୁଁ ତାଙ୍କ ଘରକୁ ଯାଇଥିଲି । କେତେ ଆଗ୍ରହରେ ଚୁଲିମୁଣ୍ଡରେ ବସି ସେ ପୁରୀ ତରକାରୀ, କ୍ଷୀରି ତିଆରି କରିଥିଲେ । ସେତେବେଳକୁ ତାଙ୍କ ଝିଅ ଏଇ ଗୀତା-୫/୬ବର୍ଷର ଗୁଲୁ ଗୁଲୁ, କୁନ୍ଦାସୁନାର ଦେହ ।

ହଁ, ଗୀତା ଓ ତା'ର ରୁମ୍‌ମେଟ୍ ହଷ୍ଟେଲରୁଆସିଛନ୍ତି । ବଜାରରୁ ଜଳଖିଆ ମଗାଇଲି । ଗୀତା ରେଭେନ୍‌ସା କଲେଜ ହଷ୍ଟେଲରେ ରହି ଆଇ.ଏସ.ସି. ପଢୁଥାଏ । ମୁଁ ରେଭେନ୍‌ସାରେ ନୂଆ ନୂଆ ଜଏନ କରିଥାଏ । ଘର ପଚାରି ପଚାରି ଗୀତା ପହଞ୍ଚିଥାଏ ମୋ ପାଖରେ । ତା'ପରେ ଗୀତା କେବେ କେମିତି ଆସେ । ଭଲ ପଢ଼େ, ଭଲ ରେଜଲ୍ଟ ବି କରେ । ମୁଁ ଚାକିରି ଭିତରେ ୪ ପିଲାଙ୍କ ଜଞ୍ଜାଳରେ ବୁଡ଼ିରହି, ଗୀତାଠାରେ ବେଶି ଧ୍ୟାନ ଦେଇପାରେ ନାହିଁ । ଅବଶ୍ୟ, ମୋର ଧ୍ୟାନ ଦେବାର ଆବଶ୍ୟକତା ବି ନ ଥାଏ । ଗୀତା ଅଲିଅଳ ଝିଅ । ତଳେ ତା'ର ଦୁଇ ଭାଇ । ସମସ୍ତେ ଭଲ ପଢ଼ନ୍ତି ।

ଏବେ, 'ଟେଲିଗ୍ରାଫ' ପୃଷ୍ଠା ଲେଉଟାଇଲା ବେଳେ ଆଖିରେ ପଡ଼ିଲା ଚିତ୍ରଟିଏ । ଦୁଆରବନ୍ଧକୁ ଆଉଜି ଠିଆ ହୋଇଚି ପାତଳୀ ସୁନ୍ଦରୀ ତରୁଣୀ- ତିରିଶ ଭିତରେ ହେବ ବୟସ । ବଙ୍ଗାଳୀ ଘର ବୋହୂ, ପାଖରେ ୪/୫ବର୍ଷର ପୁଅଟି ଠିଆ ହୋଇଥାଏ । ଫଟୋର ପୃଷ୍ଠଭାଗରେ ଅସ୍ପଷ୍ଟ ଦିଶୁଥାନ୍ତି ତା'ର ଶାଶୁଶ୍ୱଶୁର । ତଳେ ତା'ସଂପର୍କରେ ପ୍ରତିବେଦନ । ଚମକି ପଡ଼ିଲି । ଯେ ଗୀତା ନୁହେଁ ତ- ହଁ ଗୀତା, ଠିକ୍ ତାରିପରି ଅପେକ୍ଷମାଣା ସୁନ୍ଦରୀ ତରୁଣୀ, ସାଥୀରେ ପୁଅଟିଏ- ''ଗୀତା, ଗୀତା, ସୁନାଭଉଣୀଟି ମୋର'' ହୃଦୟ ବିକଳରେ ଡାକି ଉଠିଲା ।

୧୯୭୬ ମସିହାରେ ମୁଁ ରମାଦେବୀ ମହିଳା କଲେଜକୁ ବଦଳି ହୋଇଆସିଲି । ବାଣୀବିହାର ହତାରେ ଛୋଟ ଫ୍ଲାଟ ଘର । ଗୀତା ଏମ.ଏସ.ସି.ର ଶେଷବର୍ଷର ଛାତ୍ରୀ ପରିସଂଖ୍ୟାନ ପଢୁଥାଏ- ଫାଷ୍ଟ କ୍ଲାସ ଫାଷ୍ଟ । ପରେ ପରେ ଭଲ ଚାକିରିଟେ ପାଇ ଯାଏ ଗୀତା । ବିଭାଘର ହୁଏ ତା'ର । ତା'ବାପା ଥାଆନ୍ତି ସମ୍ବଲପୁରରେ । ନିମନ୍ତ୍ରଣ କାର୍ଡ଼ ମୁଁ ପାଇଥାଏ ସତ । ଯୋଗଦେଇ ପାରେ ନାହିଁ । ବଡ଼ିଆଳ ଚାରିଚାରିଟା ଝିଅ ଯାହାର, ତା'ଇଞ୍ଜାଳ ଯେ ଭୋଗେ, ସେ ଜାଣେ । କାହାକୁ ଅନ୍ୟଥା ବୁଝାଇ ହେବ ନାହିଁ । ଅତଏବ ଏଇ ସାମାଜିକ ସୌଜନ୍ୟବୋଧ ପାଇଁ ଟେଲିଗ୍ରାମଟେ ମୁଁ ପଠାଇଦିଏ ।

୭/୮ ବର୍ଷ ପରର କଥା । ଗୀତା ସହିତ ଦେଖାହୁଏ । ତା ସାଥୀରେ ୪ବର୍ଷର ପୁଅ । ଗୀତାର ବାପା ଅବସର ନେଲେଣି । ଭାଇ ଦୁହେଁ ଇଂଜିନିୟର । ଆଉ ଗୀତା ? ଭୁବନେଶ୍ୱରରେ ହିଁ ରହୁଛି । ବିଭାଘର ପରେ ପରେ ସ୍ୱାମୀଙ୍କୁ ନେଇ ଗୀତା ଥରେ ଦି'ଥର ଆମଘରକୁ ବୁଲି ଆସିଥିଲା । ତା'ସ୍ୱାମୀ ଦେଖିବାକୁ ଅଳ୍ପ ଉଚ୍ଚ, ଟିକେ ଚନ୍ଦା, ସେମିତି କିଛି ସରସତା ନ ଥିବା ବ୍ୟକ୍ତିଟିଏ ବୋଲି ମୋର ମନେ ହୋଇଥିଲା । ଯଦିଓ ତାଙ୍କର ବ୍ୟବହାର ଥିଲା ଖୁବ୍ ଭଦ୍ର ଓ ନମ୍ର । ଖୁବ୍ ଭଲ କ୍ୟାରିଅର ଥିବା ଇଂଜିନିୟର । କେମିତି ଉଦାସ ଦିଶନ୍ତି । ପ୍ରକୃତରେ ସେ ଉଦାସ ଦିଶୁ ଥିଲେ, ନାଁ ଆଜିକାଲି ତାଙ୍କ ଘଟଣା ଶୁଣିବା ପରେ ମୁଁ ତାଙ୍କଠାରେ ଉଦାସପଣକୁ ଆରୋପ କରୁଛି । କେଜାଣି ! ତେବେ ଗୀତା ସୁନ୍ଦରୀ ସ୍ନେହୀ, ପ୍ରାଣବନ୍ତାରେ ଉଜ୍ଜ୍ୱଳ । ନିମନ୍ତ୍ରିତ ହୋଇଥିଲେ ବି ତାଙ୍କର ଘରକରଣା ଦେଖିବା ପାଇଁ ମୁଁ କେବେ ଯାଇପାରି ନାହିଁ । ଅଥଚ ଆଜି, 'ଟେଲିଗ୍ରାଫ' ପୃଷ୍ଠାରେ ଗୀତାର ଚିତ୍ର ମୋ ଆଖିରେ ଭାସିଉଠିଲା କାହିଁକି ? କେତେ ଅଭାବନୀୟ ଆତ୍ମୀୟତା ଲମ୍ଵି ଆସି ହାତ ବଢ଼େଇଦେଲା ମୋ ଭିତରୁ ? କେଡ଼େ କରୁଣ ଅଥଚ ଦୃଢ଼ତାର ଶପଥଟିଏ ସହିତ ଗୀତା ମୋତେ ଚିହ୍ନାକରି ଦେଲା । ଏକ ହାହାକାର ଅଭିବ୍ୟକ୍ତି ଲାଭକଲା ମୋ ଅନ୍ତରରରେ । ବଙ୍ଗାଳୀ ପରିବାରର ବୋହୂଟି-ନାଁ ତା'ର ଅପରୂପା । ସତରେ ବି ସେ ଅପରୂପା, ଫଟୋରୁ ଯେତିକି ବାରି ହେଇ ପଡୁଥାଏ ।

ଗୀତା ୪ ବର୍ଷର ପୁଅକୁ ଧରି ଆସେ । ମୋତେ ସବୁକଥା କହେ । କାହିଁକି କେଜାଣି ଦୁଃଖୀ ଲୋକେ ମୋତେ ଭଲପାଆନ୍ତି- ମୁଁ ପଚାରେ ନ ପଚାରେ, ମନଖୋଲି କହିଦିଅନ୍ତି ସବୁ- ବୋଧେ ଦୁଃଖର ନଈଟିଏ ମୋ ହୃଦୟର ଅତଳରେ କୁଳୁକୁଳୁ ବହୁଥାଏ- ସେମାନେ ଉପନଦୀର ଧାରାଟିଏ ହୋଇ ଅଜାଡ଼ି ପଡ଼ନ୍ତି ଯାହା ।

ଗୀତାର ଇଂଜିନିୟର ସ୍ୱାମୀ ୨ ବର୍ଷ ତଳେ ଘର ଛାଡ଼ନ୍ତି । ଅଫିସ ଛାଡ଼ନ୍ତି । ଟୁର୍‌ରେ କଲିକତା ଯାଇ ସିଆଡୁ ନିଖୋଜ ହୋଇଯାଆନ୍ତି । କାହାକୁ କହନ୍ତି ନାହିଁ କି ଚିଠି ଲେଖନ୍ତି ନାହିଁ । କୁଆଡୁ କିଛି ଖବର ନ ଥାଏ । ଗୀତା ନିଜେ ଏବେ ଜଣେ ପଦସ୍ଥ ଅଫିସର-ପୁଅଟିକୁ ପାଳୁଥାଏ-ସ୍ୱାମୀର ବାଟ ଚାହିଁଥାଏ । ୨ ବର୍ଷ କିଛି ଅଳ୍ପସମୟ ନୁହେଁ । ଆଖି ସାମ୍ନାରେ ଦୀର୍ଘ ଭବିଷ୍ୟତ- ୩୦ ବର୍ଷର ଗୀତା ଓ ୪ ବର୍ଷର ପୁଅର ଭବିଷ୍ୟତ । ଗୀତା କହେ "ନାନୀ,

ତାଙ୍କ ଚାକିରିର ସିକ୍ୟୁରିଟି, ଟଙ୍କା ପଇସା ଇତ୍ୟାଦି ବିଷୟରେ ମୁଁ କିଛି ହିସାବନିକାଶ ଏଇଲେ କରୁନାହିଁ । କାଳେ ଫେରିବେ !'' କଥାବାର୍ତ୍ତା ଛଳରେ ଜାଣିଲି ବୁର୍ଲାଇଂଜିନିୟରିଂ କଲେଜରେ ପଢୁଥିବା ବେଳେ ତା'ସ୍ୱାମୀ ୧ ବର୍ଷ ପାଇଁ ନିଖୋଜ ହୋଇ ଯାଇଥିଲେ । ଖୁବ୍ ଭଲ ଛାତ୍ର । ପରବର୍ଷ ଆସି ତଳକ୍ଲାସରେ ପଢ଼ିଲେ । ଗୀତା କହେ- ''ସେ ତ ନିରାସକ୍ତ ମନେ ହୁଅନ୍ତି ନାହିଁ- ସବୁଥିରେ ଭଲ । ଝଗଡ଼ା ବି ପ୍ରାୟ ହୁଏ ନାହିଁ ।'' ଗୀତାକୁ ଓ ପୁଅକୁ ଭଲ ପାଆନ୍ତି ବୋଲି ତ ଲାଗେ । କେବେ କିଛି ଅସ୍ଥିରତା ଲକ୍ଷ୍ୟ କରିନାହିଁ ଗୀତା । ଥରେ ଅଧେ ଛାତ୍ରାବସ୍ଥାର ନିଖୋଜ ହେବା ଘଟଣା ଗୀତା ପଚାରିଛି । ଉତ୍ତର ପାଇଛି- ''ବୁଲିଲି-ଭାରତର ଗହନ ଗହନ ତୀର୍ଥସ୍ଥାନ-ପାଠପଢ଼ି କ'ଣ କରିବି- ସମାଜକୁ ସଂସାରକୁ ଟିକେ ବି କ'ଣ ବଦଳାଇ ପାରିବି ? ତା'ର ବିଷମତାକୁ, ଅବିଚାରକୁ ? ଜୀବନର ଅର୍ଥ ଖୋଜିବୁଲିଲି-ପୁଣି ପଢ଼ିବାକୁ ଇଚ୍ଛା ହେଲା- ଘର କଥା ମନେ ପଡ଼ିଲା-'' ଗୀତା ଆଶା କରିବସିଛି- ପୁଣି କୋଉଦିନ ଘରକଥା ମନେ ପଡ଼ିବ- ସୁନ୍ଦରୀ, ସୁଶିକ୍ଷିତା, ସମର୍ଥା ପତ୍ନୀ ଗୀତା ଓ କୁନିପୁଅ କଥା- ସେ ପୁଣି ଫେରିଆସିବେ ।

''ଧେତ୍ ବାୟାଟା, ବାହା ହଉଥିଲା କାହିଁକି-'' ମନେ ମନେ କହିଲି ସିନା-ଗୀତାର ନିଷ୍ଠା ସାମ୍ନାରେ ଏ ସବୁକିଛି ପ୍ରକାଶି ପାରିଲି ନାହିଁ ।

ଆଉ ଅପରୂପା- ତା'ର ଚାକିରି ନାହିଁ, ଗୃହଲକ୍ଷ୍ମୀ ସେ, ଶାଶୁଶ୍ୱଶୁରଙ୍କ ଗୋଟିଏ ପୁଅ-ଗୃହାନ୍ତରୀ । କିଛି ଖବର ଜଣାଇ ନାହିଁ । ସେ ବି ଜଣେ ଇଂଜିନିୟର । ୭ ବର୍ଷର ପୁଅଟିଏ । ୬ ବର୍ଷ ବିତିଗଲାଣି । ଅପରୂପାର ବାପା ମା' ପ୍ରସ୍ତାବ କରିଛନ୍ତି- ତୁ ଚାଲି ଆସେ । ସ୍ୱାମୀ ତ କୁଆଡ଼େ ନିଖୋଜ ହେଲା । ଆମେ ପୁନର୍ବିଭା କରାଇବା । ଅପରୂପା ଅଟଳ- ସ୍ୱାମୀ ତା'ର ଫେରିବେ । ଏତେ ସ୍ନେହୀ, ମମତାମୟ ବ୍ୟକ୍ତି କୁଆଡ଼େ କେମିତି ଲୁଚି ରହିପାରିବ ? ବାପ ମା' ଅଶ୍ରୁଗଡ଼ାଇ ଗଡ଼ାଇ ବୟସ୍କ ହୋଇ ହୋଇ ଚାଲିଛନ୍ତି । ଏକମାତ୍ର ସନ୍ତାନ ତାଙ୍କର । ସେମାନେ କ'ଣ କରିବେ ? ଅତଏବ ଅପରୂପା ପ୍ରତୀକ୍ଷା କରି ରହିଛି । କୋଉ ସକାଳେ ଦିନେ କୁହୁଡ଼ିଆ ଫର୍ଚ୍ଚା ଭିତରୁ ସ୍ୱାମୀ ତାର ହସି ହସି ବାହାରି ଆସିବ ।

ଆଉ ଗୀତା- ମଝିରେ ଥରେ ଭେଟିଥିଲା-କ୍ଳାନ୍ତି ଲାଖିରହିଛି କିଛିଟା । ପୁଅ ବଡ଼ ହେଇଚି-ସ୍କୁଲର ଉପର କ୍ଲାସର । ପୁଅର ବାପା ଫେରି ନାହାନ୍ତି । ଖବର ଅନ୍ତର ନାହିଁ । ଅଥଚ ଗୀତାଠାରେ ଏକ ଆଶାହୀନ ପ୍ରତୀକ୍ଷା ତଥାପି ତଟସ୍ଥ ହୋଇଯାଇଛି । ତା' ସ୍ୱାମୀବିଷୟରେ ମୁଁ କିଛି ପଚାରିଲି ନାହିଁ । ଗୀତା ବି ତ ପୁନର୍ବିବାହ କରିପାରିଥାନ୍ତା ! ଗୋଟେ ଗୃହତ୍ୟାଗୀ, ନିଷ୍ଠୁରବ୍ୟକ୍ତି ଠାରୁ କି ପ୍ରେମ ଓ ଆଶ୍ୱାସନା ସେ ପାଇଛି କେଜାଣି, ଅନେଇ ବସିରହିଛି । କେବେ ବି ତାକୁ ନିନ୍ଦାକରି ପଦେ କହିନାହିଁ । ''ହଁ, ସେ ଟିକେ ଅଲଗା ପ୍ରକାର ଲୋକ''- ଏତିକି ଯାହା ଗୀତା କହିଥାଏ । ସେ ସଂସାରରେ ବାନ୍ଧି ହେଲା ନାହିଁ, ସଂସାରର ଶଗଡ଼ ଗୁଳାରେ ତଳମୁହାଁ ବଳଦପରି ଚାଲିପାରିଲା ନାହିଁ- ଚାଲିବାକୁ ଚାହିଁଲା ନାହିଁ । ଛୋଟିଆ ସ୍ୱାର୍ଥକୁ ସର୍ବସ୍ୱ କରି ବଞ୍ଚିରହିବା ତାକୁ ରୁଚିଲା ନାହିଁ । ସବୁକଥା ଅକ୍ଷରେ ଅକ୍ଷରେ ସତ ।

ହେଲେ, ସୁନ୍ଦରୀ ତରୁଣୀ ପତ୍ନୀ, ଅବୋଧ ଶିଶୁପୁତ୍ରକୁ ଏକାକୀତ୍ୱର ହତାଶା ଭିତରକୁ ଠେଲି ଦେବାର କି ଅଧିକାର ତା'ର ଥିଲା ? ସେ କ'ଣ ଗୌତମଙ୍କର ଜଣେ ପ୍ରତିନିଧି-ଗୀତା ଓ ଅପରୂପାଙ୍କ ସ୍ୱାମୀ, ଦୁହେଁ ଗୌତମଙ୍କ ଭଳି କେହି ?

ସେଦିନ ନିଶାର୍ଦ୍ଧରେ ତରୁଣୀ ଯଶୋଧାରାଙ୍କ ମୁଖଶ୍ରୀ, ଶିଶୁପୁତ୍ର ରାହୁଳର ଅବୋଧ ନିର୍ଭରତା-କିଛି ବି ଗୌତମଙ୍କଠାରେ ଭାବାନ୍ତର ଆଣି ନ ଥିଲା । ସେ ଫେରିଲେ ବୋଧିସତ୍ତ୍ୱ ରୂପରେ, ବୁଦ୍ଧରୂପରେ । ଯଶୋଧାରା (ଗୋପା)ଙ୍କର ଅଭିମାନଭରା ପ୍ରଶ୍ନ ''ମୋତେ ଆପଣଙ୍କ ସଂକଳ୍ପ ଜଣାଇଥିଲେ ମୁଁ କ'ଣ ସେଥିରେ ଅନ୍ତରାୟ ହୋଇଥାନ୍ତି ?'' ଆଜିଯାଏଁ ଗୌତମଙ୍କଠାରୁ ଏ ପ୍ରଶ୍ନର ଉତ୍ତର ମିଳିନାହିଁ ।

ଜୀବନର କିଛି ଉତ୍ତୀର୍ଣ୍ଣ ଅଭିଳାଷ, ତା'ର ବାର୍ତ୍ତା, ସେ ବାର୍ତ୍ତାର ପ୍ରତିଷ୍ଠା, କଦାପି ସ୍ୱୟଂଜୀବନଠାରୁ ବୃହତ୍ତର ହୋଇ ନ ପାରେ । ଶେଷଜୀବନରେ ଏହା ହିଁ ଥିଲା ଗୌତମଙ୍କର ଉପଲବ୍ଧି । ଯୀଶୁଖ୍ରୀଷ୍ଟ ଜୀବନର ଶେଷକ୍ଷଣରେ ମାୟାମମତା ଘେରା, ସନ୍ତାନବତ୍ସଳ ଗୃହୀଜୀବନର ଶ୍ରେୟତା ସଂପର୍କରେ ହୃଦୟଙ୍ଗମ କରିଛନ୍ତି । ଯଦି ଏହି ସଂସାରକୁ ସ୍ୱାର୍ଥ, ସଂକୀର୍ଣ୍ଣତା, ନ୍ୟୁନତାଠାରୁ ଉଦ୍ଧାର କରିବାକୁ ହେବ, ତେବେ ସଂସାର ମଧ୍ୟରେ ଜୀବନ ଅତିବାହିତ କରି ତାହା କରିବା ଦୁଷ୍କର ହେବ ନାହିଁ । ଶିଶୁସନ୍ତାନର ହାତ ଧରି ପାଦ ପାଦ ଆଗେଇ ନେବା, ତା'ର ଚେତନାରେ ସୁନ୍ଦର ଭାବ ଓ ଅନୁଭବର ଚିତ୍ର ଆଙ୍କିଦେବା ମଣିଷର ସର୍ବୋତ୍ତମ କର୍ତ୍ତବ୍ୟ ନିଶ୍ଚୟ । ଗୃହତ୍ୟାଗୀ, ସଂସାର ବିରାଗୀ ସନ୍ନ୍ୟାସୀଗଣ ସେମାନଙ୍କ ଏତାଦୃଶ ପଳାୟନ ଯେ ତ୍ରୁଟିଯୁକ୍ତ ଏହା ପରବର୍ତ୍ତୀକାଳରେ ହୃଦୟଙ୍ଗମ କରିଛନ୍ତି ।

ଯଦି ମାୟା ମମତାର ବନ୍ଧନମିଥ୍ୟା-ତେବେ ଏ ପୃଥିବୀରେ ସତ୍ୟ କ'ଣ ? ଘୃଣା, ଯୁଦ୍ଧ, ପଳାୟନ ଓ ବିଦ୍ୱେଷ ? ଏକବିଂଶ ଶତାବ୍ଦୀର ଆଗମନକାଳରେ ବିଜ୍ଞ, ସୁଧୀ, ଅନୁଭବପ୍ରବଣ, ଆଧ୍ୟାତ୍ମଅନ୍ୱେଷୀ ବ୍ୟକ୍ତିଗଣ ବୁଝିବା ଜରୁରୀ ଯେ, ଜୀବନ ହିଁ ସବୁଠାରୁ ବଡ଼ । ଏହିଠାରେ ବନ୍ଧନ, ପୁଣି ଏହିଠାରେ ମୁକ୍ତି । ଆୟୁଷ୍ମତୀ ପୃଥିବୀକୋଳରେ, ପ୍ରିୟଜନ ମେଳରେ ଜୀବନ ବଞ୍ଚି ସନ୍ତୋଷ ସହିତ ମୃତ୍ୟୁ ଇଲାକାରେ ପ୍ରବେଶ କରିଯିବା ହିଁ ମାନବର ସର୍ବଶ୍ରେଷ୍ଠ ଅଭୀପ୍ସା ।



# ଭଲ ମଣିଷ- (୧)

''ଆମ୍ମା ପଡ଼ିଗଲା·· ପାଣିଟାଙ୍କୀ ପାଖରେ ପଡ଼ିଗଲା-ତା'ଗୋଡ଼ ଭାଙ୍ଗିଯାଇଚି''- ପାକି ଆସି କହିଲା- ସାଇ ପଡ଼ିଶା ପିଲାଛୁଆ କହିହେଲେ- ଆମ୍ମାର ଗୋଡ଼ ଭାଙ୍ଗିଗଲା ।

କାଳିହୋଇ ବୁଢ଼ୀଟିଏ- ଟିକେ ନଇଁ ଯାଇଛି । ବୟସ କେତେ ହେବ କେଜାଣି ! ହେଲେ ହେଇଥିବ ଷାଠିଏ ପାଖାପାଖି- କିଏ ତା'ର ବାପ ମା, କିଏ ତା'ର ସ୍ୱାମୀ, କେହି ଜାଣିନାହାନ୍ତି । ଏଇଠି ମଧ ଆମ୍ମା ବୟସ ବେଳୁ ଥିଲା । ଜଣେ ପ୍ରଫେସରଙ୍କ ପିଲାଛୁଆଙ୍କୁ ମଣିଷ କଲା-ଆଉ ଜଣକ ଘରେ ବି କେତେବର୍ଷ ରହିଲା । ମାତ୍ର ଆମ୍ମା ଯେ କ୍ରମଶଃ ବୁଢ଼ୀ ହୋଇଗଲା । କାମକୁ ପାରିଲା ନାହିଁ- କିଏ ଆଉ ତାକୁ ଘରେ ରଖନ୍ତା ? ଆମ୍ମା ତେଣୁ କିଛିବର୍ଷ ଅନ୍ୟତ୍ର କୋଉଠିକି ଚାଲିଯାଇଥିଲା ।

ଅତଏବ ଆମ୍ମା ଭିକମାଗେ । ମୁଁ ଆମ୍ମାକୁ ଦେଖିଲି ଏତିକିବେଳେ-କୁଆଡୁ ବୁଢ଼ୀଟିଏ ଦିନେ ପହଞ୍ଚିଲା- ନଜହି ନ ପଚାରି ଆମ ଫ୍ଲାଟର ସିଡ଼ି ଘରେ ଆସ୍ଥାନ ଜମେଇଲା । ଏଇ ଫ୍ଲାଟରେ ଆମେ ଚାରୋଟି ପରିବାର ରହୁ । ସିଡ଼ିଘରଟା ବାହାରୁଆ, ପୁଣି ସମସ୍ତଙ୍କର । ଫ୍ଲାଟ କ୍ୱାଟର୍ସଗୁଡ଼ାକର ସିଡ଼ିଘର ସବୁ ଏକା ପରି, ଆମରି ପରି । ଆମ୍ମା ହେଲା କେରଳୀ ଖ୍ରୀଷ୍ଟିଆନ୍-ଘାଗରା ବ୍ଲାଉଜ ପିନ୍ଧେ । ମୁଣ୍ଡରେ ରୁମାଲ ବାନ୍ଧିଥାଏ । ସମ୍ପତ୍ତି ବୋଲି ତାର ଚିରାଲୁଗାପଟା କିଛି । ଖଣ୍ଡିଏ ସିଲିଭର କଂସା, ଆଉ ଖଣ୍ଡେ ପୁରୁଣା ଟିଣଡବା । ଆମ୍ମା ଭିକମାଗେ, ତା'ଦିହରେ ବଳ ନାହିଁ, ସେ ଆଉ କାମକୁ ପାରୁନାହିଁ । ସବୁଠୁଁ ଅଡୁଆ କଥା ହଉଚି, ଆମ୍ମା ଓଡ଼ିଆ ଜମା ବୁଝୁନାହିଁ- ମାଲୟାଲମ୍ ଛଡ଼ା ଆଉ କିଛି ଭାଷା ବି ବୁଝୁନାହିଁ । ଏଣୁ ତା'ସହିତ କଥାବାର୍ତ୍ତା କରି କିଛି କହିବା ବା ଶୁଣିବାର ଉପାୟ ନାହିଁ । ହୁଏତ ଆମ୍ମା ତା'ବୟସବେଳେ ଓଡ଼ିଆ କିଛିଟା ବୁଝୁଥିବ । ନ ହେଲେ ସେ କାହାଘରେ ବି ପାଇଟି କରୁଥିଲା କେମିତି ? କିନ୍ତୁ ମଝିରେ କେଇବର୍ଷ ଅନ୍ୟ କୋଉଠି ରହିଲା ଯେ, ଓଡ଼ିଆ ପୂରାପୂରି ଭୁଲିଗଲା ।

ପାଣିଟାଙ୍କୀ ପାଖରେ ଅଟକୁଥିବା ଟାଉନ୍‌ବସ୍ ଯାତ୍ରୀଙ୍କଠାରୁ ଆମ୍ମା ପଇସା ମାଗେ । କିଏ କ'ଣ ଦିଅନ୍ତି । ଆମ୍ମା ଠାରୁ ସେ ପଇସାତକ ଆରେୟା ନିଏ ଓ ଦିନକୁ ଦୁଇ ଥର ତାକୁ ଭାତଖଣ୍ଡେ ଓ ତରକାରୀଟିକେ ଦେଇଯାଏ । ଆରେୟା ଏ ଅଞ୍ଚଳର ପୁରୁଣା ମୂଲିଆ । ଏଇ

ବାଣୀବିହାର ତଳେ ତା'ର ଝାଟିମାଟି ଘର ଖଣ୍ଡେ ଅଛି । ତା'ର ସ୍ତ୍ରୀ, ଝିଅ, ବୋହୂ ସମସ୍ତେ ବାଣୀବିହାର ବାସିନ୍ଦାଙ୍କ ଘରେ ପାଇଟି କରି ସୁରୁଖୁରୁରେ ଚଳି ଯାଆନ୍ତି ।

ଏଇନେ ତ ଆମ ଫ୍ଲାଟବାଲାଙ୍କ ପାଳି, ଦୟାରେ ଆମେମାନେ ବିଗଳିତ ହୋଇଗଲୁ । ହଁ, ଆମ୍ମା ଗରିବଟାଏ । ଏଇଠି ବଳେ ଆସିପଡ଼ିଲା, କ'ଣ ଆଉ କରିବା ? କିଏ କେତେବେଳେ ଗରମଭାତ ତରକାରୀ ତ ଆଉ କିଏ କେବେ ଚାହା, ମୁଢ଼ି, ରୁଟି ଆଣି ଆମ୍ମା କଂସାରେ ଅଜାଡ଼ିଲୁ । ଆମ୍ମା ଖୁସିରେ ଖାଇଲା । ତାରବାଡ଼ଯାକ ନିଜ ଚିରା ଲୁଗାପଟା ଶୁଖାଇଲା । ସାମ୍ନା ଟ୍ୟୁବ୍‌ୱେଲ୍‌ରେ ଗାଧେଇଲା । ଆମ୍ମା ଚଳିଗଲା । ହେଲେ, ତା'ର ଏଇ ଚିରା ଦୁର୍ଗନ୍ଧମୟ ଲୁଗାପଟା ଘର ସାମ୍ନାରେ ଉଡ଼ିବାଟା ବଡ଼ ଅସୁନ୍ଦର, ଅସ୍ୱାସ୍ଥ୍ୟକର ମନେହେଲା । କିଏ କେବେ ସର୍ଫଟିକେ ଦେଲେ ବି ଆମ୍ମା ତ କାଚିପାରୁନଥାଏ । ପୁଣି ଛେପ, ଖଙ୍କାର ଓ ପରିସ୍ରା ବି ଲୁଗାପଟାରେ କରି ପକାଏ । ପିଲାମାନେ ଏଣିକି ବିରକ୍ତ ହେଲେ । ଅସହ୍ୟ ହେଲେ ବି ଆମେ ବଡ଼ମାନେ ଆମ୍ମାକୁ ତଡ଼ି ଦେଇ ପାରୁ ନଥାଉ ।

ଦିନକୁ ଦିନ ସିଡ଼ିଘରୁ ଦୁର୍ଗନ୍ଧ ଆସିଲା । ସେ ବାଟେ ଯାଇ ଆସି ହେଲାନାହିଁ । ଆମ୍ମା ପଇସା ମାଗି ଯାଉଚି, ଖାଉଚି, ପିଉଚି, ହେଲେ ଭୀଷଣ ଅପରିଷ୍କାର । ମଝିରେ ଜର ହେଲା, ଆମେ ହେଲ୍‌ଥ ସେଣ୍ଟରରୁ ଔଷଧ ଆଣିଦେଲୁ-ଜର ଛାଡ଼ି ଗଲା । ହେଲେ, ଆମ୍ମା ଲୁଗାପଟାରେ ଝାଡ଼ାଫେରି ପକାଉଛି । ମେହେନ୍ତର ଡ଼କା ହେଲା, ସଫାହେଲା, ଫିନାଇଲ ପଡ଼ିଲା, ଏଥରକ କ'ଣ କରିବା ? ପଡ଼ୋଶୀମାନେ କଥାହେଲୁ । ଲୁଗାପଟା, ପୁରୁଣା କମ୍ବଳ, ଚଦର, ବାସନ ଇତ୍ୟାଦି ସିନା ଆମ୍ମାକୁ ଆମେ ଦବା, ଭାତ ଚା' ପାଣି ଦେଇପାରିବା, ହେଲେ ତା ଘୁଅମୁତ କରିବ କିଏ ? ଆମେ କଁଣ ତା' ଲୁଗାପଟା ସଫା କରିବା, ମଇଳା କାଢ଼ିବା, କରିପାରିବା ଏସବୁ ? ଖର୍ଚ୍ଚ କରିପାରିବା ତା'ପାଇଁ ଶହ ଶହ ଟଙ୍କା ? ନିଜର କରି କୋଳେଇ ଆଣିପାରିବା କୁଆଡ଼ର ଏଇ ବୁଢ଼ୀକୁ ? ଆମ ସମ୍ବେଦନା କ'ଣ ଏତେ ବ୍ୟାପକ ହୋଇପାରିବ ? ନିଜ ପରିଧିକୁ ଲଂଘିଯାଇ ପାରିବ ? ନା, ତା'ହେଇ ପାରିଲା ନାହିଁ ।

ଅତଏବ ତାକୁ ଏଠି ରଖିବାର ଉପାୟ ନାହିଁ । ମନଃଦୁଖରେ ହେଲେ ବି ଆମ୍ମାକୁ ଆମେ ତଡ଼ିଲୁ । ଯେତେ ବୁଝାଇଲେ ସେ ବୁଝିଲାନାହିଁ । ଭାଷା ତ ବୁଝୁନଥାଏ-କାନ୍ଦିକାଟି ଅସ୍ଥିର ହେଉଥାଏ । ସାମ୍ନା ଧାଡ଼ି ଘରେ ଗୋଟିଏ ଖାଲି ଘର ଥାଏ । ଟିକେ ଭାଙ୍ଗିରୁଜି ଯାଇଥିବାରୁ ସେଠି କେହି ରହୁ ନଥାନ୍ତି । ସେ ସେଇଘରେ ରହିବ । ସେଇଘରର କାଫ୍ରିଘେରା ଦାଣ୍ଡ ବାରଣ୍ଡାରେ । ଆମ୍ମା ସେଠି ରହିଲା । ଆମେ ଦୟା କରୁଣାର କଣିକା କେତୋଟି ସେଠି ଫିଙ୍ଗିଦେଇ ଆସୁ । ମାତ୍ର ଆମର ଏକ ନିଅଣ୍ଟିଆ କରୁଣାକୁ ଧରାପକେଇ ଦେବାକୁ କି କ'ଣ ଆମ୍ମା ଅବସ୍ଥା ଅସମ୍ଭାଳ ହୋଇ ଗଲା । ଆମ୍ମାର ଗୋଡ଼ ଭାଙ୍ଗିଗଲା । ଆମ୍ମା ଘୁଷୁରି ଘୁଷୁରି ପାଣିଟାଙ୍କୀ ପାଖରୁ ତା'ରହିବା ଜାଗାକୁ ଆସିଲା । ସେଇ ବାରଣ୍ଡାରେ

ପଡ଼ିଲା । ଆମ୍ମା ତ ଆଉ ପଇସା ମାଗି ଯାଇ ପାରୁନି । ଆରେୟା ବି ତାକୁ ଆଉ ଖାଇବାକୁ ଦେଲା ନାହିଁ । ସେ ଗରିବ ଲୋକ, କୋଉଠୁ ବା ଆଣିଦବ ? ଆମେମାନେ ଖାଇବା ଦବାକୁ ବାହାରିଲୁ । ମାତ୍ର ତା'ପାଖୁ ଯିବ କିଏ ? ହଗି ମୁତି ସେଠି ସେ ଯେ, ନର୍କପୁରୀ କରିଛି- କିଏ ବା ତାକୁ ହସ୍ପିଟାଲ ନବ ?

ଫ୍ଲାଟର ଲୋକେ ସାହାଯ୍ୟ କଲୁ, ଆରେୟା ଓ ରିକ୍ସାବାଲା ଟେକାଟେକି କରି ଆମ୍ମାକୁ ରିକ୍ସାରେ ବସାଇଲେ । ବଡ଼ ମେଡ଼ିକାଲକୁ ଆମ୍ମା ଗଲା- ଡାକ୍ତର ଦେଖିଲେ, ପରୀକ୍ଷା କଲେ, ମାତ୍ର ତା'ର କେହି ନିଜ ଲୋକ ନଥିବାରୁ ତାକୁ ହସ୍ପିଟାଲରେ ଆଡ଼ମିନସନ୍ କଲେ ନାହିଁ । ଆମ୍ମା କାନ୍ଦି ରଡ଼ି ରଡ଼ି ଫେରିଲା ।

ଆମେ ସମସ୍ତେ ପିଲାଛୁଆ ନେଇ ସଂସାରୀ । ପିଅନ ଚାକର ବି ଆମର ନାହାନ୍ତି । ଆମେ ଆହା 'ଚୁ' 'ଚୁ' କଲୁ । ଆମ୍ମା ବଡ଼ପାଟିରେ ବାହୁନୁ ଥିବାରୁ ବି ଶୁଣିଲୁ । ଆମେ ସମସ୍ତେ ଭଲ ମଣିଷ ।

ଅବଶ୍ୟ ଆଗରୁ ସିଡ଼ିଘରେ ଥିଲାବେଳେ ଥରେ ଥରେ ଆମ୍ମା ବାହୁନି କାନ୍ଦେ । କାରଣ ତା ମାଗଣ ପଇସାରୁ ଆରେୟା କେତେବେଳେ ଭୁଲେଇ ଚୋରେଇ ନେଇଯାଏ । ନ ହେଲେ ବା ମେହେନ୍ତର ସାଇର ପାଗଳୀଟାଏ ଆସି ତାକୁ ଧକ୍କା ଦେଇ ତା' ଭାତ ଛଡ଼େଇ ଖାଇଯାଏ । ତା' ନିଜଭାଷାରେ କେତେ କଣ କହି ଆମ୍ମା ରଡ଼ିକରେ । ମାତ୍ର ଏପରି ଆକୁଳ ରଡ଼ି ସେ ଆଗରୁ କେବେ କରିନାହିଁ । ସେ ରଡି ଶୁଣି ଦେହ ଶୀତେଇ ଉଠୁଥାଏ । ଏ ରଡି ଯେମିତି ଆମ ଉଦାରତାକୁ, ଆମ ଟଳମଳ ମଣିଷପଣକୁ ତାସଲ୍ୟ କରୁଥାଏ । ଏତିକି ଟିକେ ଦୟା, ଟିକେ ନାଁ କୁ କରୁଣା, ଅଧଚାମଚେ ଉଦାରପଣ- ଧିକ୍ ତୁମ୍ଭମାନଙ୍କୁ ।

କ'ଣ କରିବା ? ଆମ୍ମାର ରଡ଼ି ଶୁଣି ଧୟଧରି ହେଉନାହିଁ ତ ! ନିଜକୁ ଅପରାଧୀ ଅପରାଧୀ ଲାଗୁଛି । ମିଳିମିଶି ଆମେ ବିଚାର କଲୁ- ଜଣେ ପ୍ରଫେସର ଯିବେ, କୁହାବୋଲାକରି ଆମ୍ମାର ଚିକିତ୍ସା ବ୍ୟବସ୍ଥା କରିବେ-ଯୁବକମାନେ କହିଲେ 'ମିଶନ'କୁ ଜଣାଇବେ, ଆମ୍ମା ପରି ଅସହାୟ ସ୍ୱଜନ-ରହିତା ବୃଦ୍ଧାଙ୍କୁ ସେମାନେ ସାହାଯ୍ୟ କରନ୍ତୁ ।

ଆଶ୍ୱାସନାର କଥା, ଦିନେ ଦି'ଦିନ ଭିତରେ, ବେଳ ରତ ରତ ହଉଚି, ଚଢ଼େଇଙ୍କ ଘୁଂଗୁର ଶୁଭୁଛି ଆକାଶରେ । ମିଶନ୍‌ର ଗାଡ଼ି ଆସିଲା, ଆମ୍ମାକୁ ସେମାନେ ଉଠାଇ ଘେନିଗଲେ । ଆମେ ସଂସାରୀ ମଣିଷ, ନିଜ ଛଡ଼ା ଅନ୍ୟ କାହାରି ଉପକାରରେ ଆସିପାରୁନା, ଆମର ଦୟା କରୁଣା ଯେ, କେତେ ସାମାନ୍ୟ, ଯା ଆମେ ବୁଝିପାରିଲୁ । ଏଇ ବିଶାଳ ପୃଥିବୀରେ ମଣିଷର ଦୁଃଖର ଇୟତ୍ତା ନାହିଁ । ଯନ୍ତ୍ରଣାର, ଦୁର୍ବିପାକର କୂଳକିନାର ନାହିଁ । କେତେକ ସ୍ଥଳରେ ମଣିଷ ପ୍ରାଣପାତ କଲେ ମଧ୍ୟ କିଛି ପ୍ରତିକାର କରିପାରିବ ନାହିଁ । ତଥାପି ଏମିତି କେତେକ ପରିସ୍ଥିତି ଅଛି, ଦୁଃଖ ଦୁର୍ଦ୍ଦଶା ଅଛି, ଯାହାକୁ ପ୍ରଚୁର ସମ୍ବେଦନା ଓ ଉଦାରତା ଦ୍ୱାରା ଘୁଞ୍ଚାଇ ଦିଆଯାଇପାରିବ । ମାତ୍ର ଆମେ କେତେଜଣ ତା' କରିବାକୁ ପ୍ରସ୍ତୁତ ହୋଇପାରୁ ? ମଣିଷଠାରୁ ତା'ଦୁଃଖ ଛଡ଼େଇ ଆଣିବା

ପାଇଁ ଆଗଭର ହେଉ ? ହୁଏତ କୌଣସି କୌଣସି ଅନୁଷ୍ଠାନ ଜରିଆରେ କିଛି ଲୋକହିତକର କାର୍ଯ୍ୟ ସାଧିତ ହୁଏ । ଅନାଥାଶ୍ରମ, କସ୍ତୁରବା ମାତୃମଙ୍ଗଳ କେନ୍ଦ୍ର, ମିଶନ ଓ କେତେକ ଲୋକସେବା ଅନୁଷ୍ଠାନ ଅସହାୟ, ଅନାଥଙ୍କ ଉପକାରରେ ଆସନ୍ତି । ମାତ୍ର ବ୍ୟକ୍ତିଗତ ସ୍ତରରେ ଏତିକି ତ୍ୟାଗ ଓ ସେବା ମନୋବୃତ୍ତି ଆସିପାରେ ନାହିଁ ।

ଏଇ ଦୁଃଖୀ, ଦୁର୍ଭାଗୀ ମଣିଷଙ୍କ ପାଇଁ ଅନ୍ୟ ମଣିଷମାନଙ୍କର ସହାନୁଭୂତି କେତେ ବେଶି ଲୋଡ଼ାପଡ଼େ, ତାହା କଳନା କଲାବେଳେ ଆମେ ଯଥାର୍ଥରେ ମଣିଷ ନାଁ ମଣିଷ ନୋହୁ ବୁଝିହୁଏନା ।



# ଭଲ ମଣିଷ-୨

ଆମେ ସମସ୍ତେ ଭଲ ଲୋକ । ଆମେ ଖଟୁ, ଖାଉ । କାହାରି ଅନିଷ୍ଟ କଥା ଚିନ୍ତା ମଧ୍ୟ କରୁନାହିଁ । ଅପର ଦୁଃଖ ଦେଖିଲେ କାନ୍ଦି ପକାଉ । ଯେ ସବୁକଥା ସତ । ଆମେ ଭଲ ମଣିଷ । ଏଇ ମାପକାଠିରେ ତ ଭଲ ମଣିଷଙ୍କୁ ମପାଯାଏ ! ଅନ୍ୟ କାହା କାନ୍ଦ ଦେଖିଲେ ଆମ ଆଖିକୁ ଲୁହ ଆସିଯାଏ । ଅତଏବ ଆଜିର ସମାଜରେ ଆମପରି ଭଲମଣିଷଠାରୁ ଅଧିକ ଭଲପଣିଆ ମିଳିବ କୋଉଠି ! ହଁ, ଆମେ ଭଲ ମଣିଷ । ମାଛିକୁ 'ମ' ବୋଲି କହୁନା । ତା'ସତ । କାହାର ନିଜସ୍ୱ ଉପରେ ଲୋଲୁପ ଦୃଷ୍ଟି ପକାଇବା, କାହା ବାଡ଼ିରେ କାକୁଡ଼ିରଞ୍ଜାରେ ଗଣ୍ଠି ଗଣ୍ଠିକେ କଷି ହେଇଛିତ ଆମେ ଦେଖି ଧରସର ହେବା, ଅନ୍ୟକୁ କେମିତି ଖାପଚରେ ପକାଇବା, ସିଏ ନ ପାଇ ମୁଁ ପାଇଯାଏ ବୋଲି ଲାଗିପଡ଼ିବା, ଏହା ହେଲା ଖରାପ ମଣିଷଙ୍କ ଲକ୍ଷଣ । ଯୁଗେ ଯୁଗେ ଏପରି ଖରାପ ମଣିଷମାନେ ସମାଜରେ ସବୁ ଦୁଃସ୍ଥିତିରେ । ସବୁ ଉପନ୍ୟାସ ଗଳ୍ପର କାହାଣୀ ସୃଷ୍ଟିରେ ଭାଗ ନେଇଥାନ୍ତି ।

ମନେକରନ୍ତୁ, ରାମଚନ୍ଦ୍ର ମଙ୍ଗରାଜ, କି ବଳିଦତ୍ତ କି.ମି. ଶର୍ମା, କି ନାଟକମାନଙ୍କର ଖଳଚରିତ୍ର- ଏଇମାନେ ହିଁ ତ ଅନେକ ଘଟଣା ଭିତରେ ଚେରମୂଳ ଶାଖାପ୍ରଶାଖା ବିସ୍ତାରି ରହିଥାଆନ୍ତି । ଏପରି ସବୁ ଗୁଣ ଯାହାର ନାହିଁ, ଯେ ନିଜଦୁଃଖରେ ନିଜେ, ପର ଦୁଃଖରେ ସହାନୁଭୂତି ଜରଜର, 'ଆହା' ପଦ ତୁଣ୍ଡରେ ଥାଏ ତାର- ତା'ଠାରୁ ଆଉ ଭଲ ମଣିଷ କିଏ ? ରୁନୁ କହିଚାଲିଥାଏ, ମୁଁ ଶୁଣୁଥାଏ ।

ଟିକେ ଆଗକୁ ଅନାଇଦେଲେ ଟିକେ ଦୂରକୁ ଚିନ୍ତାକୁ, ଅନୁଭବକୁ ଲମ୍ବେଇ ଦେଲେ ଆଜିର ମଣିଷର ଅସହାୟ ପଣଟି ଦିଶିଯାଏ । ଆଜିକାଲି ଖୁବ୍ ଏକୁଟିଆବେଳେ ମଣିଷର ନାରଖାର ଚିତ୍ର ଦିଶିଯାଏ । ଗୋଟିଏ ସମୃଦ୍ଧ ସହରରେ ଗୋଟିଏ ଶିକ୍ଷିତ ପଦସ୍ଥ ବ୍ୟକ୍ତି, ବୟସ୍କ ବ୍ୟକ୍ତି ହାତରେ ମଣିଷମୁଣ୍ଡ ଗୋଟିଏ ଧରି ତ୍ରସ୍ତପାଦରେ ଚାଲିଯାଉଥାଆନ୍ତି । ତାଙ୍କର ଅଣ୍ଟା ବାଙ୍କି ଯାଇଥାଏ । ଏ ଦୃଶ୍ୟ ବାସ୍ତବ-ଗୋଟିଏ ବୋମା ବିସ୍ଫୋରଣର ଅବ୍ୟବହିତ ପରର ଦୃଶ୍ୟ ।

କେବଳ ମାଟି ଉପରେ ନୁହେଁ ବେଳେ ବେଳେ ଆକାଶ ମଝିରେ ବଉଦର ଛାତି ଉପରେ, କେବେ ସୂର୍ଯ୍ୟାଲୋକରେ ତ କେବେ ଲକ୍ଷ ଲକ୍ଷ ତାରାଙ୍କ ଗହଳିରେ ସେ ସେମିତି

ତରବର ହେଇ ପିଠିକୁଜା କରି ଚାଲିଯିବାର ଦୃଶ୍ୟ ଆଙ୍କିହୋଇ ଯାଏ । ତାଙ୍କ ଡାହାଣ ହାତରେ ଝୁଲୁଥାଏ ମଣିଷର କଟା ବା ଛିଡ଼ାମୁଣ୍ଡ-ବାଳରୁ ଧରି ସେ ମୁଣ୍ଡଟିକୁ ରଖିଥାଆନ୍ତି । ମଣିଷର ସଦ୍ୟ କଟା ମୁଣ୍ଡ । କେମିତି ଦିଶୁଥିବ ସେ ମୁଣ୍ଡର ବାଳ, ମୁହଁ ଆଖି, ନାକ ଆଉ ପାଟି ? ଆଖି ହୁଏତ ମେଲାଥିବ, ଥିବ ନିସ୍ପନ୍ଦ, ମଲାମାଛର ଆଖିପରି । ଆମେ ଏପରି ଦୃଶ୍ୟକୁ ଆଗରୁ କୋଉଠି ଦେଖିଛେ ? ହଁ ଦେଖିଛେ, ମହାମାୟୀ କାଳିଠାକୁରାଣୀଙ୍କୁ । ତାଙ୍କ ହାତରେ ତ ଖାଲି କଟାମୁଣ୍ଡ ନୁହେଁ-ଗଳାରେ କଟାମୁଣ୍ଡର ମାଳ । ଗୋଟିଏ ହାତରେ ଖପୁରି, ଅପର ହାତରେ ମଣିଷର କଟାମୁଣ୍ଡ ।

ମହାକାଳୀ ଶକ୍ତିଙ୍କର ଅନ୍ୟ ଏକ ରୂପ । ମଣିଷର ଦାନବୀୟ ପ୍ରବୃତ୍ତିରେ ଉତ୍ୟକ୍ତ ହେଇ ଦେବୀ ଅନେକଙ୍କୁ ସଂହାର କରିଥାନ୍ତି- ସେଇ ଦୁର୍ବୃତ୍ତମାନଙ୍କ କଟାମୁଣ୍ଡରେ ସୁଶୋଭିତା ସେ । ଦାନବରୂପୀ ମାନବକୁ ଉପଯୁକ୍ତ ଶାସ୍ତି ହୋଇଥିବାରୁ ସେ ଟହ ଟହ ହସୁଥାନ୍ତି । ସେ ଦେବୀଙ୍କୁ କେତେ ନିରାଜନା କେତେ ସ୍ତୁତି ! ଦୁଷ୍ଟ ସଂହାର ପାଇଁ ସେ କାଳେ କାଳେ ପୂଜିତା । ମାତ୍ର ଏଇ ଯେଉଁ ବୟସ୍କ ବ୍ୟକ୍ତିଙ୍କ କଥା ମୁଁ ଏଠାରେ କହୁଛି, ସେ ଆକୁଳଭାବରେ ମୁଣ୍ଡଟିକୁ ଧରି ଛୁଟିଥାଆନ୍ତି । ସେ କିଏ ? ସମଗ୍ର ମହାଭାରତର ଜନତା ସମ୍ବାଦପତ୍ରରେ ତାଙ୍କର ଫଟୋ ଦେଖିଲେ । ଦେଖିଲେ ତାଙ୍କ ଅସ୍ୱାଭାବିକ କ୍ରିୟାକୁ । କାହାମୁଣ୍ଡକୁ ଧରି ସେ ଚାଲିଛନ୍ତି- ସେ କିଏ ତାଙ୍କର ? ସନ୍ତ୍ରାସର ବୋମାମାଡ଼ରେ ନିହତ ବହୁବ୍ୟକ୍ତିଙ୍କ ମଧ୍ୟରୁ ସେ ତାଙ୍କ ନିଜ ପ୍ରିୟ ପରିଚିତ, ଆତ୍ମୀୟ ସ୍ୱଜନର ମୁଣ୍ଡଟି ଧରି ଧାଇଁଛନ୍ତି । ହୁଏତ ହଠାତ୍ କେମିତି କେଜାଣି ମୁଣ୍ଡଟିକୁ ଚିହ୍ନଟ କରିପାରିଛନ୍ତି- ଶରୀର ବିଧ୍ୱସ୍ତ-ଚିହ୍ନଟ ହେଇପାରୁନାହିଁ । ହୁଏତ ସେ ନିଜେ ସେହି ସମୟରେ ସେହି ବିସ୍ଫୋରଣ ସ୍ଥଳରୁ ଅଳ୍ପ ଦୂରରେ ଥିବାରୁ ବଞ୍ଚି ଯାଇଛନ୍ତି । ତାପରେ ତ୍ରସ୍ତଭାବରେ ନିହାତି, ବ୍ୟାକୁଳ ହୋଇ ଧାଇଁଛନ୍ତି ମୁଣ୍ଡଟିକୁ ଧରି କି ହୃଦୟ ବିଦାରକ ଦୃଶ୍ୟର ସାକ୍ଷୀ ! କି ମର୍ମନ୍ତୁଦ ଅନୁଭବର ସେ ଭୋକ୍ତା ! ଆମେ ସହଜରେ ତା' କଳ୍ପନା କରିପାରିବା ନାହିଁ ।

ସତେରେ, ଅପରାଜେୟ ମହାକାଳୀଙ୍କ ଶକ୍ତିର ଅଧିକାରୀ କେହିବି କ'ଣ ଏଇ ଭାରତଭୂମିରେ ଆଉ ନାହାନ୍ତି ? ନରସଂହାରକାରୀ ହୁଏତ ଅଧିକରୁ ଅଧିକ ସନ୍ତ୍ରାସ ସୃଷ୍ଟିକରି ଜନମାନସକୁ ତ୍ରସ୍ତ ଦୁର୍ବଳ କରିପକାଉଛି । ଏପରି ସମୟରେ ଆମେ କାହାରି କିଛି ଅନିଷ୍ଟ ନ କରି ନିଜ ଦୁଃଖ ସୁଖକୁ ନିଜର କରି ରହି ଯିବା କ'ଣ ଯଥେଷ୍ଟ ? ଊଷର ଭୂଇଁରେ ଗଛଟିପାଇଁ ଯେମିତି ଅଧିକ ଯତ୍ନ ଦରକାର, ଶୁଖିଲାଭୂଇଁରେ ଫୁଲଟିଏ ଫୁଟାଇବାକୁ ଯେମତି ଅଧିକ ପାଣି, ଖତ, ଶ୍ରମ ଲୋଡ଼ା ପଡ଼େ, ଆଜି ମଣିଷ ଯେମିତି ସନ୍ତ୍ରାସର ଶିକାର ହେଉଛି, ହୁଏତ ଠଗ, ପିଣ୍ଡାରି ଦସ୍ୟୁଙ୍କ ଉତ୍ପାତକାଳରେ ମଣିଷ ନିଜକୁ ଏତିକିତ୍ରସ୍ତ, ଅସହାୟ ମଣୁ ନ ଥିଲା । କାରଣ ସେମାନଙ୍କ ଉତ୍ପାତର ନିର୍ଦ୍ଦିଷ୍ଟ ଭୂମିଥିଲା- ନିର୍ଜନ ସ୍ଥଳ, ବଣଜଙ୍ଗଲ ରାସ୍ତା, ପୁଣି ସାଥିରେ ଧନଦୌଲତ ଥିଲେ ହିଁ ସେମାନେ ହତ୍ୟାକରି ଲୁଟି ନେଉଥିଲେ । ଆଜି ଏହି ସନ୍ତ୍ରାସର ପରାକ୍ରମ ଓ ପରିଣତି ସୁଦୂରପ୍ରସାରୀ ।

ଅପ୍ରସ୍ତୁତ, ଅପରିଚିତ ଲୋକଙ୍କୁ ବିନାକାରଣରେ ହତ୍ୟାକରି ଦେଶର ପ୍ରଭୁତ ଧନଜୀବନ ନଷ୍ଟକରି ଏମାନେ ଦେଶର ମେରୁଦଣ୍ଡକୁ ଭାଙ୍ଗି ନେଉଛନ୍ତି । ଅବଶ୍ୟ ଜଣେ ସାଧାରଣ ବ୍ୟକ୍ତି ଏହି ଦୁର୍ବୃତ୍ତମାନଙ୍କର ବିଶେଷ କିଛି କରିପାରିବ ନାହିଁ- ରାବଣ ବିପକ୍ଷରେ ଜଟାୟୁଙ୍କ ପ୍ରତିଶୋଧର ମର୍ମନ୍ତୁଦ ପରିଣତି ହିଁ ସାର ହେବ । ଏଥିପାଇଁ ଆବଶ୍ୟକ ଏକ ବୃହତ୍ ସତ୍ୟନିଷ୍ଠା । ଏକ ବିପୁଳ ସ୍ୱାର୍ଥତ୍ୟାଗ ଓ ନୀତି-ପରାୟଣତା । ଏହାପୁଣି ପ୍ରତ୍ୟେକ ବ୍ୟକ୍ତିର ଜୀବନରେ ଓ ଚରିତ୍ରରେ ପ୍ରତିଷ୍ଠିତ ହେଲେ ଯାଇ ଏହା ସଫଳ ହେବ । ମାତ୍ର ବ୍ୟକ୍ତିଗତ ସ୍ତରରେ କ'ଣ ଆମେ କରିପାରିବା ତା'ଦେଖଇବାକୁ ହେବ । ଗୋଷ୍ଠୀ ବିବାଦ, ଦେଶଦେଶ ମଧ୍ୟରେ ଶତ୍ରୁତା, ସର୍ବୋପରି ଭୟାବହ ସନ୍ତ୍ରାସବାଦ ଭଳି ମନୁଷ୍ୟକୃତ ଦୁର୍ଦ୍ଦଶାରେ ମଣିଷ କବଳିତ ହୋଇ ନିଃଶେଷ ହୋଇଯାଉଥିଲ ବେଳେ ଅନ୍ୟ ଜଣେ ମଣିଷ ବ୍ୟକ୍ତିଗତ ଭାବରେ ହେଉ ବା ସମଷ୍ଟିଗତ ଭାବରେ ହେଉ, କ'ଣ କରିପାରିବ ? ଅଧିକ ଅଧିକ ସହାନୁଭୂତି, କେବଳ ତୁଣ୍ଡରେ, ଅନ୍ତରରେ ନୁହେଁ, କର୍ମକ୍ଷେତ୍ରରେ କ୍ରିୟାଶୀଳ ସହାନୁଭୂତି ନେଇ ତାକୁ ପ୍ରସ୍ତୁତ ହେବାକୁ ପଡ଼ିବ ।

ମୁଁ ରୁନୁକୁ କହୁଥିଲି, ଦେଖ୍- ଏସବୁ ନ ହେଲେ 'ଭଲମଣିଷ'- ଏହା ସାବ୍ୟସ୍ତ ହୋଇ ପାରିବ ନାହିଁ ।

ଯୁଗେ ଯୁଗେ ମଣିଷ ଦୁର୍ଦ୍ଦଶା କବଳିତ । ଏହି ପୁରାଣ ପୃଥିବୀକୁ ନିଜର କରି, ଶାସନ କରି ସେ ଭୋଗ କରିଆସୁଛି ସତ, ମାତ୍ର ସେଥିପାଇଁ ତାକୁ କମ୍ ସଂଘର୍ଷ କରିବାକୁ, ପ୍ରକୃତି ଠାରୁ କମ୍ ଶାସ୍ତି ସହିବାକୁ ପଡ଼ିନାହିଁ ।

ଆଜି ଏକବିଂଶ ଶତାବ୍ଦୀକୁ ସ୍ୱାଗତ ଜଣାଇବାକୁ ପ୍ରସ୍ତୁତ ହେଉଥିବା ବିଜ୍ଞାନୀ ମଣିଷକୁ ତେଣୁ ତା'ନିଜର ଅସହାୟତା ଓ ଦୁଃସ୍ଥିତି ପାଖରେ ଠିଆ ହେବାକୁ ପଡ଼ିବ । ଅନ୍ତରର ଅମାପକରୁଣା ଢ଼ାଳିଦେବାକୁ ହେବ । ପୋଛି ଦେବାକୁ ହେବ ଆହତର ରକ୍ତ, ନିଜ ତୁଣ୍ଡରୁ ଆଧାର କାଢ଼ି ପୀଡ଼ିତ ଦୁଃସ୍ଥର ତୁଣ୍ଡରେ ଆଧାର ଦେବାକୁ ହେବ । ମଣିଷକୁ କାଖେଇ କୋଳେଇ ଶସ୍ୟ, ଜଳ, ଦୁଗ୍ଧଦାନ କରିଥିବା ପ୍ରକୃତି  ମଧ ବେଳେବେଳେ ସଂହାର ମୂର୍ତ୍ତି ଧରେ । ସ୍ନେହ ବିଶ୍ୱାସର ସଂସାରକୁ ଖିନ୍‌ଭିନ୍ କରିଦିଏ । ବିନା ଦୋଷରେ ମଣିଷ ଦଣ୍ଡ ଭୋଗେ । ହୁଏତ ଅନ୍ୟ ଜଣେ ଦୋଷକରେ । ବାତ୍ୟା, ବନ୍ୟା ସାଙ୍ଗକୁ ଏବେ ଦେଖାଦେଲାଣି ଭୂମିକମ୍ପ । ମାଟି ଫାଟିଗଲା, ଦୁଇଫାଳ ଆଁ କଲା- ଘରଦ୍ୱାର କୁଢ଼େଇ ହେଇ ପଡ଼ିଲେ । ତା'ରି ଭିତରେ କୌଣସି ସାମ୍ବାଦିକ ଫଟୋଟିଏ ନେଇଥିଲେ । ରୁନୁ ସେଇ ଫଟୋକୁ ସମ୍ବାଦପତ୍ରରୁ ଦେଖି ସ୍ତବ୍ଧ ହୋଇଗଲା । ମତେ କହୁଥିଲା ''ପଥରରେ ଖୋଦିତ ପ୍ରାଚୀନ କାଳ ବୀରର ମୁଣ୍ଡ ପରି ସେ ମୁଣ୍ଡ-ଭୂମିକମ୍ପ ବିଧ୍ୱସ୍ତ ଅଞ୍ଚଳରେ ଘରଦ୍ୱାର ଅଜାଡ଼ି ପଡ଼ିଛି । ପୁରୁଷ ଲୋକଟି ପୋତି ହୋଇ ପଡ଼ିଚି ବେକଯାଏ । ହୁଏତ ତାର ଅତର୍କିତ ହାତଟି ଉଠିଆସିଚି ମୁଣ୍ଡଉପରକୁ । ମୁଣ୍ଡବାଳ ବିପର୍ଯ୍ୟସ୍ତ । ସେଇ ଚିତ୍ରଟି ଆଜି ନିଦରେ ଆଉ ଜାଗରଣରେ କୋଉ ମ୍ୟୁଜିୟମର ମୂର୍ତ୍ତି ପରି ଦିଶିଯାଉଛି ।''

ମଣିଷର ଦୁର୍ଭାଗ୍ୟର ଏଇ ହୃଦୟ ବିଦାରକ ଦୃଶ୍ୟ ଓ ଘଟଣା ନିକଟରେ ଆମେ କ'ଣ ଖାଲି ସହାନୁଭୂତିର କଥାପଦେ କହିଲେ, ଲୁହ ଟୋପାଏ ଗଡ଼େଇ ଦେଲେ ଯଥେଷ୍ଟ ହେବ ? ଆମକୁ ଓହ୍ଲାଇ ଆସିବାକୁ ହେବ ତଳକୁ- ଠିକ୍ ତା'ପାଖକୁ । ତା'ହୃଦୟର ହାହାକାରକୁ ବୁଝାଇବାକୁ ଗଲାବେଳେ ତାର କ୍ଷୁଧାକୁ, ବିପର୍ଯ୍ୟସ୍ତ ମାନସିକ ଓ ସାମାଜିକ ସ୍ଥିତିକୁ ଯଥେଷ୍ଟ ସେବା ଓ ତ୍ୟାଗରେ ସଜାଡ଼ିଦେବାକୁ ପଡ଼ିବ । ଯେ ହୃଦୟବାନ, କର୍ମବୀର, ଯେ ସେବାପରାୟଣ, ସେଇ ଏ ଯୁଗର ଭଲ ମଣିଷ । ଆଜିର ଦୁଃଖ ଦୁଃସ୍ଥିତିର ମର୍ମବିଦାରକ ପ୍ରାଚୁର୍ଯ୍ୟ କାଳରେ ଭଲ ମଣିଷର ସଂଜ୍ଞା ସଂକ୍ଷିପ୍ତ ନୁହେଁ ।

ସାହାଯ୍ୟ ଓ ସଂବେଦନା ଆଜି ଯେ ପ୍ରଚୁର ମିଳୁନାହିଁ, ତା'ନୁହେଁ । ଏବେ ନିକଟରେ ଗୁଜୁରାଟର ସୁରାଟ ସହରର କମିଶନର୍ ବାବୁଲି (ଲେଖକ ମହାପାତ୍ର ନୀଳମଣି ସାହୁଙ୍କ ସାନପୁଅ) କହୁଥିଲେ- ''ଏଇ ଭୂମିକମ୍ପ ପ୍ରପୀଡ଼ିତଙ୍କ ପାଇଁ କେତେ ଯେ ସାହାଯ୍ୟ ଆସୁଚି, ସେଗୁଡ଼ିକର ଯଦି ଯଥାଯଥ ବିନିଯୋଗ କରାଯାଆନ୍ତା, ପୁଣି ପୂର୍ବପରି ଗ୍ରାମ ଓ ସହର ଗଢ଼ିଦେଇ ଅବଶିଷ୍ଟ ଲୋକଙ୍କୁ ସୁଖଶାନ୍ତିରେ ରଖାଯାଇପାରନ୍ତା ।'' ପ୍ରଥମ କିସ୍ତି ସାହାଯ୍ୟ ଟଙ୍କା ପଠାଇ ସାରିଲାପରେ ବି ତାଙ୍କ ନିକଟରେ ପୁଣି ୫୦ ଲକ୍ଷ ଟଙ୍କାର ସାହାଯ୍ୟ ପହଞ୍ଚିଗଲାଣି । ତେଣୁ ଦେଶର ସର୍ବତ୍ର ଅର୍ଥ ସାହାଯ୍ୟର ଉନ୍ମୁଖତା । ଆଉ ଏକ ଉନ୍ମୁଖତାର ପ୍ରୟୋଜନ, ତାହା ହେଉଛି, ନିଃସ୍ୱାର୍ଥ ଭାବରେ ସାହାଯ୍ୟ ବିତରଣ ଓ ତା'ର ଉପଯୁକ୍ତ ବିନିଯୋଗ । ଏହି ଦୁଇଟି କାର୍ଯ୍ୟରେ ବିଶୃଙ୍ଖଳା ଆମଦେଶରେ ଏକ ସାଧାରଣ ଘଟଣା । ଦୁଃଖୀଲୋକର ଦୀର୍ଘଶ୍ୱାସରୁ ଫାଇଦା ଉଠାଇବାକୁ ଏଠାରେ ଲୋକଙ୍କର ଅଭାବ ନାହିଁ ।

ଆଜିକାଲି 'ସେବା'ର ଏକ ନୂତନ ସଂଜ୍ଞା ପ୍ରଚଳିତ- 'ସମାଜ ସେବା' । ଯେ ସେବାରେ ଆତ୍ମତ୍ୟାଗ ଅପେକ୍ଷା ଆତ୍ମପ୍ରଚାର ଓ ଯଶଲିପ୍ସା ଅଧିକ । ମାତ୍ର ଯେ ପ୍ରକାର ସେବାରେ ଉପରଦେଖାଣିଆ କାମ କିଛି କରିହୁଏ ସିନା, ପ୍ରକୃତ ସାହାଯ୍ୟ ସହଯୋଗରେ କିଛି ଗଢ଼ିଦେଇ ହୁଏ ନାହିଁ ।

ବୁନୁ ମନେପକେଇ ଦେଲା ଏବେ ଇଂରାଜୀକାଗଜରେ ଜଣେ ସବ୍‌ଇନିସ୍‌ପେକ୍ଟର କହିଥିଲେ- ସେ ଯୁଦ୍ଧବିଭାଗର କର୍ମଚାରୀ ଓ ଭୂମିକମ୍ପ ପ୍ରପୀଡ଼ିତ ଅଞ୍ଚଳର ସେବାକାରୀ- ତାଙ୍କ କଥାର ସାରମର୍ମ ହେଲା- ''ଏଇ ଅସହାୟ ଲୋକଙ୍କ ସେବା କରି ଯଦି ମୋର ଏଠାରେ ମୃତ୍ୟୁ ହୋଇଯାଏ- ତାହା ହିଁ ହେବ ଶ୍ରେୟସ୍କର ।'' କବି ଭୀମ ଭୋଇ କହିଥିଲେ - ''ପ୍ରାଣୀଙ୍କ ଦୁଃଖ ଆର୍ତ୍ତି ଆଉ ସହି ହେଉନାହିଁ - ମୋ ଜୀବନ ନର୍କରେ ପଡ଼ି ଥାଉପଛେ, ଏମାନଙ୍କର ଦୁଃଖର ଅନ୍ତ ହୁଅନ୍ତାକି !'' ଏହିପରି ମନୋଭାବ, ବିଚାର ଓ ଏତାଦୃଶ କ୍ରିୟାଶୀଳତା ଆଜି ନିହାତି ଆବଶ୍ୟକ । କ୍ରିୟାଶୀଳତା ସହ ପ୍ରାର୍ଥନାଟିଏ ଅନୁରଣିତ ହେବା ବାଞ୍ଛନୀୟ ବି ।



# 'ଆହା' ପଦ ହଜିଛି ?

'୮ ତାରିଖରେ ଖବର ପଢ଼ିଛୁ ! ସେଇ ଯୋଉ ଦୁର୍ଘଟଣା ।' ଏତେ ବେଶି ରାସ୍ତା ଦୁର୍ଘଟଣା ପ୍ରତିଦିନ ଘଟୁଛି ଯେ, ଖବରକାଗଜରୁ ପଢ଼ି କିଏ ଆଉ ମନେରଖୁଚି ଯେ ଛୋଟ ମୋଟ ଦୁର୍ଘଟଣାକୁ ! ଯୁବକଟିଏ ସୁମୋ ଧକ୍‌କାରେ ଆହତ ହେଲା, ପୁଣି ସେକ୍ରେଟେରିଏଟ ହତାଭିତରେ-ଯେଉଁଠି କେତେ କେଜାଣି ଧରପଗଡ଼-ଯାଞ୍ଚ ଚାଲିଚି, ଅନାମଧେୟ ଅଜଣା କୌଣସି ଗାଡ଼ି ମନଇଚ୍ଛା ଯାଇପାରିବ ନାହିଁ ଭିତରକୁ । ସେକ୍ରେଟେରିଏଟ ଜୁନିୟର କିରାଣୀ ସୁଶାନ୍ତ-ସେ କ'ଣ ଜାଣିଥିଲା ଯେ, ହତା ଭିତରେ ଏମିତି ମରଣଯନ୍ତାଟିଏ ବସିଚି ବୋଲି ?

ସେକ୍ରେଟେରିଏଟରୁ ଫେରୁଥାଏ ରୁନୁ । କ'ଣ ଗୋଟେ ଜରୁରୀ କାମରେ ସେ ଯାଇଥିଲା ଶିକ୍ଷା ଦପ୍ତରକୁ । ୫୦ ହାତ ଦୂର ହବ କି ନାହିଁ, ଆକ୍ସିଡେଣ୍ଟ । ରୁନୁ ଅଟକିଗଲା ଧକ୍‌କା ଲଗାଇଥିବା ସୁମୋ ଗାଡ଼ିଟା ପଳାଇଗଲା-ଅର୍ଥାତ୍‌ ହତାରେ ଗାଡ଼ି ପାର୍କ କରି ଡ୍ରାଇଭର ଫେରାର । ଗାଡ଼ିରେ ଆସୀନ ବ୍ୟକ୍ତି ସମ୍ଭବତଃ ଡ୍ରାଇଭିଂ ଜାଣନ୍ତି ନାହିଁ । ତଳେ ପଡ଼ିଚି ଯୁବକ, ସୁଶାନ୍ତ-୨୪।୨୫ ବର୍ଷର, ତା'ର କ୍ରିମରଙ୍ଗର ସାର୍ଟ ରକ୍ତ ଜୁଡୁବୁଡୁ ହେଇଗଲାଣି । ବାମକାନ ପଛପଟର ଖପୁରିରୁ ରକ୍ତ ନିଗିଡ଼ି ପଡୁଛି । ୨/୩ ଜଣ ଲୋକ ତାକୁ ଦୁଇଖୁଆରୁ ଧରି ବସାଇଛନ୍ତି । ସେ ପଛପଟକୁ ହାତ ଭରା ଦେଇଛି ଶୂନ୍ୟ ଦୃଷ୍ଟିରେ ଅନାଇଛି ଚାରିଆଡ଼କୁ ଚାହୁଁଛି ଅଥଚ ଦେଖିପାରୁନାହିଁ କିଛି ଯେମିତି ! କିଏ ପୁଣି ପାଟି କରୁଛନ୍ତି-''ଆରେ ହସ୍ପିଟାଲ ନେଇ ଯାଅରେ ପିଲାଟା ବଞ୍ଚିଯିବ'' । ମଧ୍ୟାହ୍ନ ଭୋଜନର କାଳ ଆହୁରି ୧ ଘଣ୍ଟା ବାକି ଅଛି । ଅଫିସର ଶହ ଶହ ଗାଡ଼ି ଛଡ଼ା ହୋଇଛି । ଆହତ ଯୁବକକୁ ଘେରି ଠିଆହୋଇଛନ୍ତି ଶହ ଶହ ଡ୍ରାଇଭର । କାହାରି ପ୍ରତ୍ୟୁତ୍ତର ନାହିଁ । ଏତିକିବେଳେ ମାରୁତିକାରଟେ ଆସିଲା-ସମସ୍ତଙ୍କ ଅନୁରୋଧ-ଚାଳକ ହାତ ହଲାଇ ଉପେକ୍ଷାକଲେ- ତାଙ୍କର ଜରୁରୀକାମ, ଆହତକୁ ସେ ସାହାଯ୍ୟକରି ପାରିବେ ନାହିଁ । ରୁନୁ ବି ହୋଇପଡ଼ିଚି ଅସହାୟ । ସେ ବୟାନ କରିଚାଲିଛି ।

ଏଇ ଭିଡ଼ ଠେଲି ମୋଠାରୁ ଅଳ୍ପ ଆଗକୁ ଆସିଗଲା ଜଣେ ତରୁଣୀ-ଆଗେଇ ଆସିଲା, ସଂଭ୍ରାନ୍ତ ମନେହେଉଥାଏ । ଠିକ୍ ନିକଟରୁ ତାକୁ ଜଣେ ଚାପାଗଳାରେ କହୁଥାଏ

''ମାଡ଼ାମ୍, ଯାଆନ୍ତୁନି, ଯାଆନ୍ତୁନି, ହସ୍ପିଟାଲ ନବାକୁ କହିବେ ।'' ତରୁଣୀ ଜଣକ ଆହତ ଯୁବକର ସାମ୍ନାରେ ଠିଆ ହେଇ କହିଲେ-''ଡ୍ରାଇଭରବାବୁମାନେ, ଆପଣମାନେ କେହି ୟାକୁ ହସ୍ପିଟାଲଯାଏ ନେଇଯାଆନ୍ତୁ ।'' ସମସ୍ତେ ନିରୁତ୍ତର । କେଜାଣି କୋଉଠୁ ସାହାସ ସଂଚୟ କରି ତରୁଣୀ ଜଣକ କହିଉଠିଲେ-''ଏଠି ଯେତେଗାଡ଼ି ଥୁଆହେଉଚି, ୟା କାହାରି ବାପର ନୁହେଁ କି ଯେତେ ତେଲ ଖର୍ଚ୍ଚହୁଏ । କାହାରି ବାପର ନୁହେଁ । ସରକାରଙ୍କର । ଆପଣଙ୍କ ସାହେବମାନେ ଲଞ୍ଚକୁ ଯିବାବେଳ ଡେରିଅଛି । ଆପଣ କେହି ହେଲେ ବାହାରୁ ନାହାନ୍ତି କାହିଁକି ?'' ଏ ବକ୍ତୃତାର କିଛି ବି ପ୍ରଭାବ ନ ଥିଲା ସେଠାରେ । ଏଥର ତରୁଣୀ ଜଣକ ପିଲାଟିକୁ ଧରି ବସାଇଥିବା ଲୋକ ଦୁହିଁଙ୍କୁ କହିଲେ, ''ହଉ, ମୋ ଗାଡ଼ିକୁ ଆଣନ୍ତୁ, ମୁଁ ତାକୁ ନେଇଯିବି'' କିଛି ବୁଝିପାରୁ ନଥିବା ଭଳି ବିସ୍ଫାରିତ ନେତ୍ରରେ ଚାହିଁଥାଏ ଯୁବକଟି, ରକ୍ତ ବୋହିଚାଲିଥାଏ ସେମିତି । ଜାମାଭିଜି ମାଟି ବି ଲାଲ ହେଇ ଗଲାଣି । ଲୋକେ ଟେକିକି ନେଇ ଯୁବକଟିକୁ ତରୁଣୀଙ୍କ ମାରୁତି କାରରେ ବସାଇଲେ । ଏଥର ରୁନୁ ଚିହ୍ନିପାରିଲା । ତରୁଣୀଜଣକ ପଦସ୍ଥ ଅଫିସର-କେନ୍ଦ୍ର ସରକାରଙ୍କର । ରୁନୁର ସାମାନ୍ୟ ଚିହ୍ନା, ରୁନୁ ମଧ ବାହାରିପଡ଼ିଲା ସାଥୀରେ । ଯୁବକଟି ପାଟି ଫିଟାଉ ନ ଥାଏ । କି ଓଃ..... ଆଃ କରୁ ନଥାଏ । ରକ୍ତ ବୋହୁଥାଏ ପୂର୍ବପରି । ତରୁଣୀଜଣକ ନିଜେ ଡ୍ରାଇଭିଂ କରି ହସ୍ପିଟାଲ ଅଭିମୁଖେ ଚାଲିଲେ ।

ସେକ୍ରେଟେରିଏଟରୁ ୬ ନମ୍ବର ହସ୍ପିଟାଲ ଦୂର ନୁହେଁ । ଗାଡ଼ିରୁ ଓହ୍ଲାଇ ୨ ଜଣଲୋକ ଦୁଇପଟରୁ ଧରି ପିଲାଟିକୁ ଚଲାଇ ଚଲାଇ ନେଲେ ଆଉଟଡୋର । ଦିନ ଗୋଟାଏ ବାଜିବ-ସିଫ୍ଟଡ୍ୟୁଟି ସରିଥାଏ ଡାକ୍ତରଙ୍କର- ଆଉ ଜଣକୁ ଚାର୍ଜ ଦେଇ ଯିବାକୁ ସେ ଉଦ୍ୟତ । ଘଣ୍ଟାକୁ ଘଣ୍ଟା କେତେ କେଜାଣି ଦୁର୍ଘଟଣା । ଦେହସୁହା ହେଲାଣି । ରକ୍ତ ଦେଖି କଲିଜା ଥରୁନାହିଁ । ଡାକ୍ତରଙ୍କ ଡ୍ୟୁଟି ତୁଟାଇବାର ବ୍ୟଗ୍ରତା ଦେଖି ତରୁଣୀଜଣକ ନିଜର ପରିଚୟ ଦେଲେ ଓ ଅନୁରୋଧ କଲେ । ସେ ଆୟକର ବିଭାଗର ଡେପୁଟି କମିଶନର । ଅଫିସ କାମରେ ସେକ୍ରେଟେରିଏଟ ଆସିଥିଲେ । ପିଲାଟାର ଅବସ୍ଥା ଦେଖି ଅଗତ୍ୟା... । ଡାକ୍ତର ଏଥର ଆହତର ଯତ୍ନ ନେଲେ । ଆହତକୁ ଚିହ୍ନିଲେ । ସେ ତାଙ୍କ କଲୋନୀର ପିଲା-ଇରିଗେସନ ବିଭାଗରେ ଜଏନ କରିଥିଲା । ତା'ର ବାପା ବି ସେହି ବିଭାଗରେ କାମ କରନ୍ତି । ଯୁବକଟି ଆବଶ୍ୟକୀୟ ଚିକିତ୍ସା ପାଇଲା । ଇଂଜେକ୍‌ସନ ଦିଆଗଲା । ସେ ପାଟି ଖୋଲିଲା, 'ମୁଁ ରାସ୍ତାରେ ଚାଲିକି' ଯାଉଥିଲି.... ମୁଁ ଅଫିସରେ ବସିଥିଲି'..ଅନୁଚ୍ଚ ସ୍ୱରରେ ସେ ବିଳିବିଳି ହଉଥିଲା । ରୁନୁ ମତେ କହିଲା ଯେ, ଆମେ ସେତେବେଳକୁ ଜାଣିସାରିଲୁଣି ତା'ର ମସ୍ତିଷ୍କ ଆଘାତ ପାଇଛି । ସେଇ ତରୁଣୀ ଜଣକ ଯୁବକର ବାପା ପାଖକୁ ଖବର ପଠାଇଲେ । ରୁନୁ ବି ତାଙ୍କୁ ସହାୟତା କଲା । ହସ୍ପିଟାଲର ସର୍ବୋଚ୍ଚ କର୍ତ୍ତୃପକ୍ଷଙ୍କୁ ସାକ୍ଷାତ୍ କରି ଯୁବକଟିର ଆଶୁ ଓ ଉପଯୁକ୍ତ ଚିକିତ୍ସା କରାଇବାକୁ ଅନୁରୋଧ କଲେ । ବଡ଼ଡାକ୍ତର ଆସି ଆହତକୁ ଦେଖିଲେ ଓ ଚିକିତ୍ସାର ସୁବନ୍ଦୋବସ୍ତ ନିମିତ୍ତ ପ୍ରତିଶ୍ରୁତି ଦେଲେ । ତଥାପି

ତରୁଣୀ ଜଣକ ସତେ ଯେପରି ଅତି ନିଜର କେହି ଆଘାତ ପାଇଛି, ସେଭଳି ଡାକ୍ତରଙ୍କୁ ଅନୁରୋଧ କରୁ ଥାନ୍ତି ବାରମ୍ବାର- ''ଦେଖନ୍ତୁ ତା'ର ହେଡ୍ ଇଂଜୁରି ହେଇଚି- ଏଠି ସ୍କାନିଂ ବ୍ୟବସ୍ଥା ନ ଥିଲେ, ବାହାରେ ଯେଉଁଠି କରାଇବାକୁ ପରାମର୍ଶ ଦେବେ, ଦେଖିବେ-''।

ଏଥର ତରୁଣୀଜଣକ ଫେରିଲେ ଓ ଫେରିଲାବାଟରେ ରୁନୁକୁ ତା'ଘରର ନିକଟ ରାସ୍ତାରେ ଓହ୍ଲାଇଦେଲେ। ରୁନୁ କହିଲା, ''ଯା ହଉ, ସେ ଝିଅଟିର ସଂବେଦନଶୀଳତା ଓ ସାହସ ମୋତ ଚମତ୍କୃତ କଲା। ଆମ ଓଡ଼ିଆ ଝିଅ, ଓଡ଼ିଆ ପୁଅ ଯଦି ଏମିତି ସହୃଦୟ ହୁଅନ୍ତେ, କେତେ ଦୁର୍ଦ୍ଦଶା ଲୁଚିଯାଆନ୍ତା।

ଲୋକେ ଅନେଇଁଥିବେ- ଜଣେ ଅନ୍ୟକୁ ଛୁରା ମାରୁଥିବ। ଅଭିମନ୍ୟୁକୁ ସପ୍ତରଥୀ ଘେରିଲା ପରି ଦଳେ ଜଣକୁ ଗୋଡ଼େଇ ଗୋଡ଼େଇ ହାଣୁଥିବେ। ଝିଅଟାକୁ ବଳାତ୍କାର କରୁଥିବେ। ଦୁର୍ଘଟଣାରେ ରକତ ଜୁଡ଼ୁବୁଡୁ ମଣିଷଟିଏ ପଡ଼ିଥିବ, ବାଟ ଭାଙ୍ଗି ଚାଲିଯିବେ। ଆଖି ଦେଖୁଥିବ ବାଟ ଭାଙ୍ଗି ଚାଲିଯିବେ। ଆଖି ଦେଖୁଥିବ, ହୃଦୟରେ ପଡ଼ିଥବ କୋଇପ, ସେଠାକୁ କିଛି ଛୁଇଁ ନ ଥିବ। ଆଗେ ନିଜ କଥା, ନିଜ କାମ। ଝାମେଲାରେ ପଡ଼ିବେ ନାହିଁ- ହଲିଲା ପାଣିକୁ ଗୋଡ଼ ବଢ଼େଇବେ ନାହିଁ। ଯିଏ ଯାହା କରୁଚି କରୁ। ଆମେ ପ୍ରତିବାଦହୀନ ହେବା, ଚୁପ୍ ରହିବା, ନ ହେଲେ ଆମକୁ ମାରିଦେବେ!

ଏକଥା ଅବଶ୍ୟ ମିଛ ନୁହେଁ। ସମ୍ବେଦନହୀନ ଏଇ ସମାଜରେ ମଣିଷକୁ କାଟିବା ଫଳଟେ କାଟିବାଠାରୁ ସହଜ ହୋଇପଡ଼ିଛି। ଡ୍ରଗ୍ସ ସେବନକାରୀ, ମଦ୍ୟପ, ବିକାରଗ୍ରସ୍ତ ବ୍ୟକ୍ତି ଯାହା କରୁଛି, ତା'ର କ୍ରିୟାକଳାପର ପୃଷ୍ଠଭୂମିରେ ନା ଅଛି ଯୁକ୍ତି ନା ବିଚାର! ତତ୍କାଳୀନ, ତତ୍କ୍ଷଣାତ୍ ସବୁ ଖାଲି ଘଟିଯାଉଛି। ମୁଁ ଏଥର ରୁନୁକୁ କହିଲି - ''ଦେଖୁନ୍ତୁ ସେଦିନ ଡେପୁଟି ଡି.ପି.ଆଇ. ଜିତେନ୍ଦ୍ର ମହାନ୍ତି କେମିତି ପ୍ରାଣବଳି ଦେଲେ! ନିଜ ଫ୍ଲାଟ ତଳେ ନାରୀ କଣ୍ଠର ଚିତ୍କାର ''ମରିଗଲି, ଦୌଡ଼ିଆସ'' ଶୁଣି ସେ ତଳକୁ ଓହ୍ଲାଇ ଆସିଲେ, ପ୍ରତିରୋଧ କରୁକରୁ ଆଖିପିଛୁଳାକେ ଛୁରାଘାତରେ ଟଳିପଡ଼ିଲେ, ସ୍ତ୍ରୀ ଲୋକଜଣକ ରକ୍ଷା ପାଇଲେ- ଜିତେନ୍ଦ୍ର ବାବୁ ନିହତ ହେଲେ।'':

ଅପରପ୍ରତି ସହାନୁଭୂତି ଦେଖାଇବାର ଏୟାହେଲା ପ୍ରତିଫଳ। ଅତଏବ ସମସ୍ତେ ହୁସିଆର। ଲାଭ-କ୍ଷତି କଥା ଭାବୁ ଭାବୁ ସମୟ ଗଡ଼ିଯାଏ। ମାଛିକୁ 'ମ' କହିହୁଏ ନାହିଁ। କିଏ ଜଣେ କହିଥିଲେ ଟି- 'Modern man is a man of reflection, not a man of action'. Man of action ହେଇ ଜିତେନ୍ଦ୍ରବାବୁ ପ୍ରାଣବଳି ଦେଲେ। ତଥାପି କେହି ନା କେହି ଅଛନ୍ତି ଯିଏ ଦୌଡ଼ି ଯାଆନ୍ତି ଅପରର ବିକଳ ଦେଖି- ମରନ୍ତି, ଆହତ ହୁଅନ୍ତି, ମୂଲ୍ୟ ଦିଅନ୍ତି। ସକଳ ସତର୍କ ମଣିଷଙ୍କ ଭିତରେ ତଥାପି ଥାଆନ୍ତି ଅପରକୁ ସାହାଯ୍ୟ କରିବା ବ୍ୟକ୍ତି, ଥାଆନ୍ତି ବି ଫକୀର ମୋହନଙ୍କ 'ରାଣ୍ଡିପୁଅ ଅନନ୍ତା'। ତାଙ୍କ ସଂଖ୍ୟା ଯେତେ କମ୍ ହେଉ ପଛେ।

ଚିନ୍ତାର କଥା ଯେ, ଏହି ସଂବେଦନା,'ଆହା' ପ୍ରବଣ ମନ କ୍ରମଶଃ ବିରଳ

ହେଇଉଠୁଛି । ନିଷ୍ଠୁରତା-କ୍ରୂରତା ପାଲଟିଛି ଏ ଯୁଗର ସତ୍ୟ । ଯେଉଁ ଭଲ ପାଇବା, ଆଦାନପ୍ରଦାନ ମଣିଷକୁ ଈଶ୍ୱରଙ୍କ ସାନ୍ନିଧ ଦିଏ, ତାହାର ଅସ୍ତିତ୍ୱ ନ ଥିବା ପରି ଲାଗୁଛି । ଲାଗୁଛି, ଈଶ୍ୱର ବୋଧେ ମଣିଷର ଏଇ ସ୍ୱାର୍ଥପରତା, ଅପରପ୍ରତି ସହାନୁଭୂତିହୀନତା ଦେଖି ଖୁସି ହେଉଛନ୍ତି । ନ ହେଲେ ଏସବୁ ବଢ଼ିଚାଲିଛି କେମିତି ? ରୁନୁ କଥା ଉପରେ ବାଧା ଦେଇ ମୁଁ କହିଲି, ‘‘ଦେଖ୍, ‘ଆହା’ ପଦ ହଜିଯାଇନି, ହେଇ ତ ସେଦିନ ମୋ ଆଖିଆଗରେ ଜଣେ ଦୁର୍ଘଟଣାଗ୍ରସ୍ତ ଲୋକକୁ ହାଇୱେ ଉପରୁ ଉଠାଇନେଲେ ଭୁବନେଶ୍ୱରର ଖ୍ୟାତନାମା ଡାକ୍ତର ବିଜୟ ମିଶ୍ର, ରକ୍ତ ଜୁଡୁବୁଡୁ ଆହତକୁ ନିଜର ନୂଆ ଶୁଭ୍ର ସଫେଦ ଗାଡ଼ିର ସିଟ୍‌କୁ ଉଠାଇନେଲେ- ଚାଲିଲେ କଳିଙ୍ଗ ହସ୍ପିଟାଲ ଅଭିମୁଖେ । ମୁଁ ନିଜେ ସ୍ୱଚକ୍ଷୁରେ ଦେଖିଲି । ତେଣୁ କେମିତି କହିବା ସବୁକିଛି ହଜିଯାଇଛି ?’’

ମଣିଷ ନିଜକୁ ପ୍ରସାରିବାକୁ ହେବ । ନିଜ ଭିତରେ ଦେବତ୍ୱକୁ ଲାଳନ କରିବାକୁ ହେବ । ଦେବତା-ତାଙ୍କର ବି କିଛି କର୍ତ୍ତବ୍ୟଅଛି ଏ ଦିଗରେ । ସେ ହୁଏତ କର୍ତ୍ତବ୍ୟ ସଚେତନ କି ନାଁ ସନ୍ଦେହଜନକ । ମଣିଷ ଓ ଦେବତା ଉଭୟ ମିଶିଲେ, ଅନ୍ୟ ଅର୍ଥରେ ମଣିଷ, ନିଜ ଭିତରର ଦେବତ୍ୱ ପ୍ରତି ସଚେତନ ହେଲେ ତା'ର ଏଇ ସଂବେଦନଶୀଳତା ବିକାଶପ୍ରାପ୍ତ ହେବ । ପ୍ରତ୍ୟେକର ଆଖିରେ ଅପରର ଦୁଃଖ ଦେଖି ଲୁହ ଆସିବ, ପାଟିରେ ଫୁଟିବ ‘ଆହା’ ପଦ, ସ୍ୱରରେ ବାଜିଉଠିବ ପ୍ରାର୍ଥନାର ଆକୁତି । ମାତ୍ର ସେତିକି ଯଥେଷ୍ଟ ନୁହେଁ, ହୃଦୟକୁ କ୍ରିୟାଶୀଳ ହେବାକୁ ପଡ଼ିବ । ମଣିଷ ଭାବେ ଯେଉଁ ସମୟ ଓ ପରିସ୍ଥିତିରେ ଯାହା କରଣୀୟ, ତାହା କରିବାକୁ ହେବ । ‘ଆହା’ କହି ଆଖିବୁଜିଦେଇ ନିଜ ବାଟରେ ଚାଲିଗଲେ ଚଳିବ ନାହିଁ । କାୟା, ମନ, ବାକ୍ୟ ଓ ଅର୍ଥ- ଏ ସକଳର ବିନିଯୋଗରେ ଆପଣାର ସଂବେଦନଶୀଳତାକୁ, ମଣିଷପଣିଆକୁ କ୍ରିୟାଶୀଳ କରାଇବାକୁ ହେବ । ପ୍ରକୃତରେ ଦେବତ୍ୱ ଭିନ୍ନ କିଛି ନୁହେଁ । ଏହି କ୍ରିୟାଶୀଳ ମଣିଷପଣ ହିଁ ତ ଦେବତ୍ୱ ।



# ପାପୀ ଜନ୍ମ

ସୀତା ସେଦିନ ସକେଇ କାନ୍ଦୁକାନ୍ଦୁ ବୟାନ କରି ଚାଲିଥିଲା- ସୀତା ସହରତଳି ଅଞ୍ଚଳର ଧାଇଟିଏ । ମୁଖ୍ୟତଃ ମଫସଲରେ ତାର କାରବାର । ପୋଖତୀଙ୍କ ସେବା ତାର ଜୀବିକା । ସେଇଥିରେ ପରିଶ୍ରମ ତ ଅଧିକ- ରାତି ଅଧହେଲେ ବି, ଶୀତ କାକର, ମୁଷଳବର୍ଷାକୁ ନ ମାନି ଘରୁ ବାହାରିବାକୁ ପଡ଼ିବ । ଜ୍ୟେଷ୍ଠମାସିଆ ମୁଣ୍ଡଫଟା ଦି'ପହରରେ ବି । ପୋଖତୀଙ୍କର କଣ ବେଳକାଳ ଥାଏ ? ଧାଇ ବିଚାରୀଟିକୁ କୋଉ ବେଳଟା ସୁବିଧା ହେବ, ସେ ବୁଝେ ? ନୂଆ ଜୀବନଟିଏ ଯେତେବେଳେ ପୋଖତ ହୋଇ ଆଲୁଅ ଦେଖିବାକୁ ମୁଣ୍ଡଟେକେ, ଠେଲାମାରେ, ପୋଖତୀ କଇଁ କଇଁ ହେଇ କାନ୍ଦେ । ଖୋଜାପଡ଼େ ଧାଇକୁ, ଯାଅ, ସୀତାକୁ ଡାକି ଆଣ । ସୀତା ଅବଶ୍ୟ ଆଗରୁ ଜାଣିଥାଏ ଯେ ଅମୁକ ଘର ବୋହୂ ଅମୁକ ମାସରେ ଡାକରାଦବ । ହେଲେ ତିଥି ବାର ବେଳକାଳ ଅଚାନକ ଆସେ ।

ସୀତା କେତେ ନୂଆ ମଣିଷଙ୍କ ଆଲୋକ ଦେଖାଇଛି । କେତେ ରକ୍ତ, ଲୁହ, ଲାଳରେ ଭିଜିଥିବା ପୋଖତୀଙ୍କୁ ସାଷ୍ଟମ କରିଛି । ହଁ, ପାପ ଆଉ କ'ଣ ? ପାପୀ ଜନ୍ମରୁ କେତେକଙ୍କୁ ଉଦ୍ଧାର କରିଛି । ହେଲେ ଆଜିକାଲି କାହିଁକି ମନଟା ପଛେଇ ଯାଉଛି ?

ଏଇ ଅଳ୍ପଦିନ ତଳେ ମାର୍ଗଶୀର ମାସ ରାତି ଅଧରେ ଶ୍ୟାମ ସିଂଙ୍କ ବଡ଼ବୋହୂର ଡାକରା ଆସିଲା । ଦୁଇ ଜଣ ଲୋକ ପହଞ୍ଚି ସୀତାକୁ ଡାକିନେଲେ । ବ୍ୟବସାୟୀ ଘର, ଭଲ ଦବାନବା କରିବେ, ଅଭାବୀ ତ ନୁହନ୍ତି । ସୀତା ଯାଇ କାମରେ ଲାଗିଗଲା । କିନ୍ତୁ କି ଯେ ବିଡ଼ମ୍ବନା । ରାତି ପାହାପାହା ହେଉଛି, ବୋହୂଟି ଲାଗ ଲାଗ ଦୁଇଟି ଛୁଆ ଜନ୍ମକଲା । ଗୋରା ତକ୍ ତକ୍ ଛୁଆ ଦୁଇଟି । ଦୁଇଟି ଯାକ ଝିଅ । ହଲଚଲ ହେଉଥାନ୍ତି-ଆଙ୍ଗୁଠିକୁ ପାଟିରେ ଭରିବାର ଚେଷ୍ଟାରେ ଥାଆନ୍ତି । ବୋହୂଟି ତାର ନିସ୍ତେଜ ମୁହଁରେ ଲୁଗା ଘୋଡ଼ାଇ କାନ୍ଦିବାକୁ ଲାଗିଲା । ସିଂଙ୍କ ବୁଢ଼ୀ ସୀତା ହାତଧରି ତୁନିକି ଡାକିନେଲେ-କଣ କରିବା ? ଦି' ଦି'ଟା ଝିଅ । ମା'ଲୋ-ରାତି ପାହିଯିବ-ବାହାରକୁ ତ ନେଇ ହବନି- ସୀତାକୁ ନେହୁରା ହେଲେ । ନେ', ୟୁରିଆ ସାର ପୁଡ଼ାଏ ଗୁଞ୍ଜିଦେଲେ ସୀତା ହାତରେ । କାମ ସାରିଦେ, ଯାଆ''-ସିଂ ଘରବୁଢ଼ୀଙ୍କ କଣ୍ଠରେ ଅନୁନୟ । ହାତଗୋଡ଼ ଥରିଲା ଅବସ୍ଥାରେ ସୀତା ଛୁଆଦୁଇଟାଙ୍କ ପାଖେ ପହଞ୍ଚିଲା । ନାହିନାଡ଼ କଟା ସରିଥାଏ । ଗାଧେଇ ନ ଥାନ୍ତି । ଦୁଇ

ପିଲାଙ୍କ ମାଟିରେ ମାଡ଼ିଦେଲା । ଦି'ଥର କେଁ କାଁ ଶବ୍ଦଟିକେ ଶୁଭିଲା । ତା'ପରେ ସବୁ ଚୁପ୍ । ଯାଆନ୍ତୁ, ପାପୀ ଜନ୍ମରୁ ତ୍ରାହି ପାଇଯାଆନ୍ତୁ । ସୀତା ମୁହଁ ବୁଲାଇ ପୋଖତୀ ଘରୁ ବାହରି ଆସିଲା । ତଳକୁ ମୁହଁ ପୋତିଥାଏ ସେ । ବୁଢ଼ୀ କନାପୁଡ଼ିଆରେ ଚାଉଳ ଡାଲି ବାନ୍ଧି ଟଙ୍କା କେଇଟା ତା ହାତରେ ଧରାଇ ଦେଲେ । ସିନ୍ଦୂରା ଫାଟି ଆସୁଥାଏ । ଆକାଶର ମୁହଁ ନାଲି ପଡ଼ିଯାଇଥାଏ ଲାଜରେ । ଚଢ଼େଇଗୁଡ଼ା ସତେ କି କାନ୍ଦିଉଠି ହାଉଳି ଖାଉ ଥାଆନ୍ତି । ଗଛରୁ ଲୁହ ଝରୁଥାଏ ଟପ୍ ଟପ୍ । ସୀତା ତଳକୁ ମୁହଁପୋତି ଘରମୁହାଁ ଚାଲିଥାଏ । ସେ କିଛି ଜାଣେନା । ତାର ୫୦/୫୫ ବର୍ଷର ଜୀବନ ଭିତରେ ଅନ୍ତତଃ କୋଡ଼ିଏଟି ଯାଏ ପୋଖତୀ ଘରେ ସେ ତ ଏଇ କାମ ହିଁ କରିଛି ।

ଆଉ ଦିନେ ଦୀନବନ୍ଧୁ ମିସ୍ତ୍ରୀର ଭାରିଜାର ପୋଖତୀ ଘରେ ଏମିତି ତାକୁ ଅଘଟଣ ଘଟାଇବାକୁ ପଡ଼ିଥିଲା । ବିଚରା ମିସ୍ତ୍ରୀ ଖଟିଖିଆ -ସେତେବେଳକୁ ୨ଟି ପୁଅ ପରେ ସ୍ତ୍ରୀର ତୃତୀୟଗର୍ଭ । ଝିଅଟିଏ ଜନ୍ମହେଲା । ମିସ୍ତ୍ରୀ ଦୋଷକାରୀ ଭଳି ସୀତା ଆଗରେ ଠିଆହେଲା । କହିଲା, ''ମାଉସୀ, ମତେ ଏ ବୋଝରୁ ଉଦ୍ଧାର କର । ତୋ ଗୋଡ଼ତଳେ ପଡୁଛି । ମତେ ବାଟ ବତା ।'' ସୀତା ରୋଷଘରୁ ମୁଠାଏ ଲୁଣ ଆଣି ଆସିଲା । ସଦ୍ୟଜାତ କନ୍ୟା ସନ୍ତାନଟିର ଆଖି ଭଲକି ଖୋଲି ନଥାଏ- ହାତଗୋଡ଼ ଖେଳାଉ ଥାଏ, ପାଟି ପାକୁପାକୁ କରୁଥାଏ । ସୀତା ମେଞ୍ଚେ ଲୁଣ ତା ପାଟି ଭିତରେ ଖୁନ୍ଦିଦେଲା । କୁଁ କିନା ଶବ୍ଦ ବି ହେଇନି । ଜ୍ୟେଷ୍ଠ ମାସ ଦି'ପହର । ମିସ୍ତ୍ରୀଘର ଢ଼ିଙ୍କିଶାଳରେ ଦି'ଘଡ଼ି ଗଡ଼ିପଡ଼ିଲା ସୀତା । ମିସ୍ତ୍ରୀ କିଛି ବିଦାକୀ ଦେଇଥିଲା ।

ଏକା ତା'ରି ଜୀବନରେ ସେ କୋଡ଼ିଏଟି ଯାଏ ଶିଶୁହତ୍ୟା କରିଛି । ଉଡିଆଣୀ ପିଲାକୁ ଭୂଇଁରେ ପକାଇ ତା'ପାଟିରେ ଲୁଣ ବା ୟୁରିଆ ସାର ଭର୍ତ୍ତି କରିଛି । ମୁଣ୍ଡ ତଳକୁ କରି ଘରକୁ ଫେରିଛି ।

ସୀତାର ଏ ବୟାନ କଣ କାହାଣୀ କି ? ମୁଁ ରୁନୁକୁ ବୋଧଦେଉଥାଏ ''ଆଲୋ, ଏମିତି କେତେକେତେ ଏପରି ନିଷ୍ଠୁର କାମ କରନ୍ତି । ଝିଅହେଲା, ତାକୁ ମାରି ପକାଅ । ଆଧୁନିକ, ଧନୀ, ସହରୀ ବାପା ମା' ତ ଗର୍ଭାବସ୍ଥାରେ ଝିଅଭୃଣକୁ ନଷ୍ଟ କରି ଦଉଛନ୍ତି । ତାଠାରୁ ବଳି ଜଘନ୍ୟ ଯେ ଶିଶୁକନ୍ୟା ହତ୍ୟା । ଅଥଚ, ଉଭୟର ଉଦ୍ଦେଶ୍ୟ ଓ ପରିଣତି ତ ଏକା ।''

ଆଜି ବିଂଶ ଶତକର ଶେଷ ପାଦରେ ନାରୀଜାଗରଣ, ନାରୀ ପ୍ରଗତିର ସ୍ଲୋଗାନ ଭିତରେ କନ୍ୟା ସନ୍ତାନ ପ୍ରତି ଯେ ଘୃଣା, ଆକ୍ରୋଶ ଅତ୍ୟନ୍ତ ଦୁର୍ଭାଗ୍ୟଜନକ । ବାହାରକୁ ଦୃଶ୍ୟ ନ ହେଉଥିଲେ ବି ବାସ୍ତବତା ଅତ୍ୟନ୍ତ ଭୟାବହ । ଝିଅର ତୁଚ୍ଛଜୀବନକୁ ନେଇ ବାପା ମା' ଘାଣ୍ଟି ହେବେ ନାହିଁ । ତା'ର ଜୀବନ ନିରର୍ଥକ । ବୋଝ । ତାକୁ ରାସ୍ତାରୁ ହଟାଇବାକୁ ପଡ଼ିବ । ନିତାନ୍ତ ଅବିବେକୀ, କ୍ରୂର ମଣିଷ, ବାପହେଇବି, ମା' ହେଇବି ଏକାମ କରିବାକୁ ଆଗଭର ହୁଏ । ମା' ଚାହେଁ ଝିଅ ମୋ ପରି ହନ୍ତସନ୍ତ ହେଇ କଷ୍ଟ ନଭୋଗୁ । ସମସ୍ତଙ୍କୁ

ହତାଶ ନ କରୁ-ମରିଯାଉ। ଆମେ ସ୍ୱୀକାର ନ କରିବାର ଉପାୟ ନାହିଁ ଯେ, ଏହାହିଁ ହେଉଛି ନଗ୍ନସତ୍ୟ।

ରୁନୁ କହେ, "ଖାଲି କଣ ସେତିକି ? ଗରିବ, ଅଶିକ୍ଷିତ ଲୋକଙ୍କ କଥା ଛାଡ଼, ସମାଜରେ ଯେଉଁମାନେ ସମ୍ମାନାସ୍ପଦ, ବୁଦ୍ଧିମାନ ଲୋକ, ସେମାନେ ବି ଝିଅପୁଅରେ ବିଭେଦ ଦେଖନ୍ତି। ରୁନୁ ତା ପରେ ତାର ଜଣେ ପଡ଼ୋଶୀ ପ୍ରଫେସରଙ୍କ ସ୍ତ୍ରୀଙ୍କ କଥା କହିଲା ସେ ସ୍ୱଚ୍ଛ ଶିକ୍ଷିତା। ତାଙ୍କର ଦୁଇଟି ଝିଅ, ଦୁଇଟି ପୁଅ। ଖାଇବା, ପିନ୍ଧିବା ଓ ପଢ଼ିବା-ଏଥିରେ ସେ ସ୍ପଷ୍ଟ ପାତର ଅନ୍ତର କରନ୍ତି। ଝିଅମାନଙ୍କ କ୍ୱଚିତ୍ ଦୁଧ, ଅଣ୍ଡା ଦିଆଯାଏ- ପୁଅମାନଙ୍କୁ ପ୍ରତ୍ୟେକ ଦିନ। ଝିଅଙ୍କୁ ପଢ଼ିବାକୁ ଯଥେଷ୍ଟ ସମୟ ଦିଆଯାଏ ନାହିଁ- ଘରର ସବୁ କାମ ସେ ଦୁହେଁ କରିବେ। ପିନ୍ଧିବେ ବି ଯାହିତାହି। ତାଙ୍କର କହିବା କଥା- ଯାନିଯୌତୁକ ଦେଇ ତ ବିଭା କରିବାକୁ ହେବ। ଯାହିତାହି ପଢ଼ନ୍ତୁ ଯାହିତାହି ଚଳନ୍ତୁ। ନିଜେ ନାରୀ ଜନ୍ମ ପାଇ ବି ମା' ଓ ଶାଶୁ ଝିଅକୁ ବୋହୂକୁ ନ୍ୟୁନଦୃଷ୍ଟିରେ ଦେଖନ୍ତି। ଏପରି ଚଳଣୀ ଅନେକଙ୍କ ଘରେ ଚଳେ।" ରୁନୁଠୁଁ ଏକଥା ଶୁଣି ମୋର ମନେପଡ଼ିଯାଏ ଜଣେ ସହକର୍ମିଣୀ ଅଧ୍ୟାପିକାଙ୍କ କଥା। ଦିନେ ସେ ଏକାନ୍ତରେ କହୁ କହୁ କାନ୍ଦି ପକାଇଥିଲେ। ସେ ମୋର ଅନ୍ତରଙ୍ଗ ଅବଶ୍ୟ, ମାତ୍ର ଏପରି ଭାବେ ଆକୁଳ ହୋଇ ଭାଙ୍ଗି ପଡ଼ିବାର ମୁଁ କେବେ ଜାଣିନଥିଲି। ତାଙ୍କ ଝିଅ ଜଣେ ପ୍ରଶାସନିକ ଅଫିସର। ଜ୍ୱାଇଁ ମଧ୍ୟ ଅନୁରୂପ ବୃତ୍ତିର ଅଧିକାରୀ। ଗୋଟିଏ ବଡ଼ ସହରରେ ଶାଶୁ ଶ୍ୱଶୁରଙ୍କ ପାଖରେ ପୁଅବୋହୂ ରହନ୍ତି। ଏକମାତ୍ର ପୁଅ ଓ ବୋହୂ; ଅଥଚ ନବବିବାହିତା ବୋହୂଟିକୁ ଶାଶୁ ଘରର ଅନେକ କାମ କରାନ୍ତି। ଅଫିସ୍‌ରୁ ଫେରି ସେ ଆଦୌ ବିଶ୍ରାମ ପାଏନାହିଁ। ସେ ଘରେ ଗାଉନ ପିନ୍ଧିବ ନାହିଁ, ଶାଢ଼ୀ ପିନ୍ଧିବ। ପୁଣି ଭଲମନ୍ଦ ଖାଇବା ଜିନିଷଟିକେ ଶାଶୁ ଯଦି କେତେବେଳେ କରନ୍ତି, ସ୍ୱାମୀ ଓ ପୁଅକୁ ସବୁତକ ବାଢ଼ି ଦିଅନ୍ତି। ବୋହୂକୁ ଦିଅନ୍ତି ନାହିଁ। ବୋହୂ ଅଫିସ୍‌କୁ ତାର ମଧ୍ୟାହ୍ନ ଭୋଜନ ଭାତ, ଡାଲି, ତରକାରୀଟିଏ ନେଇକି ଯାଏ। ପୁଅ ଦି'ପ୍ରହରେ ଘରକୁ ଆସେ। ମା', ବାପ, ପୁଅ ବସାଦହି, ସାଲାଡ଼, ଭଜା, ଶାଗ ଇତ୍ୟାଦି କରି ଖାଆନ୍ତି। ବୋହୂ ପାଇଁ ରଖନ୍ତି ନାହିଁ। ବୋହୂ ଯେ ଗୋଟେ ବଡ଼ ଚାକିରି କରି ଟଙ୍କା ଗୁଡ଼ାଏ ଘରକୁ ଆଣୁଛି, ଶାଶୁ ସେଥିରେ କିଛି ଗୁରୁତ୍ୱ ଦିଅନ୍ତି ନାହିଁ। ମନ ପୋଡ଼ିଗଲେ କିଏ ଜାଣିବ ? ବାପା ମା ଝିଅଟିକୁ ପୁଅଙ୍କ ସହ ସମାନ ସୁବିଧା ସୁଯୋଗ ଦେଇ ବଢ଼ାଇଲେ, ପଢ଼ାଇ ଯୋଗ୍ୟ କଲେ- ବଡ଼ଘରେ ଝିଅଟିକୁ ବିଭା ଦେଲେ। ଅଥଚ, ଖାଇବା ଗଣ୍ଡାକରେ ବି ପାତର ଅନ୍ତର-ଏ କଥା ସହିବାକୁ ଝିଅଟିକୁ କଷ୍ଟ ହୁଏ-ସେ ତା' ମା ଆଗରେ କହିଛି। କେତେଦିନ ସେ ଏସବୁ ସହିକି ରହିବ ? କହିବ ବା କାହାକୁ ?

ଝିଅ ଜନ୍ମ ସତରେ ଏମିତି ହୀନିମାନ। ଆମ ଭାରତ ଦେଶରେ ପ୍ରଚୁର ଦାରିଦ୍ର୍ୟ ରହିଛି ସତ, କିନ୍ତୁ କେବଳ ଦାରିଦ୍ର୍ୟ ଯୋଗୁଁ ନୁହେଁ, ହେୟ ଭାବ ଯୋଗୁଁ, ଅଶ୍ରଦ୍ଧା ଯୋଗୁଁ, ଅବିଚାର ଯୋଗୁଁ ଝିଅଟିଏ କେତେ କେତେ ଅନିଭୋଗ ନ ସହେ ? ସାମାଜିକ, ପାରିବାରିକ

ବ୍ୟବସ୍ଥାରେ ତାର ସ୍ଥାନ ସବୁବେଳେ ତଳେ । ତାର ରୂପ, ଗୁଣ, ବଚାର ବୁଦ୍ଧି ସବୁକିଛି ଯଦି ଉଚ୍ଚତର ବି ହୋଇଥାଏ ସେ ତଥାପି ନ୍ୟୁନ । ଏ କଥା ଅନେକ ଝିଅ ଅଙ୍ଗେ ନିଭାନ୍ତି । ମାତ୍ର ତାର ଅନୁପାତ ସର୍ବୋଚ୍ଚରେ ପହଞ୍ଚେ, ଯେବେ ନବଜାତ ଝିଅଟିଏ ପାଟିରେ ଲୁଣ କିମ୍ବା ଯୁରିଆ ଭର୍ତ୍ତି କରାଯାଏ ।

ଯେ କ'ଣ କାହାଣୀ ? ପାଠକେ, ଯେ କାହାଣୀ ନୁହେଁ, ଶୁଣିବାକୁ ଯେତେ ବୀଭତ୍ସ ଲାଗିଲେ ବି ଏହା ମଣିଷର ସୁଚିନ୍ତିତ ଆଚରଣ, ଯୋଜନାବଦ୍ଧ କାର୍ଯ୍ୟକଳାପ । ଏହା ଆମ ଭାରତବର୍ଷର ସବୁ ରାଜ୍ୟରେ ଉଣାଅଧିକେ ଘଟୁଛି । କେତେକ ରାଜ୍ୟରେ ଚରମକୁ ପହଞ୍ଚିଛି । ଝିଅଟିଏ ବଞ୍ଚିରହିବାର ଅଧିକାର ନାହିଁ । ଗାଈ, ଛେଳିର ମାଈ ଛୁଆଟିଏ ହେଲେ ଲୋକେ ଖୁସି ହେଉଛନ୍ତି, କିନ୍ତୁ ମଣିଷର ଝିଅଟିଏ ହେଲେ ବିଷାଦ ଛାଇ ଯାଉଛି । ତାକୁ ସହଜ ଉପାୟରେ ମାରି ଦିଆଯାଉଛି । ଏ ବିଷୟରେ ଭାବାନ୍ତର ଆସିବାର ସମୟ କ'ଣ ହୋଇନାହିଁ ? ଯେଉଁ ନାରୀର ପଣତ ତଳେ ମୁହୂର୍ତ୍ତେ ବିଶ୍ରାମ ନେଇ ବୀର ପୁରୁଷ ଜୀବନର ଜ୍ୱାଳା ଭୁଲିଯାଏ, ସେହି ନାରୀ ଜୀବନକୁ ଏପରି ନିରର୍ଥକ କରି ଦିଆଯାଉଛି କାହିଁକି ? ନାରୀ ନଥିଲେ ପୁରୁଷ ନାହିଁ, ସମାଜ ନାହିଁ, ସୃଷ୍ଟି ନାହିଁ; ଅଥଚ ତା'ପ୍ରତି ଦୃଷ୍ଟିକୋଣ ବଦଳିବ କେବେ ? କେବେ ତା'ପ୍ରତି ମାନବସୁଲଭ ଆଚରଣ କରାଯିବ ? (ସତ୍ୟ ଘଟଣା ଉପରେ ଆଧାରିତ)



# ପିତୃତ୍ୱର ଅଧିକାର

ବିଧିର ଏପରି ବିଚିତ୍ର ଘଟଣ ଯେ, ମାତୃତ୍ୱ ଓ ପିତୃତ୍ୱ ଲାଭ ପାଇଁ ଜୈବିକ ଯୋଗ୍ୟତା ହିଁ ଯଥେଷ୍ଟ । ଯୌବନ ଆସିଲା- ପୁରୁଷ ଓ ନାରୀ ସଙ୍ଗମ କ୍ରିୟା ନିମିତ୍ତ ସମର୍ଥ ହେଲ ଏବଂ ମାତୃତ୍ୱ, ପିତୃତ୍ୱ ଲାଭ କରିବା ନିମିତ୍ତ ଯୋଗ୍ୟତା ହାସଲ କଲେ । ଜାନ୍ତବ ଦୃଷ୍ଟିରୁ ଏହା ମଧ ଉପଯୁକ୍ତ । ମାତ୍ର ଯୌନକ୍ରିୟାରେ ଲିପ୍ତରହିବା ଓ ପିତୃତ୍ୱ ବା ମାତୃତ୍ୱକୁ ସ୍ୱୀକାର କରିବା ଏକା କଥା ନୁହେଁ । ସାରା ବିଶ୍ୱର ଇତିହାସରେ ଓ ଇତିହାସର ବାହାରେ ଦାୟିତ୍ୱହୀନ ପିତୃତ୍ୱ ମାତୃତ୍ୱ ତଥା ଅବୈଧ ସନ୍ତାନଙ୍କର ଅସଂଖ୍ୟ ଦୃଷ୍ଟାନ୍ତ ରହିଛି । ନିତ୍ୟନିୟତ ବହୁ ଅବୈଧ ଓ ଅବାଞ୍ଛିତ ସନ୍ତାନ ଭୂମିଷ୍ଠ ହେଉଛନ୍ତି; ବହୁ ଅବୈଧ ଭ୍ରୂଣ ସଞ୍ଚାର ହେଉଛି । ପୁରୁଷ ଓ ନାରୀଙ୍କର ଏ ଦିଗରେ ସଚେତନତା ଆଦୌନାହିଁ । ଦମ୍ପତି ମଧ ଦାୟିତ୍ୱ ଗ୍ରହଣ କରିବା ନିମିତ୍ତ ପ୍ରସ୍ତୁତ ନୁହନ୍ତି । ଆମ ଦେଶର ନାରୀମାନେ ଶିକ୍ଷା ଓ ଉପାର୍ଜନ କ୍ଷେତ୍ରରେ ଆଗୁଆ ନୁହନ୍ତି । ଏବଂ ଯାହା ହେଲେ ବି ଇଚ୍ଛା ହେଉ ବା ଅନିଚ୍ଛା ହେଉ, ମାତୃତ୍ୱର ଦାୟିତ୍ୱ ପଡ଼ିଗଲେ ସ୍ତ୍ରୀଲୋକଟି ଯଥାସାଧ୍ୟ ତାକୁ କାନ୍ଧରେ ବୋହିଚାଲେ । ମାତ୍ର ପୁରୁଷ ?

ପୁରୁଷ ମାତ୍ରେ ପିତୃତ୍ୱର ଅଧିକାରୀ ହୋଇପାରନ୍ତି ନାହିଁ, ସେଥିପାଇଁ ବଢ଼ିଚାଲିଛି ଅବାଞ୍ଛିତ ସନ୍ତାନ, ଅବହେଳିତ ନିର୍ଯାତିତ ଶୈଶବ, ନିରନ୍ନ ଶିଶୁ ତଥା ଧର୍ଷଣ ଓ ଶିଶୁହତ୍ୟା । ବଢ଼ିଚାଲେ ପୃଥିବୀ ମାତାର ଦୁଃଖ-ଭାର ।

ଏମିତି ଘଟଣାଟିଏ ଘଟିଛି ଏକ ବଡ଼ ସହରରେ । ଫରମାଇଣ୍ ଅଲ୍ଲିର୍ ପତ୍ନୀ ପରବିନ୍ ଲାଗ୍ ଲାଗ୍ ଜନ୍ମକରି ବସିଛି ତିନିଗୋଟି ଝିଅ । ହୁଏତ ତାର ବିବାହ ମାତ୍ର ୫ ବର୍ଷ ହୋଇଛି । ଆର୍ଥିକ ଅବସ୍ଥା ମଧ ସ୍ୱଚ୍ଛଳ । ସ୍ଥଳବିଶେଷରେ ଝିଅଟି ପାଇଁ ଅର୍ଥ ଦରକାର- ଆଉ ଯାହା ହେଉନା କାହିଁକି, ଯୌତୁକ ଦେଇ ବିଭାଘର କରିବାକୁ ତ ହେବ । କିନ୍ତୁ ସ୍ୱଚ୍ଛଳ ଅବସ୍ଥାର ବ୍ୟକ୍ତି ଫରମାଇଣ୍ କଲେ କ'ଣ ? ଦୁଇ ଝିଅପରେ ବହୁତ ଆଶା କରିଥିଲେ ଏଥର ପତ୍ନୀ ପର୍‌ବିନ୍ ପୁତ୍ର ପ୍ରସବ କରିବ । କିନ୍ତୁ ଦୁଇ ମାସ ତଳେ ୩ୟ କନ୍ୟା ସନ୍ତାନ ଜନ୍ମ ନେଲା । କନ୍ୟା ଭ୍ରୂଣ ହତ୍ୟାଠାରୁ ଅଧିକ ଭୟଙ୍କର ନାରକୀୟ କାଣ୍ଡ କରିବବସିଲେ ସେ । ପତ୍ନୀଙ୍କ ଅନୁପସ୍ଥିତିରେ ୩ଟି ଯାକ ଝିଅଙ୍କୁ ଗୁଳିକରି ମାରିଦେଲେ ଫରମାଇସ ଅଲ୍ଲି ।

ପତ୍ନୀଘରକୁ ଫେରିଲେ । ଏ ଦୃଶ୍ୟ ଦେଖି, ରକ୍ତରେ ଭାସୁଥିବା ଶିଶୁ ତିନୋଟିଙ୍କ ଶରୀର ପାଖରେ ମୂର୍ଚ୍ଛାଗଲେ । ଦାରୁଣ ଗର୍ଭକଷ୍ଟ ସହି, ଜନ୍ମଦେଇ, କ୍ଷୀର ଖୁଆଇ, ପାଳିପୋଷି ବଡ଼ କରିଥିଲେ ପିଲାଙ୍କୁ । ପାଞ୍ଚବର୍ଷର ବିବାହିତ ଜୀବନ ମଧ୍ୟରେ ଗୋଟିଏ ଝିଅ କୋଳରେ ତ ଗୋଟିଏ ଗର୍ଭରେ । ସେମାନଙ୍କ ରକ୍ତ ଦେଖି ଧୈର୍ଯ୍ୟ ଧରନ୍ତେ କିପରି ? ୟା'ପରେ ଫରମାଇଶ ଅଲ୍ଲିର କ'ଣ ହେବ ମୁଁ ଜାଣେନି, ଜାଣେନି ପର୍‌ବିନ ମଧ୍ୟ କି ପ୍ରତିକାର କରିପାରିବ । ପାଠକେ, ରାକ୍ଷସ ବି ପାଷାଣ୍ଡ ପଦ ହୁଅନ୍ତା ନାହିଁକି ଏଭଳି ହତ୍ୟାକାଣ୍ଡ କରିବା ନିମିତ୍ତ । ନିଜ ଔରସଜାତ ସନ୍ତାନକୁ ମଣିଷ ଯେ ହତ୍ୟାକରି ପାରେ, ଏହା ଅବିଶ୍ୱାସ୍ୟ ମନେହୁଏ । ଏସବୁ ମନୋବୃତ୍ତିର, ସଂଶୟର ସହଜ ସମାଧାନ ନିଶ୍ଚିତ ଭାବେ ନାହିଁ ।

ଫରମାଇଶ୍ ଭଳି ଲୋକର ପିତାହେବାର ଅଧିକାର ଅଛି କି ? ସେ ସନ୍ତାନର ଜନକ ସତ, ମାତ୍ର ଏହି ପିତୃତ୍ୱ କେବଳ ଶାରୀରିକ ଉତ୍ତେଜନାର ଫଳ । ସେ ଫଳ ବା ପରିଣତି ପ୍ରତି ତାର ଦାୟ ନାହିଁ । ପାଶବିକ ଲାଳସାର ପରିତୃପ୍ତି କଦାପି ପିତୃତ୍ୱ ନୁହେଁ । ପାଶବିକ ଲାଳସାର ପରିତୃପ୍ତି କଦାପି ପିତୃତ୍ୱ ନୁହେଁ । ଭାରତୀୟ ବେଦ ଉପନିଷଦ୍‌ରେ ପିତାଙ୍କୁ ବହୁ ଉଚ୍ଚାସନ ଦିଆଯାଇଛି "ପିତା ଧର୍ମ, ପିତା ସ୍ୱର୍ଗ, ପିତା ହିଁ ପରମଃ ତପଃ । ପିତରି ପ୍ରୀତିମାପନ୍ନେ ପ୍ରିୟେନ୍ତେ ସର୍ବଦେବତାଃ ।" ପିତାର ବାତ୍ସଲ୍ୟ, ଆତ୍ମୋତ୍ସର୍ଗ, ସୁମନାସ ପ୍ରତି ଏହାଠାରୁ ଅଧିକ କେଉଁ ସମ୍ମାନ ନିବେଦିତ ହୋଇପାରନ୍ତା ?

ଅନାଦି କାଳରୁ ଦର୍ଶନ ଶାସ୍ତ୍ରଜ୍ଞଗଣ, ଆଧାତ୍ମସାଧକଗଣ, ମାନବସମାଜର ମଙ୍ଗଳ ନିମନ୍ତେ ଅପତ୍ୟ ସ୍ନେହର ରାଶିରାଶି ପ୍ରଶଂସା କରିଆସିଛନ୍ତି । ଏହି ସ୍ନେହ ଅତ୍ୟନ୍ତ ବିସ୍ମୟକର ମଧ୍ୟ । ଏହାର ଦୁଇଟି ଦିଗ ରହିଛି । ଗୋଟିଏ ଧ୍ୱଂସକାରୀ ତ ଅନ୍ୟଟି ଗଠନଧର୍ମୀ ।

ପୁତ୍ର ସ୍ନେହାନ୍ଧ ଧୃତରାଷ୍ଟ୍ରଙ୍କ କଥା କିଏ ନଜାଣେ ? କିଏ ବା ହୃଦୟଙ୍ଗମ ନ କରେ ଯେ, ଆଜିର ଯୁଗରେ ଧୃତରାଷ୍ଟ୍ରମାନଙ୍କ ସଂଖ୍ୟା ଅଧିକ ଓ ସେମାନେ କେବଳ ସନ୍ତାନର ମନ୍ଦ ଦିଗ ପ୍ରତି ଆଖିବୁଜି ବସିନାହାନ୍ତି ବରଂ ସନ୍ତାନକୁ ମନ୍ଦ ଦିଗରେ ପରିଚାଳିତ କରିବା ନିମିତ୍ତ ତାଲିମ୍ ଦେବାରେ ଲାଗିଛନ୍ତି । ଏ ସଂସାରରେ ତାଙ୍କରି ସନ୍ତାନର ହିଁ ସବୁକିଛି ପ୍ରାପ୍ୟ, ଭୋଗ୍ୟ, ସବୁକିଛି ଅଧିକାରଗତ ହେବା ଦରକାର । ଆଉ ଦ୍ୱିତୀୟବ୍ୟକ୍ତିନାହିଁ ଏ ପୃଥିବୀରେ । ସକଳ ବସ୍ତୁକୁ ଚାଟି ଯିବାକୁ ଏମାନେ ତତ୍ପର । ଏମାନେ ଯଥାର୍ଥ ପିତା ପଦବାଚ୍ୟ ନୁହନ୍ତି, ଅଥଚ ସବୁଠାରୁ ଯୋଗ୍ୟ ପିତାରୂପେ ସମାଜରେ ସ୍ୱୀକୃତ ହୁଅନ୍ତି । ଅନ୍ୟ ପ୍ରକାର ପିତୃତ୍ୱଟି ଭଲ ମଣିଷ ଗଢ଼ିବାକୁ ଚାହେଁ, ଉତ୍ତମ ଶିକ୍ଷା ଦିଏ, ଆପଣାର ସମୟ ଓ ଶ୍ରମ ବିନିଯୋଗ କରେ । ସନ୍ତାନକୁ ଭଲବାଟରେ ନେବା ପାଇଁ ବିଭୁକରୁଣା ପ୍ରାର୍ଥନାକରେ ।

ଆଜି ତିନୋଟି ଝିଅ ଜନ୍ମକରିବା ଅପରାଧରେ ହାହାକାର କରୁଥିବା ପର୍‌ବିନ୍ କାହା ଆଗେ ଜଣାଇବ ? ଝିଅଙ୍କୁ ଯଦି ଏତେ ଘୃଣା, ଭବିଷ୍ୟତର ବଂଶଧରମାନେ ଏ ପୃଥିବୀକୁ

ଆସିବେ କିପରି ? ନାରୀ ତ ଗୋଟିଏ ଓ ଏକମାତ୍ର ମାଧ୍ୟମ ; ପୃଥିବୀ ଜନଶୂନ୍ୟ ହୋଇଯିବ ନାହିଁ ? କନ୍ୟା ଭ୍ରୂଣ ହତ୍ୟାଠାରୁ ଆହୁରି ଜଘନ୍ୟ ଏହି ଅପରାଧକୁ ସହିନପାରି ପୃଥ୍ୱୀ ଯଦି ଫାଟିଗଲା, ଧ୍ୱଂସ ହୋଇଗଲା ଜଗତ, ତେବେ ଦୋଷ କାହାର ହେବ ? ନୃଶଂସ ପିତୃତ୍ୱର ? ଏହି ବର୍ଷ ଦେଶର ସର୍ବତ୍ର ନାରୀସଶକ୍ତିକରଣ ସମ୍ବତ୍ସର ପାଳିତ ହେଉଥିବା ଅବସରରେ, ସ୍ତ୍ରୀଲୋକଟିଏ କନ୍ୟାସନ୍ତାନ ଜନ୍ମ କରିବା ଅପରାଧରେ ଏହି ଅପରିହାର୍ଯ୍ୟ ଭାଗ୍ୟକୁ କେଉଁଭାବରେ ଗ୍ରହଣ କରିବ ? ସେ କ'ଣ ଦାୟିତ୍ୱହୀନ ପୁରୁଷକୁ ପତି ରୂପେ ନଦେଖି ଅସୁର ରୂପରେ ଦେଖିପାରିବ ନାହିଁ ? ସେହି ଅସୁରର ନିଧନ ପାଇଁ ସେ ଦେବୀ ଦୁର୍ଗା ପାଲଟି ନଯିବ କାହିଁକି ? ଏଥିରେ ଦୋଷ କେଉଁଠି ?

❑❑❑

# ଭିନ୍ନ ଦାମ୍ପତ୍ୟ

ଜାୟା ଓ ପତି-ଦମ୍ପତି, ଦୁଇଟି ଶବ୍ଦକୁ ଗୋଟିଏ ଶବ୍ଦରେ ପରିଣତ କରିବାର ସମାସ ଯେ ତିଆରି କରିଥିଲେ, ସେଇ ବୈୟାକରଣିକ ମନେ କରିଥିଲେ ଯେ ଜାୟା ଏବଂ ପତି ଦୁଇଜଣ ବ୍ୟକ୍ତି ହେଲେ ହେଁ କାୟମନୋବାକ୍ୟରେ ଏକ ହେବା ଜରୁରୀ । ମଣିଷ ସମାଜ ପାଇଁ ମଙ୍ଗଳକର ହେବ, ଯଦି ଜାୟା ଓ ପତି ଏକ ହୋଇଯାନ୍ତି । ବିଶ୍ୱର ବହୁ ଅଞ୍ଚଳରେ ଆଜି ଏ କଥାକୁ ସମ୍ମାନ ଦେବାକୁ ଅନେକେ ପ୍ରସ୍ତୁତ ନୁହନ୍ତି-ମାତ୍ର ଭାରତବର୍ଷ ଏବେ ବି ଏହାକୁ ଅସମ୍ମାନ କରିନାହିଁ । ମଣିଷ ଜାଣେ ଯେ ସୃଷ୍ଟିର ମୂଳରେ ନାରୀ ଓ ପୁରୁଷ ଉଭୟଙ୍କର ଆବଶ୍ୟକତା ଅଛି ଜନକଜନନୀ ଭାବରେ । ଶିଶୁଟିଏ କେତେ ଯତ୍ନ, କେତେ ଶ୍ରଦ୍ଧା, କେତେ ବେଶୀ ମନୋଯୋଗ ପାଇବାର ହକ୍‌ଦାର !

ଦେଖିବାକୁ ଗଲେ ପ୍ରକୃତି ବି ଏ କ୍ଷେତ୍ରରେ ପାତର ଅନ୍ତର କରିଛି । ନାରୀଟିଏ ଗର୍ଭବତୀ ହେବ, ପ୍ରସବ ବେଦନା ସହିବ, କ୍ଷୀର ଖୁଆଇବ, ପିଲା ପାଳିବ, ପିଲା ପାଇଁ ଖାଇବା ସଜାଡ଼ିବ, ରୋଗରେ ପଡ଼ିଲେ ସେବା କରିବ । ପୁରୁଷ ଏ କ୍ଷେତ୍ରରେ ଅନେକଟା ମୁକ୍ତ । ସେଥିପାଇଁ ନାରୀଟିଏ ବହୁ ଦୁର୍ଦ୍ଦଶାର ସମ୍ମୁଖୀନ ହୁଏ । ପିଲାଟି ଦିନୁ ସଚେତନ ହୋଇ ନିଜକୁ ପ୍ରସ୍ତୁତ କରିଥା'ଏ । ଯେଉଁଝିଅମାନେ ଖୁବ୍ ବଡ଼ ଚାକିରି ବାକିରି ବି କରିଥା'ନ୍ତି ତାଙ୍କ କ୍ଷେତ୍ରରେ କିଛି ରିହାତି ମିଳିନଥାଏ । ସେମାନେ ବି ପରିବାରର ଅଧିକାଂଶ ଦାୟିତ୍ୱ ନେଇଥା'ନ୍ତି ଅନନ୍ୟୋପାୟ ହୋଇ । କେତେକ ପରିବାରରେ ସ୍ତ୍ରୀର ଏତାଦୃଶ କର୍ତ୍ତବ୍ୟପରାୟଣତାକୁ ସ୍ୱାମୀ ମଧ ବିଶେଷ ମୂଲ୍ୟ ଦିଏ ନାହିଁ । ଅଥଚ ପତିପତ୍ନୀ ଭିତରେ ଏବେ ବି ଭାରତୀୟ ସମାଜରେ ଉପରୋକ୍ତ ଏକାତ୍ମପଣଟି ସମସ୍ତେ ଆଶା କରିଥା'ନ୍ତି । ଯଦିଓ ସମୟ ବହୁତ ବଦଳିଲାଣି । ପତ୍ନୀମାନେ ବିଦୂଷୀ, ଉଚ୍ଚଶିକ୍ଷିତା ଓ ଅଧିକ ଭାବରେ ବ୍ୟକ୍ତିତ୍ୱ-ସଚେତନ ହୋଇଛନ୍ତି । ଆଜିକାଲି ବିଭିନ୍ନ କାରଣରୁ ସମାଜରେ ବିବାହ ବାହାରେ ପ୍ରେମ ବା ପରକୀୟା ଖୁବ୍ ପ୍ରସାର ଲାଭ କରୁଛି । ପୁରୁଷର ବ୍ୟକ୍ତିତ୍ୱରେ ନିଷ୍ଠୁରତା ଓ ଅବଜ୍ଞା ଅଧିକତର ଭାବରେ ଦେଖାଦେଇଛି ।

ଏସବୁ କଥା ମୁଣ୍ଡରେ ଢୁକିଲେ କେତେ ଆଡ଼କୁ ବିସ୍ତାରିଯାଏ । ରୁନୁ କହେ- ''ଦେଖୁନ୍ତୁ, ଶିକ୍ଷିତା, ସୁନ୍ଦରୀ, ଝିଅଗୁଡ଼ାକ କେମିତି ଗୋଟେ ପରେ ଗୋଟେ ଆତ୍ମହତ୍ୟା

କରୁଛନ୍ତି । କ'ଣ ସେମାନଙ୍କର ହଉଚି ? ସବୁର ଅନ୍ତରାଳରେ ଜଣାଯାଉଛି ଯେପରି ସ୍ୱାମୀର ଅବଜ୍ଞା ଓ ଅବହେଳା ରହିଛି । ଧନରେ ନୁହେଁ ମନରେ । ଶାଶୁଘରେ କୋଉଠି କେମିତି ଶାଶୁ ଶ୍ୱଶୁର, ଯାଆ, ନଣନ୍ଦ ବି କମ୍ ଜ୍ୱାଳା ଦିଅନ୍ତି ନାହିଁ । ତଥାପି ପତିର ଯଦି ବ୍ୟାକୁଳତା ଥାଏ, ସ୍ନେହ ଥାଏ, ପତ୍ନୀଟି ସବୁକୁ ପଛରେ ପକାଇ ଜୀବନରୁ ସୁଆଦ ଖୋଜେ ।''

ରୁନୁର କଥାଶୁଣି ଆଖି ଆଗରେ ଭାସି ଉଠିଲା ସେଦିନ ସକାଳେ ସମ୍ବାଦପତ୍ରରେ ଦେଖିଥିବା ଫଟୋ ଖଣ୍ଡିକ । ଗୋଟିଏ ସୁନ୍ଦର ପ୍ରାସାଦ ଭିତରେ ସଜଡ଼ା କୋଠରୀ । ତା'ଭିତରେ ବିଜୁଳି ପଙ୍ଖାରେ ଝୁଲୁଛି ୨୨/୨୩ବର୍ଷର ସୁନ୍ଦରୀ ଝିଅଟେ । କାନ୍ଧ ଉପରକୁ ଲୋଟି ପଡ଼ିଛି ଘନକଳା କେଶ । ଗୋରା ତକ ତକ ମୁହଁ । ପିନ୍ଧିଚି ଗାଢ଼ ରଙ୍ଗର ଶାଢ଼ୀ-ହାତକଟା ବ୍ଲାଉଜ-ଖବରଥିଲା ୧୦ ମାସର ଝିଅଟିଏ ତା'ର । ଏମ୍.ଏସ୍.ସି. ପଢୁଥିଲା ସେ । ତା'ସ୍ୱାମୀ ଇଞ୍ଜିନିୟର ଗୋଟିଏ ପୁଅ-ଶାଶୁ ଶ୍ୱଶୁର ଅଛନ୍ତି । ଖାସ୍ ଏଇ ରାଜଧାନୀରେ ରହେ । କାହା ଝିଅ ହୋଇଥିବଟି ସେ ! ଭଲ ବରଟିଏ ଜୁଟିଲା ବୋଲି ବି.ଏସ୍.ସି. ପାସ୍ କରିଥିବା ବୁଦ୍ଧିମତୀ ଝିଅକୁ ବାପା ମାଆ ବିଭା କରିଦେଲେ । ୨ ବର୍ଷ ପରେଯେ ଏମିତି ଭାବରେ ବିଦା ହୋଇଯିବ ଝିଅଟି, ଆହାଃ । ବିଚରା ବାପା ମାଆ ।

ଫୋନ୍ କଲି ରୁନୁକୁ । ''ପେପର୍ ଦେଖିଲୁ ?'' ଆହା ରୁ....ରୁ....ରୁନୁର । କ'ଣ ହେଲାଟି । କିଏ କହିବ କ'ଣ ହେଲା ? ଝିଅଟା ୧୦ ମାସର ଛୁଆକୁ ଚାହିଁଲା ନାହିଁ- ବାପା ମାଆଙ୍କ କଥା ବି ଭାବିଲା ନାହିଁ ଟିକିଏ । ଚଣ୍ଡାଳୁଣୀ ! କେତେ କଷ୍ଟରେ ଛୋଟ ପିଲା ଧରି ପାଠ ପଢୁଥିଲା-କ'ଣ ଏମିତି ହେଲା ଯେ ! ସମର୍ଥ ବାପା ମାଆ ତ ଥିଲେ; ନିଜ ପେଟରେ ବିଦ୍ୟା ଥିଲା, ବୁଦ୍ଧି ଥିଲା । କିଛି ଆଉ ରାହା ମିଳିଲା ନାହିଁ ତାକୁ ? ଧେତ୍, ଏ ଝିଅଗୁଡ଼ାକ ଜୀବନର କିଛି ଅର୍ଥ ଭାବନ୍ତି ନାହିଁ-କେବଳ ସ୍ୱାମୀ ବର...ବର... । ମୁଁ କଥା କାଟିଲି । ''ବୁଝିଲୁ, ଯାହା ସବୁ କହିଗଲୁ ଆଜି, ଉତର ବୟସରେ ସିନା ବୁଝିଲୁ, ଏସବୁ ସହଜରେ ବୁଝାପଡ଼େ ନାହିଁ । ଅଳ୍ପ ବୟସରେ, ନୂଆ ବିଭା ହେଲା ବେଳେ ଲାଗେ, ସ୍ୱାମୀ ହିଁ ସବୁକିଛି । ତା'ର ଭଲ ପାଇବା ଥିଲେ ଏ ସଂସାର ଅଛି, ନଥିଲେ ନାହିଁ ।''

॥ ୨ ॥

ଏକବିଂଶ ଶତାବ୍ଦୀର ପ୍ରଥମ ଛଅମାସ ମଧ୍ୟରେ ପ୍ରାୟ ଏଇ ଗୋଟିଏ ସହରରେ ଚାରିଟି ଏମିତି ଆତ୍ମଘାତର ଖବର । ସବୁଠି ସଦ୍ୟ ବିବାହିତା, କିଏ ସାନ ପିଲାର ମାଆ ତ କିଏ ମାଆ ହେବାକୁ ସମୟ ହୋଇନାହିଁ । ବିଂଶ ଶତାବ୍ଦୀର ଶେଷ କାଳକୁ ଉଚ୍ଚଶିକ୍ଷିତା ଝିଅମାନେ ଏପରି ଅବୋଧ ଅଥୟ ହୋଇପଡୁଛନ୍ତି କାହିଁକି ? ମୁଁ ନିଜକୁ ପ୍ରଶ୍ନ କରେ, ରୁନୁକୁ ବି ।

ଏଣେ ପଶ୍ଚିମା ପବନ ହୁହୁ ପଶିଆସୁଛି, ଧାଇଁ ଧାଇଁ ଭାଙ୍ଗିପଡୁଛି ପୁରାତନ

ବଟବୃକ୍ଷର ଡାଳସବୁ । ପତି ପତ୍ନୀର ସମ୍ପର୍କ ହୁଗୁଳା ହୋଇଯାଉଛି । ସାମାଜିକ ବିଷମ ସ୍ଥିତି ହେତୁ ଶିକ୍ଷିତା ଝିଅମାନେ ନା ଉପାର୍ଜନକ୍ଷମା ହୋଇପାରୁଛନ୍ତି ନା ଯୌତୁକ ବିନା ବିବାହ କରିପାରୁଛନ୍ତି ? ଅତଏବ ଉପପତ୍ନୀ ହୋଇ ରହିଯିବା ଛଡ଼ା ବେଳେବେଳେ ସେମାନଙ୍କର ଗତ୍ୟନ୍ତର ରହୁନାହିଁ । ଏଇତ ଡାକ୍ତର ଅଜିତ୍‌ଙ୍କ ବଡ଼ଝିଅ ସେଦିନ ବେକରେ ରସି ଲଗାଇଦେଲା । ଗୋଟିଏ ବୋଲି ଝିଅ ମାଆ ବାପାଙ୍କର । ଅମାପ ସମ୍ପତ୍ତି । ଝିଅ ବି.ପି.ଏଡ୍.ଡ଼ି କରୁଥିଲା । ବିବାହର ୬ମାସ ହୋଇନି । କ'ଣ ହେଲା ତା'ର ? ଏକାଏକା ସ୍ୱାମୀ ପାଖରେ ତ ରହୁଥିଲା । ବିଦେଶରେ ଘର କରୁଥିଲା । କେଉଁଠି ଛିଣ୍ଡିଗଲା ତା'ର ଘରକରଣାର ସୁତା ଖିଅ ? କେତେ ଯାନି ଯୌତୁକ ଦେଇ, ଯକଯମକ ଭୋଜିଭାତ କରି ବାପା ମା' ବିଭା ଦେଲେ । ବାପା ମା'ଙ୍କୁ କହି ନ ଥାଆନ୍ତା କିଛି ! ନିଜ ବିଡ଼ମ୍ବିତ ଦାମ୍ପତ୍ୟର ସ୍ୱରୂପ ଦେଖାଇ କିଛି ପରାମର୍ଶ ମାଗି ନଥାଆନ୍ତା ? ହଠାତ୍ ଆତ୍ମହତ୍ୟା । ଯେଉଁ ବାପା ମା' ଦୀର୍ଘ ୨୫ ବର୍ଷ ବଢ଼ାଇ, ପାଠ ପଢ଼ାଇ ବିବାହ କରାଇଲେ, ଏଇ ଶିକ୍ଷିତା ତରୁଣୀର ସେମାନଙ୍କ ପାଇଁକିଛି ଦାୟ ନାହିଁ ? କେବଳ ସ୍ୱାମୀ । ସେ ମଦ୍ୟପ, ଦୁଶ୍ଚରିତ୍ର ବା ରୁକ୍ଷ ବା ସେମିତି ଆଉ କିଛି କାରଣ ହୁଏତ ଥିବ । ତଥାପି ଏ ସାରା ଜୀବନ କ'ଣ କେବଳ ଜଣକୁ ହିଁ କେନ୍ଦ୍ର କରି କଟିବ ? ଆଉ କୌଣସି ଆତ୍ମୀୟତାର କିଛି ମୂଲ୍ୟ ନାହିଁ ? ରୀତା ଆତ୍ମହତ୍ୟା କରିଛି । ସ୍ୱାମୀ ସ୍ତ୍ରୀଙ୍କର କଳିଲାଗେ । ସ୍ୱାମୀ ଖୁବ୍ ପିଟିଥିଲା କାଳେ । କହିଥିଲା କି ତୁ ମଲେ ମଙ୍ଗଳ । ମୋତେ ବହୁତ ଝିଅ ମିଳିବେ । ତୁ ଯା' ..ତୁ ମର । ଏମିତି ନିଷ୍ଠୁର କଥା କିଏ କହିପାରେ ? ଅସମ୍ଭବ । ନିଜ ପତ୍ନୀକୁ, ନିଜ ପିଲାର ମାଆ ପ୍ରତି ଏ ପ୍ରକାର କଠୋର ବାକ୍ୟ କିଏ ଉଚ୍ଚାରଣ କରିପାରିବ କଦାପି ନୁହେଁ । ହେଲେ ମୋର ଏ ଧାରଣାକୁ ରୁନୁ ଖଣ୍ଡନ କରେ । କ'ଣ ଏମିତି ସ୍ୱପ୍ନପ୍ରବଣ ହୋଇ ରହିଯାଇଚୁ ମ । ଆଜିକାଲି ଲୋକଙ୍କର ଦୟାମାୟା ଅଛି ? ଇନ୍ଦ୍ରିୟ ସର୍ବସ୍ୱ, ଭୀଷଣ ନିଷ୍ଠୁର ଲୋକ ଗୁଡ଼ାକ । ରୀତାକୁ ହୁଏତ ଏମିତି କିଛି କହିଥିବ । ତାକୁ ବାଧିଥିବ ଅତିଶୟ । ନହେଲେ ଦି'ଟା ସାନ ଝିଅକୁ ଛାଡ଼ି ସେ ଏ କାମ କରିଥା'ନ୍ତା ? ମୁଁ ଶୁଣି ଯୁକ୍ତିର ଖିଅ ଧରେ, ରୀତା ଏତେ ସୁନ୍ଦରୀ,

## ।। ୩ ।।

ତେବେ ଏଇ ସୁନ୍ଦରୀ, ଶିକ୍ଷିତା ଅଳ୍ପ ବୟସର ବିବାହିତା ଝିଅଗୁଡ଼ିକ ଏପରି ଭାଙ୍ଗି ପଡୁଛନ୍ତି କାହିଁକି ? ସାରା ଜୀବନ ଅନ୍ଧାର ଦିଶୁଚି ତାଙ୍କୁ ? ବଞ୍ଚିବାର କୌଣସି ଅବଲମ୍ବନ ପାଉନାହାନ୍ତି ? ମାନସିକ ଦୁଃଖକୁ ସହିବାର ଶକ୍ତି ବି ନାହିଁ ? ଆମ ଭାରତୀୟ ବିଶ୍ୱାସରେ ସ୍ୱାମୀ ସବୁକିଛି ସତ, କିନ୍ତୁ ସ୍ୱାମୀ ଯଦି ଦୁଶ୍ଚରିତ୍ର, ଲମ୍ପଟ ଓ ରୁକ୍ଷ ହୁଏ ? ତା'ପାଇଁ ଜୀବନ ଦେଇଦେବା ଶ୍ରେୟସ୍କର ବୋଲି ଏକବିଂଶ ଶତାବ୍ଦୀର ସ୍ୱାଗତ ଦିବସରେ, ଜଣେ ଶିକ୍ଷିତା ଝିଅ ଗ୍ରହଣ କରିନିଏ ? ସେ ସ୍ୱାମୀଠାରୁ କ'ଣ ସବୁ ଆଶା କରେ କି ? ଯେଉଁ ଯୁଗରେ ପାଟିବୁଜି, ଗଣ୍ଡିଏ ଖାଇ, ଖଣ୍ଡିଏ ପିନ୍ଧି ସନ୍ତାନ ଜନ୍ମ କରିଯିବା ସ୍ତ୍ରୀର ଭୂମିକା ଥିଲା, ସେ

ଯୁଗ ଆଉ ନାହିଁ । ସ୍ୱାମୀଠାରେ ଓ ସ୍ୱାମୀର ମନ ପ୍ରାଣ, କ୍ରିୟାକଳାପରେ ଅଧିକାର ଖୋଜିବା ସ୍ତ୍ରୀର ଅଭ୍ୟାସ ହେଲାଣି । ଏଥିରେ କିଛି ତ୍ରୁଟି ନାହିଁ । ଯଦି ଜଣେ ଅନ୍ୟଜଣକ ପାଇଁ ବଞ୍ଚିବ, କିଛିଟା ବିଶ୍ୱସ୍ତତା ସେ ଆଶା କରିବା ଭୁଲ୍ ନୁହେଁ । କିନ୍ତୁ ଏ ଯୁଗରେ ଅନେକ ଘଟଣା, ଅନେକ ବିଶ୍ୱାସ ବଦଳିଚି । ଏ ଯୁଗର ଝିଅ ସେଥିପ୍ରତି ଆଖି ବୁଜିଦେଲେ ଚଳିବ ନାହିଁ । ନିଜର ସନ୍ତାନ, ବାପା ମା', ପ୍ରିୟ ପରିଜନ, ଭାଇଭଉଣୀ କେହି ବି କ'ଣ ଆଖିକୁ ଦିଶିବେ ନାହିଁ ? ସେ ଆଡ଼ଜଷ୍ଟ କରିବ ନାହିଁ, ଦରକାର ପଡ଼ିଲେ ସ୍ୱାମୀଠାରୁ ଦୂରେଇ ଆସି ସ୍ୱାବଲମ୍ବୀ ହୋଇପାରିବ ନାହିଁ ? ମୋର ଏତକ କଥା ଶୁଣି ରୁନୁ ଜିଭ କାମୁଡ଼ି ପକାଇଲା । 'ମା ଲୋ, ମରୁପଛେ, ସ୍ୱାମୀ ଛାଡ଼ି ଆସିବ ? ତୁ କ'ଣ ଜାଣିନୁ, ଆଜି ବି କେତେ ଲୋକ ଏ ଅନ୍ଧବିଶ୍ୱାସରୁ ମୁକୁଳି ନାହାନ୍ତି । ଝିଅକୁ ଶିକ୍ଷିତା କରି ସୋହାଗୀ କରି ବଢ଼ଉଛନ୍ତି ସତ, କିନ୍ତୁ ବିଡ଼ମ୍ବିତ ଜୀବନ ପଥରେ ସେ କେମିତି ଆଗେଇବ, ସେ ବିଷୟରେ ସେମାନେ ନିଶ୍ଚିନ୍ତ । ପୁରାତନ ପ୍ରଥା ହିଁ ଶ୍ରେୟସ୍କର । ଗୋଟିଏ ଶତାବ୍ଦୀ ବିତିଲା। ନୂଆ ଶତାବ୍ଦୀ ଉପଗତ । ମଣିଷ ଚରିତ୍ର ଏଇ ବସ୍ତୁବାଦୀ ଦୁନିଆରେ ବସ୍ତୁ ସୁଲଭ ହୋଇଗଲାଣି । ଏକଥା କେବେ ବୁଝିବେ ଆମ ଲୋକେ ? କେବେ ଏ ବିଷୟରେ ସଚେତନ ହେବେ ଆମ ଝିଅମାନେ ? ମୋ ଝିଅ ବିଦେଶକୁ ଯାଇଛି । ପଶ୍ଚିମ ଦେଶ । ଲେଖିଛି, ଏଠି ବିବାହ ଅନୁଷ୍ଠାନ ବହୁତ କମ୍, ମାତ୍ର ୩୫ ପ୍ରତିଶତ ହେବ ବୋଧେ । ପୁଣି ମାଆ ହେବାକୁ କେହି ଚାହୁଁନାହାନ୍ତି । ଏକତ୍ର ବାସପ୍ରଥା ଚାଲିଛି । ଇଏ ବିଦେଶ କଥା । ଭାରତୀୟ ସଂସ୍କୃତିର ମର୍ଯ୍ୟାଦା ଏଥିରେ ନାହିଁ । ଏହା ଗ୍ରହଣୀୟ ନୁହେଁ । ତଥାପି ବିଷମ ଦାମ୍ପତ୍ୟର ଯୂପକାଠରେ ନିରୀହା ଝିଅଟିଏ ବଳି ପଡ଼ିବା ମଧ୍ୟ ସ୍ପୃହଣୀୟ ନୁହେଁ । ଏକବିଂଶ ଶତାବ୍ଦୀର ଶିକ୍ଷିତା ଝିଅ, ଓଡ଼ିଆ ଝିଅ ସମୟର ଭୟଙ୍କର ସ୍ଥିତି ପ୍ରତି ଆଖିବୁଜି ନଦେଉ । କେମିତି ସେ ମର୍ଯ୍ୟାଦାର ସହ ବଞ୍ଚିବ, ପିଲାଟିକୁ ମାତୃତ୍ୱ ଦେବ, ସୁକନ୍ୟା ହେବ ଏବଂ ସୁପତ୍ନୀ ହେବ, ଏହା ବିଚାର କରୁ । ଯଦି ସୁପତ୍ନୀ ନହୋଇ ପାରିଲା, ପତି ଯଦି ସୁଧୁରିବାର ମଣିଷ ନହେଲା, ତେବେ ଜୀବନ ଇତି କରିଦେବା କ'ଣ ସର୍ବଶ୍ରେଷ୍ଠ ସମାଧାନ ? ବ୍ୟକ୍ତିଠାରୁ ଜୀବନ ବଡ଼ । ଗୋଟିଏ ଦିଗରେ ନ ମିଳିଲାତ ଅନ୍ୟ ଦିଗରେ ନିଜକୁ ଅଜାଡ଼ି ଦେଇହେବ । ନିଜ ସନ୍ତାନ ପାଇଁ, ଏ ସମାଜରେ କେତେ କେଜାଣି ଅବହେଳିତ ସନ୍ତାନ ଅଛନ୍ତି, ସେମାନଙ୍କ ପାଇଁ । ନିଜ ବାପା-ମା', ବନ୍ଧୁ-ସ୍ୱଜନଙ୍କ ପାଇଁ, ନିଜ ପାଇଁ । 'ଅନେକ ଜନ୍ମ ପୁଣ୍ୟ ଫଳେ/ମନୁଷ୍ୟ ଜନ୍ମ ମହୀତଳେ' ଭାଗବତ ବାଣୀ ଯେ । ଏଡେ ପୁଣ୍ୟବନ୍ତ ଜୀବନକୁ ପାକଳ ନହେଉଣୁ ଛିଣ୍ଡେଇ ଫିଙ୍ଗି ଦେବାର ଅଧିକାର ଝିଅଟିଏ ପାଇଲା କୁଆଡୁ ? ବିପୁଳ ଜୀବନର ପରିପ୍ରେକ୍ଷୀରେ ସେ କାହିଁକି ଜୀବନକୁ ଦେଖିବ ନାହିଁ ? ଦିନକୁ ଦିନ ସ୍ୱାର୍ଥାନ୍ଧତା ବଢୁଛି । ବଢୁଛି ମଧ୍ୟ ଅମଣିଷ ପଣିଆ । ତା'ର ସାମ୍ନା କରିବାକୁ ସେ ନିଜକୁ ପ୍ରସ୍ତୁତ କରୁ । ଜଣେ ମଣିଷ ପାଇଁ ବଞ୍ଚିବା ଓ ତା'ରି ପାଇଁ ମରିଯିବା ଅବଶ୍ୟ ନିବିଡ଼ ପ୍ରେମର ନିଦର୍ଶନ । ମାତ୍ର ପାଷଣ୍ଡ ପ୍ରତି ପ୍ରେମ ନିବେଦନ କରି ନିଜ ଜୀବନର ଇତି ଘଟାଇବା କେତେ ବଡ଼ ମୂର୍ଖତା, ଯା କ'ଣ ଆମର

ଶିକ୍ଷିତା ଝିଅମାନେ ହୃଦୟଙ୍ଗମ କରିବେ ନାହିଁ ? ରାମସୀତା ଆମ ପରମ୍ପରାରେ ଆଦର୍ଶ ଦମ୍ପତି । କିନ୍ତୁ କେତେ କଷ୍ଟ ସହି ନଥିଲେ ସୀତା ? ଅବଶ୍ୟ ରାମଙ୍କର ଥିଲା ଏକ ପତ୍ନୀ ବ୍ରତ । ଆଜି ତାହା ଆଶାକରିବା ମୂର୍ଖତା । ଭାଗ୍ୟବଶତଃ ସୋହାଗୀ ପତିଟିଏ ଲାଭ ହେଲାତ ଭଲ, ନହେଲେ ବି ବଞ୍ଚିବାକୁ ଶପଥ ନେବାକୁ ହେବ ।

ସନ୍ତାନଟିକୁ ମଣିଷ କରିବା ନାରୀର ସର୍ବଶ୍ରେଷ୍ଠ କର୍ତ୍ତବ୍ୟ । ମାନବ ସମାଜ ଆଜିର ଶିକ୍ଷିତ ଝିଅଟିଠାରୁ କେତେ ସମବେଦନା ଆଶା କରୁଛି । ଝିଅଟିଏ ସେ କଥା ଭୁଲିଗଲେ ଚଳିବ ନାହିଁ । ବାର୍ଦ୍ଧକ୍ୟଗ୍ରସ୍ତ ବାପା ମା', ଅସହାୟ ଶିଶୁ ସନ୍ତାନ, ସର୍ବୋପରି ନାନାବିଧ ଅଭାବ ପ୍ରପୀଡ଼ିତ ଏ ମଣିଷ ସମାଜ, ଏ ସମସ୍ତେ ତା'ଠାରୁ ବହୁତ କିଛି ପାଇବାକୁ ଅନାଇଁ ବସିଛନ୍ତି । ଝିଅଟି କ'ଣ ସେମାନଙ୍କ ଆଡ଼କୁ ଥରେ ଚାହିଁବ ନାହିଁ ?



# ନକଲି ପସରା

''ଗପଟିଏ ପରି ଲାଗିବ ଯଦି,
ଭୁଲ୍ ବୁଝିବୁ ନାହିଁ,
ଗପ ଆଉ ସତ ନିହାତି
ପାଖାପାଖି ନୁହଁ କି ?''

ଆଜିର ଦୁନିଆଁରେ କିଏ କାହାକୁକେତେ ଠକି ପାରିଲା, ସେତେ ବାହାଦୁରୀ । ଖାଇବା ଜିନିଷ ଅପମିଶ୍ରିତ ହେଲା, ହଳଦୀଗୁଣ୍ଡରେ କରତଗୁଣ୍ଡ, ଗୋଲମରିଚରେ ଅମୃତଭଣ୍ଡା ମଞ୍ଜି, କଳାଜିରାରେ ନକଲି ଜିରା, ଏମିତି କେତେ କ'ଣ ନକଲି ଜିନିଷର ପ୍ରତିଯୋଗିତା ଚାଲିଚି । ପୁଣି ନକଲି ଜିନିଷକୁ 'ଇମିଟେସନ୍' କହି ତା'ର ଚାହିଦା ବଢ଼ିଚାଲିଛି । ସିଲ୍କ ସୁନା, ହୀରା, ମୁକ୍ତା, ଏସବୁ ଦାମୀ ଜିନିଷର ନକଲିକୁ ଆମେ ଗ୍ରହଣ କରିନେଲୁଣି । ଅସଲି ନହଉ- ଯାଏ ଆସେ ନାହିଁ- କିଛି କାଳ ଅସଲି ଭଳି ଲାଗିବ ତ ! କିନ୍ତୁ ଜୀବନ ସଉଦା କ୍ଷେତ୍ରରେ ନକଲି ଜିନିଷର ଖୁବ୍‌ବେଶୀ କାଟ୍‌ତି ନାହିଁ, ତଥାପି ଧନ ଯଦି ଅଛି, ମଣିଷପଣ ନଥିବା ନକଲି ମଣିଷ ଖୁବ୍ ବେଶୀ ଖରାପ ଲାଗୁନାହିଁ ।

କିନ୍ତୁ ସାଧାରଣତଃ ଝିଅ ବିବାହ କ୍ଷେତ୍ରରେ ବାପାମାଆ ହୁସିଆର ହୁଅନ୍ତି । ଅନ୍ତତଃ କ୍ୱାଇଁଟି ନକଲି ହେଇନଥାଉ, ତା'ର ଆର୍ଥିକ ଯୋଗ୍ୟତା ଓ ମଣିଷପଣିଆ ଠିକ୍ ଠିକ୍ ଥାଉ ତଥାପି ମୂର୍ଖ ବରକୁ ପାଠୁଆ କନ୍ୟା ବିଭା ହେବା ନୂଆକଥା ନୁହେଁ । ମିଛସତ କହି ଭୁଲାଇ ସରଳ, ନିପାରିଲା ମଣିଷକୁ ଠକିଦେବା ଆଜିକାଲି ବିଚିତ୍ର ନୁହେଁ । ଲୋକଙ୍କ ଭିତରୁ ଧର୍ମଭାବ ଯେତେ ଯେତେ କମୁଛି, ନିଜର କର୍ମ ପାଇଁ ସେମାନଙ୍କର ଦାୟ ମଧ ଊଣା ପଡୁଛି । ଅତଏବ ଅପର ଠକି ସ୍ୱାର୍ଥ ହାସଲ କରିବା କିବା କଥାଟାଏ ।

''କ'ଣ ପାଇଁ ଏତେ ଗୌରଚନ୍ଦ୍ରିକା ତୋର ? ଲକ୍ଷ ଲକ୍ଷ ଠକାମି ଭିତରେ କୋଉଠି ଗୋଟାକୁ ଧରି ବସିଚୁ, ଏୟା ତ ?'' ରୁନୁ ପଚାରେ । ତେଣୁ ମଣିଷର ସରଳ ବିଶ୍ୱାସ ହେତୁରୁ କିମ୍ବା ଅଯତ୍ନଶୀଳତା ହେତୁରୁ ଗୋଟିଏ ଗୋଟିଏ ନିରୀହ ଜୀବନ ଯେ କେମିତି ନଷ୍ଟ ହେଇଯାଏ, ତା'ର ଗୋଟିଏ ବିବରଣୀ ଦେବାକୁ ବାହାରିପଡ଼େ ମୁଁ ।

ବହୁଦିନ ପରେ ସୁଜାତାକୁ ଦେଖି ମତେ ଖୁବ୍ ଖୁସି ଲାଗିଲା । ସେ ସୁଦୂର କୋରାପୁଟରେ ବହୁ ବର୍ଷ ରହିଯାଇଥିଲା । ସ୍ୱାମୀ ତା'ର ସୁପରିଂଟେଣ୍ଡିଂ ଇଂଜିନିୟର । ତା'ର ବିବାହ ପରେ ପରେ ଥରେ ସ୍ୱାମୀ ସହ ତାକୁ ଦେଖିଥିଲି । ଆଜି ଦୀର୍ଘ ୨୫ ବର୍ଷ ପରେ ଉଭୟଙ୍କୁ ଦେଖି ମନେହେଲା କ'ଣ ଯେମିତି ଭିତରେ ଭିତରେ ଝାଉଁଳି ପଡ଼ିଛି । ତାଙ୍କ ସହିତ ତାଙ୍କର ଏକମାତ୍ର ଝିଅ ଜୟା । ଅଳ୍ପ ଉଚ୍ଚା ସୁନ୍ଦରୀ ଝିଅଟି ଏବେ ଏମ୍.ଏ. ପଢୁଛି ।

ବିଭାଘର ଭୋଜିର କୋଳାହଳରୁ ଟିକେ ଦୂରେଇଯାଇ ସୁଜାତା ଓ ମୁଁ ଗପସପରେ ମାତିଗଲୁ । ''କ'ଣ ଏମିତି ମଉଳି ପଡ଼ିଚି ଭିତରେ ତୋର, କାହିଁକି ଏତେ ଶୁଖିଲା ଦିଶୁ ମୁହଁରେ ଯେମତି ବୁଢ଼ିଆଣୀ ଜାଲଟାଏ ଢ଼ଙ୍କା ହେଇଚି । ଆଉ ତୁ ତ ଜନ୍ମରୁ ଫାଙ୍ଗୁଳୀ, ଏମିତି କଳା ପଡ଼ିଯାଇଚୁ କାହିଁକି ?''

ଏଥର ଫାଙ୍ଗୁଳୀ ସୁଜାତା ତା'ର ମନର ପୃଷ୍ଠା ଖୋଲିଧରିଲା । ଏକ ଦାରୁଣ ଧକ୍କାରେ ତା'ର ପାରିବାରିକ ଜୀବନ ବିପର୍ଯ୍ୟସ୍ତ । ସ୍ୱାମୀ ତା'ର ସରକାରୀ କାମରେ ପ୍ରାୟ ବ୍ୟସ୍ତ ରହନ୍ତି । ପୂର୍ବରୁ ମୁଁ ଶୁଣିଥାଏ ଯେ, ସେ ପ୍ରଚୁର ମଦ୍ୟପାନ କରନ୍ତି । ତେବେ ମଦ୍ୟପାନ ତ ଆଜିକାଲି ଆଭିଜାତ୍ୟର ଚିହ୍ନ । ଏଥିରେ ଭାଙ୍ଗିପଡ଼ିଲା କ'ଣ ? ନାଇଁ, ଜୟାର ଅବସ୍ଥା ହିଁ ତାଙ୍କ ଜୀବନର ସବୁ ସରସତାକୁ ଜାଳିଦେଇଛି । ''ଜୟା କ'ଣ ବିଭା ହୋଇଥିଲା, ସେ ବିଧବା ?'' କାଚ ଜିନିଷଟିକୁ ତଳେ ପକାଇଦେଲା ପରି ଡରି ଡରି ମୁଁ ପଚାରିଲି ।

ଜୟା +୨ କ୍ଲାସ୍‌ରେ ପଢୁଥାଏ । ଭଲ ଛାତ୍ରୀ ସେ । ଏହି ସମୟରେ ସୁଜାତାର ଭାଉଜର ସାନ ଭଉଣୀ ଜୟା ପାଇଁ ଗୋଟିଏ ବିବାହ ପ୍ରସ୍ତାବ ଆଣିଲେ । ସେ ନିଜେ ଉଚ୍ଚ ଶିକ୍ଷିତା, ଏକ ପ୍ରତିଷ୍ଠିତ ପରିବାର କନ୍ୟା ଓ ବଧୂ । ଅତଏବ ତାଙ୍କ ଦ୍ୱାରା ଆନୀତ ପ୍ରସ୍ତାବ ଖୁବ୍ ଗୌରବାବହ ମନେହେଲା । ତାଙ୍କ ଦୂର ସଂପର୍କୀୟ ଜଣେ ଓକିଲଙ୍କ ପୁଅ ଡେରାଡୁନ୍‌ରେ ଆଲାଏଡ୍ ସର୍ଭିସରେ ଅଛି । ଓକିଲଙ୍କ ପୁଅ ସେ । ଓକିଲଙ୍କର ବିରାଟ ଘର, ପ୍ରଚୁର ସଂପତ୍ତି, ପୁଅଟି ବି ଦେଖିବାକୁ ଭଲ ।

ସୁଜାତାର ପରିବାର ବୋଇଲେ ସେ ଓ ତା'ର ସ୍ୱାମୀ । ଶ୍ୱଶୁର ଓ ବାପା ଦୁହେଁ ସ୍ୱର୍ଗାରୋହଣ କରି ସାରିଥାଆନ୍ତି । ସୁଜାତା ଓ ତା'ର ସ୍ୱାମୀ ନିଃସନ୍ଦେହରେ ଆଗେଇଲେ । କନ୍ୟା ଦେଖା, ନିର୍ବନ୍ଧ ସବୁ ସରିଲା । ଗାଉଁଲୀ ବାପଟିଏ ଆଗକାଳେ ଚୁଡ଼ା ଚାଉଳ ମୁଣ୍ଡେଇ ବରଘର ଖୋଜିଯିବା ପରି ଘଟଣା ତ ନୁହେଁ; ସବୁ ଭଲ । ପୁଅର ବଡ଼ ଚାକିରି, ଗୋଟିଏ ପୁଅ- ଆଉ କ'ଣ ଦରକାର ? ସେମାନେ ବୋହୂକୁ ପୁଣି ପଢ଼ାଇବେ । ବାପ ମା' ମହା ଖୁସିରେ ଝିଅର ବିଭାଘର କରିଦେଲେ । ଗୋଟିଏ ଝିଅ ହେତୁ ପ୍ରଚୁର ଦାନ ଯୌତୁକ ବି ଦେଲେ । ମାତ୍ର ମାସଟିଏ ଭିତରେ ଏଇ ଆଡମ୍ବରର ବେଲୁନ୍‌ଟି ଫାଟିଗଲା । ଝିଅ ସୁଯୋଗ ଉଣ୍ଡି ବାପା ମାଆଙ୍କୁ ଫୋନ୍ କଲା, ''ଶୀଘ୍ର ମୋତେ ଏଠାରୁ ନେଇଯାଅ ।''

ବରଟି ଡେରାଡୁନ୍‌ରେ ଥିଲା ସତ, ମାତ୍ର ବି.ଏ.ଫେଲ୍ । ସେଠାରେ କୋଉ କମ୍ପାନୀରେ ଥିଲା, ମନ ମାନିଲା ନାହିଁ, ଚାକିରି ଛାଡ଼ିଦେଲା । କେଜାଣି ଅବା ସେ ଆଦୌ କିଛି କରୁନଥିଲା । ବ୍ୟବହାର ମଧ୍ୟ ତଦ୍ରୂପ । ଶାଶୂ ଶ୍ୱଶୁର ବୋହୂକୁ ଜଗି ବସିଛନ୍ତି । ସେ କିମିତି ବାପଘର ନଯିବ, କାହା ସାମ୍ନାରେ ପାଟି ନ ଖୋଲିବ । କ୍ରମଶଃ ଉଭୟ ପରିବାରର ତିକ୍ତତା ବଢ଼ିଲା । ସୁଜାତା ଅନୁନୟକରି ଝିଅକୁ ଘରକୁ ଆଣିଲା, କିନ୍ତୁ ଆଉ ପଠାଇଲା ନାହିଁ । ଅନେକ ଗଣ୍ଡଗୋଳ ମଧ୍ୟ ହେଲା । ମାତ୍ର ସୁଜାତା ଝିଅକୁ ପାଠ ପଢ଼ାଇଲା-ଝିଅ ବରର ମୁହଁ ଦେଖିବାକୁ ନାରାଜ । ଯେଉଁ ସଂପର୍କୀୟ ଏହି ପ୍ରସ୍ତାବ ଦେଇଥିଲେ, ସେ ଦୁଃଖ କଲେ । କହିଲେ, ''ମୁଁ କ'ଣ ଜାଣିଛି ସେମାନେ ଯାହା କହିଲେ ମୁଁ ସତ ଭାବିଥିଲି । ଆପଣମାନେ ସିନା ପୁଅର ଯୋଗ୍ୟତା ଓ ଚାକିରି ବିଷୟରେ ଖୋଜଖବର ନେଇ ଥାଆନ୍ତେ ।'' ଏତିକିରେ ହୁଏତ ସେ ଦାୟମୁକ୍ତ ହୋଇଗଲେ । ମାତ୍ର ଆପଣାର ଅବିମୃଶ୍ୟକାରିତା ହେତୁ ଜୟାର ବାପ ମାଆ ସାରା ଜୀବନ ଆତ୍ମଗ୍ଲାନି ଭିତରେ ରହିବେ । ଆମ ଶିକ୍ଷିତ ଅଭିଜାତ ସମାଜର ଏ ଅବସ୍ଥା ବଡ଼ ବିପଜ୍ଜନକ ।

ଏବେ ଦୁଇ ବର୍ଷ ତଳେ ମୋର ବାନ୍ଧବୀର ଝିଅ ମୃତ୍ୟୁବରଣ କଲା- ଅତି ଅଳ୍ପ ବୟସରେ । ଉଚ୍ଚଶିକ୍ଷିତ ପରିବାରବର୍ଗ ଆଇ.ଏ.ଏସ୍. ପୁଅକୁ ଝିଅର ବାପା ମାଆ ପ୍ରଚୁର ଦାନ ଯୌତୁକ ଦେଇ ବିଭା କରିଥିଲେ । ଝିଅଟି ବି.ଏ. ପଢୁଥିଲା ।

ସୁନ୍ଦରୀ ବି ଥିଲା, ହେଲେ ଅଳ୍ପ ଦିନ ପରେ ବାପ ମାଆ ମୁଣ୍ଡ କୋଡ଼ିଲେ- ସାନ ନଣନ୍ଦ ଦୁହେଁ ଝିଅକୁ ଧିକ୍‌କାରୁଛନ୍ତି- ସ୍ୱାମୀ ଅଧିକ ଯୌତୁକ ପାଇଁ କହୁଛନ୍ତି- ଯେଉଁ ଘରଟି ତାଙ୍କୁ ଯୌତୁକ ସ୍ୱରୂପ ମିଳିଛି, ତା'ଠାରୁ ଏକ ବଡ଼ ଓ ସୁନ୍ଦର ଘରେ ଝିଅର ବାପ ରହନ୍ତି । ସେ ଘରଟି ଝିଅକୁ କାହିଁକି ଦେଲେ ନାହିଁ ? ଶାଶୂ ଶ୍ୱଶୁର ପୁଅକୁ ଉତ୍ସାହିତ କରୁଛନ୍ତି । ଏପରି ଅବସ୍ଥାରେ ୪/୫ ବର୍ଷ ଭିତରେ ଝିଅଟି ଦୁଇଟି ଝିଅଙ୍କୁ ଜନ୍ମ ଦେଲା । ମାତ୍ର ୨୫ ବର୍ଷ ବୟସରେ ୨ଟି ଶିଶୁକନ୍ୟାର ଜନନୀ, ସେହି ଅଭାଗିନୀ ଝିଅଟି ମୃତ୍ୟୁବରଣ କଲା । ଅତ୍ୟଧିକ ମାନସିକ ଚାପ ଓ ଶାରୀରିକ ଅସୁସ୍ଥତା ହେତୁ ବିଚରା ଝିଅଟି ବଞ୍ଚିଲା ନାହିଁ ।

ନିଜ ପ୍ରତି ହେଉଥିବା ଅତ୍ୟାଚାରକୁ ଝିଅଟି କାହାକୁ କହିବ ? ପ୍ରତିକାର ବା କରିବ କ'ଣ ? ସ୍ୱାମୀ ସନ୍ତାନକୁ ଛାଡ଼ି ଦେଇ ଆସିବ କେମିତି ? ବାପା ମା' ଝିଅର ସବୁ ଦୁଃଖ ଶୁଣି ମଧ୍ୟ ପ୍ରଘଟ ନକରି ଅପେକ୍ଷା କରୁଥିଲେ । କାଳେ ଏ ମନ୍ଦ ସମୟ ଅପସରିଯିବ । ଭଲବେଳ ଆସିବ । ଜ୍ୱାଇଁ ବୁଝିବ ଓ ଝିଅକୁ ଆଦର କରି ରଖିବ । ନଣନ୍ଦ ଦୁହେଁ ତ ଦିନେ ପରଘରୀ ହେବେ । ମାତ୍ର ଝିଅଟି ଏସବୁ ପାଇଁ ଅପେକ୍ଷା କଲା ନାହିଁ । ଅଥଚ ଧନୀଘରର ଝିଅ ସେ । ବରକୁ ଛାଡ଼ି ଆସିଥିଲେ ବି ଜୀବନଟା ତା'ର ଅଭାବମୟ ହୋଇନଥାନ୍ତା । ମାତ୍ର ପ୍ରାଣଠାରୁ ସଂଭ୍ରମ ଯେ ଅଧିକ ମୂଲ୍ୟବାନ ।

ଏହି ଘଟଣା ଘଟିଲାବେଳେ ଆମ ସହର ଉଠୁଥିଲା ପଡୁଥିଲା । କାହିଁକି କେଜାଣି ମୋର ବାନ୍ଧବୀମାନେ ନିଜ ଝିଅମାନଙ୍କ ଜ୍ୱାଳାର କାହାଣୀ ମତେ ଶୁଣାନ୍ତି । ନିଜେ ସହନ୍ତି ଓ

ଝିଅଙ୍କୁ ସହିଯିବାକୁ ଉପଦେଶ ଦିଅନ୍ତି । ବୋଧହୁଏ ମୋ ମନୋବୃତ୍ତି ବି ଉଣା ଅଧିକେ ସେଇଆ ।

ସମାଜ ଓ ତା'ର ଚଳଣିକୁ ରୋକ୍‌ଠୋକ୍ ଭାଙ୍ଗିଦେବାର ଦମ୍ଭ ଏଯାଏ ଆମର ଆସିନାହିଁ । ଏ ଯୁଗରେ ବାହାରକୁ ଦିଶୁଥିବା ସୁଖୀ ଦାମ୍ପତ୍ୟ ଜୀବନ ଭିତରେ କେତେ ହୃଦୟବିଦାରକ କରୁଣ କାହାଣୀ ଯେ ରହିଛି, ଆଉ କିଏ ନ ଜାଣୁ, ମୁଁ ବେଶ୍ ଜାଣେ । ତଥାପି ଏଇ ପରିପ୍ରେକ୍ଷୀରେ ମୋର ମନେପଡ଼େ ମୋ ପିଲାଦିନର ସାଙ୍ଗ ଇଚ୍ଛାବତୀ କଥା, ଏଇଲେ ସେ ନାତିନାତୁଣୀ ଧରି ସଂସାର କରୁଥିବ । ମାତ୍ର ଆଜିକୁ ୩୫ ବର୍ଷ ତଳେ ମାଇନର ସ୍କୁଲରେ ପଢ଼ିଲାବେଳେ ତା'ର ମୋର ତ ଏମିତି ଯୋଡ଼ି ହୋଇଥିଲୁ ଯେ, ପାଣି ଗଳୁନଥିଲା । ସାଙ୍ଗ ହେଇ ବାଳିକା ସ୍କୁଲରେ ପଢୁଥାଉ । ସେ ହରିଜନ ଝିଅ । ମାତ୍ର ହରିଜନଙ୍କ ଭିତରେ ତା'ବାପା ମୁଖିଆ, ପୁରୋହିତ । ତାଙ୍କର ପୁଣି ସେ ଏକୋଇର ବଳା ବିଶିକେଶନ । ତା'ବାପା ମୋ ବୋଉକୁ ଧରମ ଭଉଣୀ କରିଥାନ୍ତି । ତେଣୁ ମୁଁ ତା'ବାପାଙ୍କୁ ମାମୁଁ ଡାକେ । ହରିଜନ ସାହିରେ ସବୁ ମୂର୍ଖ ମେଳରେ ଇଚ୍ଛାବତୀ ମାଇନର ପଢୁଥାଏ । ତାଙ୍କ ଘରର ଚାଲିଚଳଣ ଟିକେ ଅଲଗା । ସେ ପୁଣି ଗେଲବସର ।

ଆମେ ଦୁହେଁ ୭ମ ଶ୍ରେଣୀରେ ପଢୁଥାଉ । ସେତେବେଳକୁ ବର୍ଷେ ହେଲା ଇଚ୍ଛାର ବାପା ନିଜ ଜାତିର ୧୬/୧୭ ବର୍ଷର ଗୋଟିଏ କିଶୋରକୁ ଘରେ ରଖି ଥାଆନ୍ତି । ଉଦ୍ଦେଶ୍ୟ ଘରଜ୍ୱାଇଁ କରିବେ । ଗରିବ ଘର ପିଲା, ତାକୁ ଘରେ ରଖି ଶିଖାଇ ବୁଝାଇ ନିଜ ଧନ୍ଦାରେ ପୂରାଇବେ । ନାଁ ତା'ର ପରମା । ଅଥଚ ପରମାର ଛାଇ ପଡ଼ିଲେ ଇଚ୍ଛାର ନାହି ଡିଏଁ । ନାଆଁ ଶୁଣିଲେ ଚିଡ଼େ । ଦେଖିବ, ତାକୁ କିଏ ବାହାହବ- ଯେ ହେଲା ଇଚ୍ଛାର ପଣ । କିନ୍ତୁ ୭ମ ଶ୍ରେଣୀ ବେଳକୁ ତା'ର ଅନିଚ୍ଛାକୁ ଭ୍ରୂକ୍ଷେପ ନକରି ତା'ବାପା ବିଭାଘର ତିଥି ସ୍ଥିର କଲେ । ବିଭାଘର ଦିନ ମୋ ବୋଉ ମୋ ହାତରେ ଇଚ୍ଛା ପାଇଁ ଦୁଇ ପଟ ରୂପାଖଡୁ ଦେଇ ପଠାଇଲା । ମୁଁ ଗଲାବେଳକୁ ଇଚ୍ଛା ତାଙ୍କ ବାଡ଼ିପଟ କୂଅ ଚଉତରା ମୂଳେ ବଉଳପାଟ ପିନ୍ଧି ବସିଛି । ଯଦିଓ କାନ୍ଦୁନାହିଁ, ତେବେ ମୁହଁଟା ଏଡ଼େ ବଡ଼ ହାଣ୍ଡି କରିଚି । ମୋ ହାତରୁ ଉପହାରଟି ନେଲା । କିନ୍ତୁ ପିନ୍ଧିଲା ନାହିଁ । ବାଜା ବାଜୁଥାଏ, ତାଙ୍କ ରୀତିରେ ବିଭାଘର ଚାଲିଥାଏ । ମାଇଁ ମତେ ବାଧକରି ମିଠେଇ ଖୁଆଇଲେ । ସେତେବେଳେ, ଆମର ବ୍ରାହ୍ମଣ ଘର ହେଲେ ବି କେବେ କଦଳୀ କି ଦୁଧ ଗିନାଏ ତାଙ୍କ ଘରେ ଖାଇବାକୁ ମୋତେ ବାରଣ ନ ଥିଲା । ଇଚ୍ଛାର ପାଠ ସେଇଠି ବନ୍ଦ ହେଲା । ସେ ଆଉ ସ୍କୁଲ ଗଲା ନାହିଁ କି ତା' ସହିତ ମୋର ଆଉ ପ୍ରତିଦିନ ଦେଖା ହୋଇ ପାରିଲା ନାହିଁ ।

ଶୁଣିଲି ଇଚ୍ଛାର ତା'ବର ସହିତ ଗୋଟିଏ ଦିନ ବି ପଡ଼ିଲା ନାହିଁ । ଇଚ୍ଛା ବର ମୁହଁକୁ ଚାହିଁଲା ନାହିଁ । ପରମା ବିଚରା ୭ମ ଶ୍ରେଣୀ ଯାଏ ପଢ଼ିଥିଲା । ଇଚ୍ଛା-୭ମ ଶ୍ରେଣୀ ଯାଏ ପଢ଼ିଚି । ଏମିତି ବର୍ଷଟାଏ ଛି ଛାକର ଭିତରେ, ପରମା ପଳାଇଲା, ଇଚ୍ଛା ଆଶ୍ୱସ୍ତ ହେଲା । ଏଣେ ଗାଁରେ ହରିଜନ ଘରେ ୭ମ ପଢ଼ିଥିବା ଝିଅ ବାପା ମା' ପାଖରେ କେତେଦିନ

ରହିବ ? ନିଜ ବାପାଙ୍କ ପ୍ରଶ୍ନରେ ଇଚ୍ଛା କହିଲା, ''ନିହାତି ମାଟ୍ରିକ୍ ପାସ୍, ଚାକିରି ବାଲା ବିଭାହେବି, ନହେଲେ ନାହିଁ।''

ମୁଁ ଯା ଭିତରେ ହାଇସ୍କୁଲ ଶେଷ କରି କଲେଜ ଆସିଲି। ଗାଁ ଛାଡ଼ି ହଷ୍ଟେଲରେ କଟକରେ ରହିଲି। ଶୁଣିଲି ପାଖ ଗାଁରେ ଜଣେ ପ୍ରାଇମେରୀ ସ୍କୁଲ ଶିକ୍ଷକଙ୍କୁ ଇଚ୍ଛା ବିଭା ହେଇଚି। ସେ ଶିକ୍ଷକଟିର ପ୍ରଥମ ସ୍ତ୍ରୀ ହଇଜାରେ ମରିଥିଲା- ଅଳ୍ପ ବୟସ ନିଃସନ୍ତାନ ସେ ଥିଲା। ତାକୁ ବିଭାହେଇ ଇଚ୍ଛା ଭଲରେ ଘର ଦ୍ୱାର କରି ରହିଲା।

ଇଚ୍ଛାର ଧୈର୍ଯ୍ୟ ଓ ସାହସ ତଥା ଆତ୍ମବିଶ୍ୱାସ ମତେ ଖୁବ୍ ନିଆରା ଲାଗିଥିଲା। ସେ ସମାଜର ଅନୁମୋଦନ ବାହାରେ ଏସବୁ କରିପାରିଲା। ତାଙ୍କ ଜାତିରେ ସେପରି ଚଳିଲା। ଆମ ସମାଜର କଟକଣା ବହୁତ। ଲୋକନିନ୍ଦାକୁ ଡର। ଆମେ ନିଆଁରେ ପୋଡ଼ି ମରିବୁ ପଛେ ଜଳନ୍ତା ଲୁଗାଟା କାଢ଼ି ଫିଙ୍ଗିଦେଇ ପାରିବୁ ନାହିଁ। ଏଇଟା ଆମର ଆଭିଜାତ୍ୟ। ତଥାପି ଅଳ୍ପ ବୟସର ଝିଅଙ୍କୁ, ଆତ୍ମବିଶ୍ୱାସ ନଥିବା ଝିଅଙ୍କୁ ବେଳେବେଳେ ବହୁତ ଭୋଗିବାକୁ ପଡ଼େ। ଏଥିରେ ବାପ ମା'ମାନଙ୍କ ଭୂମିକା ମଧ ରହିଛି। ପୁଣି ମାଆମାନଙ୍କ ଭୂମିକା ଗୁରୁତର। ଏ ସଭ୍ୟ ଯୁଗରେ ଝିଅଟିଏ ପରିସ୍ଥିତିର ଯୂପକାଠରେ ବଳି ପଡ଼ିବା ଭଳି ଲଜ୍ଜାଜନକ କଥା କିଛି ନାହିଁ। ରୁଚି ଅନୁରୂପ ବିବାହ ନହେଲା ତ ଛାଡ଼ି ପଳେଇ ଆସିବାକୁ କେହି କହୁନାହିଁ। କାରଣ ଧୈର୍ଯ୍ୟ ସହନଶୀଳତା ଓ ଆତ୍ମତ୍ୟାଗ ଉପରେ ହିଁ ବିବାହ ଅନୁଷ୍ଠାନଟି ପ୍ରତିଷ୍ଠିତ। ଯଥାସଂଭବ ଏହାକୁ ଗ୍ରହଣ କରିବାକୁ ହେବ; ସ୍ୱାମୀ ଓ ସ୍ତ୍ରୀ ଉଭୟେ ଏହି ଅନୁଷ୍ଠାନର ମର୍ଯ୍ୟାଦା ରକ୍ଷା କରିବା କଥା। ଯଦି ସାଧମତେ ଚେଷ୍ଟା କରିବା ସତ୍ତ୍ୱେ ଏହା ଭାଙ୍ଗିପଡ଼ିଲା, ତେବେ ଏଥିରେ ଲଜ୍ଜିତ ହେବାର କିଛି ନାହିଁ। ଜୀବନ ଖୁବ୍ ଦୁର୍ଲଭ ଓ ବିଚିତ୍ର। ତାକୁ ଅସ୍ୱୀକାର କରାନଯାଉ କୌଣସିମତେ।

ସୁଜାତାର ଝିଅ ପାଠ ପଢୁ। ଚାକିରି କରୁ। ହୁଏତ କାଲି ସକାଳେ ମନୋମତ କୌଣସି ଯୁବକକୁ ବିବାହ କରୁ। ନ ହେଲେ ବା ଆତ୍ମନିର୍ଭରଶୀଳ ହୋଇ ବଞ୍ଚିରହୁ। ତା'ବାପା ମା'ଙ୍କ ମୁହଁରେ ଆଶା ଓ ହସ ଫୁଟିଉଠୁ। ରୁନୁ ଓ ମୁଁ ଏଇଆ ମନାସୁଥିଲୁ।

❑❑❑

# ଦସ୍ୟୁରତ୍ନାକରର ପତ୍ନୀପ୍ରତି....

''କୁହ, ତୁମେ ମୋର ଦୁଃଖ ସୁଖର ''ଅଂଶୀଦାର''। ମୋ ପାପ ପୁଣ୍ୟର ସମଭାଗୀ। କୁହ, ମୁଁ ଯେ ପାପ କରିଛି ? ପ୍ରତିଦିନ ପଥିକଙ୍କୁ ହତ୍ୟାକରି ଯେଉଁ ଧନ ଆଣେ, ତୁମକୁ ତ ଦିଏ। ତାହେଲେ ତା ଯଦି ପାପ, ତୁମେ କ'ଣ ପାପରୁ ଭାଗ ନବନାହିଁ, ସବୁ ପାପ କ'ଣ ମୋରି ମୁଣ୍ଡରେ ଲଦାହେବ ?'' ଝାଳ ସରସର ବ୍ୟଗ୍ର ରତ୍ନାକର ସେଦିନ ନିଶାର୍ଦ୍ଧରେ ପ୍ରଶ୍ନ କରିଥିବ, ତା'ର ପତ୍ନୀକୁ। ଅଧା ଅଧା ନିଦ ଖସି ପଡ଼ିଥିବ ପତ୍ନୀର ଆଖିରୁ। 'ଯେ କ'ଣ, ଆଏଁ' ? ପାପ ? ମୁଁ କାହିଁକି ପାପ ମୁଣ୍ଡାଇବିରେ ବାବା ? ତୁମ ହାତ ଧରିଥିଲି, ତୁମେ ମୋତେ ପୋଷନ୍ତ ନାହିଁ ? ତା'ପରେ ବି ତୁମ ବାପା ମାଆ-ସେମାନଙ୍କ ପିଛାତ ତୁମ ଧନରତ୍ନର ଅଧାରୁ ବେଶି ଖର୍ଚ୍ଚ ହେଉଛି।'' ''ତୁମର ଏ ଆୟ ଅଳଙ୍କାର, ପାଟ ପୀତାମ୍ବରୀ, ଏ ସବୁ ତୁମ ଖୁସି ପାଇଁ ତ ! ମୁଁ ଲୁଟ୍‌ତରାଜ, ହତ୍ୟାସବୁ କରେ, ଆଖି ବୁଜିଦିଏ, ତୁମକୁ ରାଣୀ କରିବି ବୋଲି। ତା'ପରେ ବି ତୁମ ସଙ୍ଗୀତ ଗାୟନର ଉନ୍ନତି ନିମିତ୍ତ ମୁଁ ସୁବର୍ଣ୍ଣ ଓ ହୀରକରେ ତିଆରି କରିଦେଇଛି ବୀଣା, ବଂଶୀ । ପୁଣି କେତେ ଗାୟକ ଓ ଗୁରୁମାନଙ୍କୁ ନିମନ୍ତ୍ରଣ କରି ଘରେ ଆପ୍ୟାୟିତ କରିଛି। ସୁବର୍ଣ୍ଣ ଖଚିତ ରେଶମ ବସ୍ତ୍ର ଉପହାର ଦେଇଛି- ସବୁ ତୁମର ସୁଖ, ଆନନ୍ଦ ଓ ଯଶ ପାଇଁ ତ ! ମୋର ଏହି ବ୍ୟାକୁଳ ଆଗ୍ରହକୁ ତୁମେ ବୁଝିନ ନେବେ ?''

''ମୋ ସଙ୍ଗୀତ ବିଷୟ ପଛକୁ ଥାଉ। ତୁମେ ସଙ୍ଗୀତ ପ୍ରିୟ। ତେଣୁ ଏସବୁ ବ୍ୟୟଭାର ସ୍ୱେଚ୍ଛାକୃତ ଭାବେ ବହନ କରିଛ। ମାତ୍ର ପାପ ବୋଧରୁ ତ୍ରାହି ପାଇବା କଥା ଯଦି, ତୁମ ବାପ ମା'ଙ୍କୁ କହନ ସେମାନେ ତ୍ରାହି କରିବେ। ସେମାନେ ତୁମ ପ୍ରାଚୁର୍ଯ୍ୟର ଅଂଶୀଦାର। ମୁଁ କ'ଣ କରିବି ? ୨୦ ଖଣ୍ଡ ପାଟ 'ଶାଢ଼ୀ ନ ଥାଇ ଦୁଇଟା ଶାଢ଼ୀ ଥିଲେ, ମୁଁ କ'ଣ ତୁମକୁ ପରିତ୍ୟାଗ କରି ଅନ୍ୟତ୍ର ପଳାଇଥାନ୍ତି ?''

ଅନ୍ୟମନସ୍କ ରତ୍ନାକର ଚିଡ଼ି ଚିଡ଼ି ହୋଇ କହିଚାଲେ, ''ବାପ ମାଆଙ୍କୁ ତ ସେ କଥା ପଚାରିଥିଲି - ସେ ଦୁହେଁ କହିଲେ, ଆମେ ତ ବୁଢ଼ା ବୁଢ଼ୀ, ତୋତେ ବଢ଼େଇ କୁଢ଼େଇ ମଣିଷ କରିଥିଲୁ, ତୁ ଏଇଲେ ଆମକୁ ପୋଷିପାଳି ରଖିବୁ। ମାଛ ଭାତ ଖୁଆ କି ଶାଗ ଭାତ ଖୁଆ, ତୋ'ଧର୍ମ। ତୁ ଯେ ଲୋକଙ୍କ ତଣ୍ଟି କାଟୁଛ, ଆମେ କେବେ ତୋତେ ସେଥିପାଇଁ ବାଧ କରିଚୁ ? ଯେ ବୟସରେ ଆଉ ପାପଭାଗୀ ହେବା କଥା କହନାରେ

ପୁଅ ।'' ରତ୍ନାକରର ଆଖି ସାମ୍ନାରେ ଭାସି ଉଠିଥିଲା ସେଦିନ ପ୍ରଭାତ କାଳରେ ନିହତ ହୋଇଥିବା ବୃଦ୍ଧ ସୌଦାଗରଙ୍କ ମୁହଁଟି ! ୨/୩ଜଣ ଯୁବକ ପାର୍ଶ୍ୱଚରଙ୍କ ସହ ଶିବିକା ଆରୋହଣ କରି ସେ ଆସୁଥାଆନ୍ତି । ବନପଥରେ ଗଛମାନଙ୍କ ଡାଳ କାଟି ସୂର୍ଯ୍ୟାଲୋକ ବିଛାଡ଼ି ପଡୁଥାଏ ଭୂଇଁରେ । ସୌଦାରଗରଙ୍କ ଗଳାରେ ମଣିରତ୍ନର ମାଳଟି ଝଲମଲ କରୁଥାଏ । ରତ୍ନାକର ଓ ତାର ଦଳ ଝାମ୍ପି ପଡ଼ିଲେ । ଶିବିକା ବାହକ ଗଣ ପଳାୟନ କଲେ । ବୃଦ୍ଧଙ୍କୁ ନିହତ କରିବାର ଦାୟିତ୍ୱ ଥିଲା ରତ୍ନାକରର । ମାଡ଼ିବସି, କାବୁ କରି ବେକରେ ଫାଶି ଲଗାଇବା ଆଗରୁ ଅନୁନୟ ଦୃଷ୍ଟିରେ ଯୋଡ଼ ହସ୍ତରେ ସେ କାକୁତି କରୁଥାନ୍ତି-''ପୁଅମୋର, ବାପଟା ମୋର, ନେଇ ଯା', ସବୁ ନେଇ ଯା, ହେଲେ ହତ୍ୟାକର ନାହିଁ,'' ରତ୍ନାକର କେବଳ ଆଖବ କାନ ବୁଜି ଦେଇ ନ ଥିଲା- ହୃଦୟର ଦ୍ୱାରଟାକୁ ବି ନିଶ୍ଛନ୍ଦ୍ର ବନ୍ଦ କରିଦେଇ ଥିଲା । ସେତେବେଳକୁ- ବର୍ତ୍ତମାନ ଭାବାନ୍ତର ଆସୁଛି ରତ୍ନାକରର ।

କିନ୍ତୁ ସନ୍ଧ୍ୟାର ଅବ୍ୟବହିତ ପୂର୍ବରୁ କିଏ ସେ ସନ୍ନ୍ୟାସୀ, ଜଟାଭାର, ଗେରୁବସ୍ତ୍ର, ରୁଦ୍ରାକ୍ଷ, କମଣ୍ଡଳୁ ଧରି ଛାଇ ଅନ୍ଧାର ଭିତରେ 'ରାମନାମ' ଜପି ଆସୁଥିଲେ । ମୁଁ ଥିଲି ଏକୁଟିଆ-ଦଳର ସମସ୍ତଙ୍କୁ ପୂର୍ବାହ୍ନରେ, ଲୁଟିଥିବା ଧନରୁ ଭାଗଦେଇ ବିଦାୟ ଦେଇଥିଲି । ଜାଣିବାକୁ ଚାହିଁଲି ଯେ ପ୍ରକୃତରେ ସାଧୁ, ନା ଧନରତ୍ନ ଅଣ୍ଟାରେ ବାନ୍ଧି, ଲୁଚାଇ ମୋ ଆଖିରେ ଧୂଳି ଦେଇ ଖସିଯିବାର ପରାକ୍ରମ କରୁଛି ଲୋକଟା ! ଯେ ଜଙ୍ଗଲ ବିପଜ୍ଜନକ ବୋଲି ଜଣା ଶୁଣା । ଦସ୍ୟୁ ରତ୍ନାକରର ପ୍ରଭାବ ବି ଅପ୍ରତିହତ । ଯେ ଲୋକଟା ନିଶ୍ଚୟ ଜାଣେ ସେକଥା- ମୋତେ ଭୁଲାଇବାକୁ ଯେ ବେଶ ଧରିଛି । ମୁଁ ନିକଟବର୍ତ୍ତୀ ହେଲି । ଅର୍ଦ୍ଧ ନିମୀଳିତ ନେତ୍ରରେ ସେ ଚାଲିଥାନ୍ତି । ମୁଁ ହଠାତ୍ ତାଙ୍କ ଗଳା ଆକର୍ଷଣ କଲି । ସେ ତଥାପି 'ରାମ ରାମ' କହୁଥାନ୍ତି । ନିରେଖି ଦେଖିଲି- ଲୋକଟା ସତରେ ଦରିଦ୍ର- କିଛି ବସ୍ତ୍ର ବା ଅଳଙ୍କାର ନାହିଁ । ମୁହଁ ଫେରାଇଲି । ''ବାପ, ବତ୍ସ ରତ୍ନାକର'' ପୁଣି ସେଇ ସମ୍ବୋଧନ । ''ପୁଣି ବତ୍ସ, ବାପ'' ଇସ୍ ! କେମିତି କୋଉଠି ତରଳିଗଲା କଅଣ- ବୁଝି ପାରିଲି ନାହିଁ । ଏତେ ଅବିଚଳିତ, କରୁଣାକ୍ତ ସ୍ୱର କାହାର ହୋଇପାରେ ? ଫେରି ଚାହିଁଲି- ''ବତ୍ସ, ନରହତ୍ୟା ରୂପକ ମହାପାତକ କରନାହିଁ ।'' ଏତେ ସାହସ, ମୋତେ ପୁଣି ଉପଦେଶ ! ''ବତ୍ସ, ଅତ୍ୟଧିକ ଧନରତ୍ନର ଆବଶ୍ୟକତା କେଉଁଠି ? ମୋର ବିଶ୍ୱାସ, ତୁମର ଦୃଢ଼ ସୁଠାମ ଶରୀର ନିଶ୍ଚୟ ସମର୍ଥ- ଯେ କୌଣସି ସଦ୍ ଉପାୟରେ ଜୀବିକା ନିର୍ବାହ କର ।'' କ'ଣ ଯେମିତି ଧସି ପଡୁଚି, ଖୋଳପା ଖସି ପଡୁଚି ଟିକି ଟିକି ହୋଇ, ହାବୁକା ହାବୁକା ଉଠି ଆସୁଚି, ଆକୁଳତା । ''ମୁଁ କ'ଣ କରିବି, ମହାପ୍ରଭୁ, କେମିତି ବଞ୍ଚିବି ?'' ଅପ୍ରସ୍ତୁତି ସତ୍ତ୍ୱେ ରତ୍ନାକରର ପାଟିରୁ ବାହାରି ପଡ଼ିଲା ଯେ ନିବେଦନ । ରତ୍ନାକର, ଅଭିଭୂତ ।

''ବତ୍ସ, ରାମନାମ ଜପ କର ।'' ସାଧୁଜଣକ କ୍ରମଶଃ ଅରଣ୍ୟର ଅନ୍ଧାରରେ ମିଶିଗଲେ । ଯେ ସାରା ଅରଣ୍ୟ ଯେମିତି ଏଠି ନାହିଁ, ଚାରି ଦିଗରେ ଶୂନ୍ୟତା, ଉଜ୍ଜ୍ୱଳତା । ଖୁବ୍ ବିଳମ୍ବରେ ସେ ଦିନ ରତ୍ନାକର ଘରକୁ ଫେରିଲେ- ମନେ ମନେ ଉଚ୍ଚାରଣ କଲେ 'ରାମ', 'ରାମ', 'ରାମ'.......

ପତ୍ନୀ ସହ ବାକ୍ୟାଳାପ ପରେ ହତୋତ୍ସାହ ରତ୍ନାକର ନିଦ୍ରିତ ଶିଶୁ ପୁତ୍ରକୁ ହଲାଇ ହଲାଇ ପ୍ରଶ୍ନ କଲେ, ‘‘ପୁଅ, ଏଇ ଯେ ସୁବର୍ଣ୍ଣ କଙ୍କଣ ତୁ ପରିଧାନ କରିଛୁ, ସୁନା କଣ୍ଢେଇ ତୋର ଖେଳଣା, ଦେଖ ବାପ ସୁବର୍ଣ୍ଣ ରଥରେ ବସି ଭ୍ରମଣ କରୁ ଆଜି ନ ହେଲେ ବି ବଡ଼ ହେଲେ, ତୁ ମୋର ପାପ ଭାର ଲାଘବ କରିବୁ ନାହିଁ ? ତୋ ପାଇଁ ଯେ କୋଠରୀ ଚଟାଣରେ ହୀରା ଖଞ୍ଜି ଦେଇଛି ।’’ ପତ୍ନୀ ନାସିକା କୁଞ୍ଚନ କଲେ- ‘‘ତୁମେ ପାଗଳ ନାଁ କ’ଣ ? ଛୁଆଟା କ’ଣ ସେ ଜାଣେ ଯେ, କାଳତୁଣ୍ଡରୁ ପାପ ପୁଣ୍ୟ କଥା ବାହାରିଲା ! ପୁଅ ପରା ତୁମର, ତାକୁ ସଂସାରକୁ ଆଣିଛ, ତୁମେ ଚଳେଇବ ନାହିଁ ? ବରଂ ପୁଣ୍ୟରୁ ତାକୁ ଭାଗଦିଅ ।

ତୁନୁ ମୋର ଏଇ ଲେଖାଟି ପଢୁ ପଢୁ ଚମକି ପଡ଼ିଲା, ସତେତ : ରତ୍ନାକର ବିଚରା କରିବ କ’ଣ ? ପାପଭାରାରେ ରସାତଳକୁ ଚାଲିଯିବ । ଯାହାଙ୍କ ସୁଖ ଆନନ୍ଦ, ପ୍ରାଚୁର୍ଯ୍ୟ ପାଇଁ ଦିନ ଦିନ ରାତି ରାତି ନିରପରାଧ ଲୋକଙ୍କ ଗଳା କାଟିଥିଲା, ସେମାନେ ତ କେହି ତା’ ସପକ୍ଷରେ ଠିଆ ହେଲେ ନାହିଁ । ସେ କେତେ ଏକୁଟିଆ ସତରେ !

ପାଠକେ, ରତ୍ନାକର ଭିତରୁ ଉଠିଆସିଲେ ରସରଷି ବାଲ୍ମୀକି- ଏ କିମ୍ବଦନ୍ତୀ କିଏ ନ ଜାଣେ ? ଯୁଗ ଯୁଗର ତପସ୍ୟା ସହ ‘ରାମନାମ’ ଜପରୁ ତା’ର ସବୁ ଅପରାଧର କ୍ଷାଳନ ହୋଇଗଲା । ସେ ଭିନ୍ନ କଥା । ତପସ୍ୟା ତ ଖୁବ୍ କଷ୍ଟ ସାପେକ୍ଷ । କେତେଜଣ ତପସ୍ୟାର କଠୋରତାକୁ ଆଚରିପାରିବେ ? ହେଲେ, ଦସ୍ୟୁ ବୃତ୍ତିରୁ ନିବୃତ୍ତ ହେବା ତ ଏତେ କଷ୍ଟକର ନୁହେଁ । ଧନର ପ୍ରାଚୁର୍ଯ୍ୟ କ’ଣ ଜୀବନପାଇଁ ଅପରିହାର୍ଯ୍ୟ ? ସ୍ୱଚ୍ଛନ୍ଦରେ ଚଳିବା ଜୀବନର ଧର୍ମ ନୁହେଁ କି ? ତେବେ, ଅର୍ଥଲୋଭ ଏପରି ଅଦ୍ଭୁତ ଯେ, ତାହା ବଢ଼ି ବଢ଼ି ଚାଲେ । ଠିକ୍ ଅଗ୍ନି ଯେପରି ସମୀଧ ଦ୍ୱାରା ବୃଦ୍ଧିପ୍ରାପ୍ତ ହୁଏ, ଲୋଭ ଠିକ୍ ସେହିପରି ଲବ୍ଧ ବସ୍ତୁ ଦ୍ୱାରା ପ୍ରଜ୍ଜ୍ୱଳିତ ହୁତାଶନ ପାଲଟିଯିବାରେ ଲାଗିଥାଏ । ଦସ୍ୟୁ ରତ୍ନାକର ଅନ୍ତତଃ ଏତିକି ହୃଦୟଙ୍ଗମ କରୁ, ରାମନାମ ଜପି ଉଇ ହୁଙ୍କା, ପାଲଟିଯିବା ତା’ର ଲକ୍ଷ୍ୟ ନହେଉ । ସେ ବାଲ୍ମୀକି ନ ହେଉ । କେତେ ସହସ୍ର ବର୍ଷ ମଧ୍ୟରେ ଜଣେ ମାତ୍ର ବାଲ୍ମୀକି ପାଲଟେ । ପାଲଟେ ଆଦି କବି । ତାହା ସହଜ ନୁହେଁ । ମାତ୍ର ଆଜିର ଅସଂଖ୍ୟ ରତ୍ନାକର ନିଜ ନିଜ ବାଟରେ ନିରପରାଧ ଲୋକଙ୍କ ତଣ୍ଟିକାଟିବା କର୍ମରୁ ବିରତ ହୋଇପାରନ୍ତେ ନାହିଁ ? ସ୍ତ୍ରୀର ମଣିରତ୍ନ ଅଳଙ୍କାର, ପୁଅର ସୁବର୍ଣ୍ଣ କଣ୍ଢେଇ ନହେଉ, ହୀରା ଖଚିତ ବୀଣାରେ ପତ୍ନୀ ଝଙ୍କାର ନ ତୋଳୁ, ସାଧାରଣ ଭାବେ ଜୀବନ ଯାପନ କରି ରାମଙ୍କଠାରେ ଲୟ ରଖି ବ୍ୟକ୍ତି ଆପଣା କର୍ତ୍ତବ୍ୟ କରି ଯାଆନ୍ତେ ! ପୁଅ ମାଟି କଣ୍ଢେଇରେ ଖେଳନ୍ତା, ପତ୍ନୀ ନିରାଭରଣ ସହଜତାରେ ଉଜ୍ଜ୍ୱଳ ରହନ୍ତା, ବାଉଁଶ ବଇଁଶୀରେ ମଧୁ ମୂର୍ଚ୍ଛନା ଫିଟିପାରନ୍ତା, ଆତ୍ମା ପୁରୁଷ ସନ୍ତାପିତ ହୁଅନ୍ତା ନାହିଁ । ମନରେ ବି ଦାଗ ଲାଗନ୍ତା ନାହିଁ ।

ରତ୍ନାକରମାନଙ୍କର ପତ୍ନୀମାନେ ଅନ୍ତଃକରଣର ଶୁଦ୍ଧତା ପାଇଁ ପତିମାନଙ୍କୁ ପ୍ରେରଣା ଦେଇପାରନ୍ତେ ନାହିଁ ? ଏହା ଅସମ୍ଭବ ନୁହେଁ । ଖାଲି ଆପଣାର ମାର୍ଗ ଓ ଲକ୍ଷ୍ୟକୁ ସ୍ଥିର କରିନେଲେ ହିଁ ଏସବୁ ସମ୍ଭବ ହୋଇପାରନ୍ତା ।



# ମୃତ୍ୟୁ ନୁହେଁ,...ଜୀବନର ସାମଗାନ

ସରୋଜିନୀଠାରୁ ଶୁଣାକଥା । ପ୍ରକୃତରେ ଶୁଣାକଥା ନୁହେଁ, ସତ ଘଟଣା । ଶତକଡ଼ା ଶହେ ସତ । ''ମାଆ ଶୁଣିଲଣି, ବାପମା, ଦୁଇଝିଅ ମିଶି ମରିଛନ୍ତି ଗୋ, ସୁଇସାଇଟ୍ କରିଛନ୍ତି । ଛୋଟ ଝିଅଟାକୁ ନିଦରୁ ଉଠେଇ ତା ବେକରେ ହେଲେ ରଶି ଲଗାଇ ଦେଇଛନ୍ତି । ସେ ମାଆଟା ପୁଣି ଏମ.ଏ. ପାଠ ପଢ଼ିଛି ।'' ଆମ ଘରେ ଠିକା କାମ କରୁଥିବା ସରୋଜିନୀର ପ୍ରକୃତି, ବହୁତ ଗପିବ । ଅଥଚ ଘର କାମ ସବୁ ଅସ୍ନାମସ୍ନା କରି ୨୦ ମିନିଟ୍‌ରେ ସାରି ଚାଲିଯିବ । ଯଦି ଗପ ଆରମ୍ଭ କଲା ତ, ଯାଉ ଘଣ୍ଟାଏ ବିତି, ଯାଏ ଆସେ ନାହିଁ । ସେଥିପାଇଁ ମୋତେ ବିରକ୍ତ ଲାଗେ- ''ତୋ ଗପ ଶୁଣିବାର ନାହିଁ ମୋର, ଯା' ଗପୁଡ଼ି, ଅସନୀ ।'' ତଥାପି ଆଙ୍ଗୁଳି ପ୍ରବେଶାଦ୍ ବାହୁପ୍ରବେଶ କରେ ସେ । କ'ଣଟେ ପଚାରି ଦେଲେ ସେ ୧୦ ମିନିଟ୍‌ଯାଏ ଭଙ୍ଗୀକରି ଗପିଚାଲିଥିବ । ମୁଁ ପସ୍ତେଇ ହେବି, କାହିଁକି ପଚାରିଦେଲି ଭଲା ! ପରଦିନ ରୁନୁ ବି କହିଲା ଏମିତି ଗୋଟେ ଆତ୍ମହତ୍ୟା ଖବର ଜାଣିଛୁ ? ଜଣେ ବ୍ୟାଙ୍କ ଅଫିସରଙ୍କ ସାରା ପରିବାର ଆତ୍ମହତ୍ୟା କରିଛନ୍ତ । କାରଣ ? ବାପକୁ ହେଲା କ୍ୟାନସର, ଡାକ୍ତର କହିଲା, ଆଉ ବେଶି ଦିନ ନୁହେଁ, ମାସେ ଭିତରେ । ମତେ କାବା ଲାଗିଲା । ନାଇଁମ, ବାପ ମରିଯିବ ବୋଲି ମାଆ, ପିଲା ବଞ୍ଚି ରହିବେ ନାହିଁ ?

ଆଜି ପୁଣି ଥରେ ସରୋଜିନୀ କହିଲା- ''ଏଇଟି ମାଆ, ତୁମ ଘର ପଛପଟ ଲାଇନରେ ମରିଛନ୍ତି । ଝିଅଦୁଇଟା ୧୧ ଓ ୬ ବର୍ଷର, ତାଙ୍କୁ ବି ଟାଙ୍ଗି ଦେଇଛନ୍ତି । ୪ ଘରେ ୪ଜଣ ପଙ୍ଖାରୁ ଝୁଲୁଛନ୍ତି '' ପୂର୍ବଥର ମୁଁ ତା'କଥା କୋଉଠୁ ଶୁଣିକି କହୁଥିବ ବୋଲି ଭାବିଥିଲି ଏବେ ବିଶ୍ୱାସ କରିବାକୁ ହେଲା- ଖବରକାଗଜ ବି ଠିକ୍ ଏୟା କହିଲା । ଏମିତି କ'ଣ ହୁଏ କେବେ ? ''ଅନେକ ଜନ୍ମ ପୁଣ୍ୟଫଳେ/ମନୁଷ୍ୟଜନ୍ମ ମହୀତଳେ'' ଭାଗବତବାଣୀ ମନେପଡ଼ିଲା । ରୁନୁକୁ ମୁଁ କହୁଥିଲି, ହାୟରେ, ଏମିତି ତ ହେଇଥିବ ନିଶ୍ଚେଁ- ଡାକ୍ତର ପାଖରୁ ଫେରିଥିବେ ପ୍ରମୋଦ ମିଶ୍ର- ଲଙ୍ଗସ କ୍ୟାନସର, ଥର୍ଡ଼ଷ୍ଟେଜ- ଆଉ ମାସକେ ଶେଷଘଣ୍ଟି ବାଜିବ, କାନ୍ଦି କାନ୍ଦି ଲୋଟି ପଡ଼ିଥିବ ଅନୀତା, ତାଙ୍କ ସ୍ତ୍ରୀ, ରୀତା, ଜିତାଙ୍କ ମାଆ । ୩୫ବର୍ଷର ତରୁଣୀ ସେ ଅନ୍ଧାର ଦିଶିଥିବ ଚାରିଦିଗ, ସଂସାର ସମୁଦ୍ର

ଭିତରେ ଭାସୁଥିବ ସେ, କୂଳକିନାରା ନଥିବ । ତା' କାତରପଣ ବାହୁନି ଉଠୁଥିବ-ମୁଁ ହେଲେ ଚାଲିଯାଇଥାନ୍ତି, ଯମ ମତେ ନେଲାନି, ଏ ଦୁଃଖ ମୋ କପାଳରେ ଥିଲା, ତାଙ୍କ ଆଗରୁ ମତେ ନେଇଯାଅ ପ୍ରଭୁ- ଏଥର ପ୍ରମୋଦ ମିଶ୍ରଙ୍କ ପାଳି । ସତେ ତ ! ତରୁଣୀ ପତ୍ନୀ, କିଶୋରୀ ଓ ଶିଶୁକନ୍ୟା ୨ଟି, ଏମାନଙ୍କୁ ଛାଡ଼ିଯିବାକୁ ହବ । କି ଦାରୁଣ ଯାତନା ସତେ ! ସେ କ'ଣ ଦାବି କରିଥିବେ-"ଅନୀତା, କ'ଣ କରିବା ତା'ହେଲେ ? ଅନୀତା ଜିଦ୍ ଧରିଥିବ "ମୁଁ ଆଗ ମରିବି ।" ପ୍ରମୋଦ ମିଶ୍ର ସ୍ତ୍ରୀକୁ ଧୈର୍ଯ୍ୟ ଦେଇ ପାରିଥାନ୍ତେ । ସେ ସ୍ଥିର କଲେ, ମୁଁ ତ ମରିବି, ଅନୀତା ବି ନ ବଞ୍ଚୁ । ଝିଅ ୨ଟି ବା କିପିର ରହିବେ ? ରୁନୁର ଏଇ ବୟାନରେ ମୁଁ ବାଧାଦେଲି- "ତୋର ଯୋଉ କଥା ! ମୃତ୍ୟୁମୁଖୀ ମଣିଷଟା ଏମିତି ଭଲା ଭାବି ପାରିବ ? ଏତେ ପରିପୂର୍ଣ୍ଣତର୍ଣ ସଂସାର ଛାଡ଼ି ଅଧାରୁ ଚାଲିଯାଉଛି ସେ, କେତେ ହତଭାଗ୍ୟଟିଏ, କେତେ ଦୁଃଖ ତାର" । ରୁନୁର ମତ ଜାଣିନୁ ", ସେ ଚାହିଁଥିଲେ ପିଲା ଦୁଇଟିକୁ ରକ୍ଷା କରିପାରି ନ ଥାନ୍ତେ ? ସ୍ତ୍ରୀକୁ ତ ଅନୁନୟ କରିଥାନ୍ତେ, ପିଲାଦିଟିଙ୍କୁ ଯେମିତି ହେଲେ ବଞ୍ଚାଇ ରଖ । ମରିବାକୁ ଦେଇ ନଥାନ୍ତେ ସେମାନଙ୍କୁ । ସେ ସମ୍ମତ ହୋଇ ନ ଥିଲେ, ସ୍ତ୍ରୀ ଲୋକଟା ନିଜ ଛୁଆଙ୍କୁ କଦାପି ଫାଶରେ ଝୁଲାଇ ପାରି ନ ଥାନ୍ତା ।"

ମୁଁ ମରୁଛି ତ, ସେମାନେ ବଞ୍ଚିବେ କାହିଁକି ? ଯେ କି ମାନସିକତା ? ରୋଗଗ୍ରସ୍ତ ମୁମୂର୍ଷୁ ଲୋକଟି କ'ଣ ପ୍ରକାରାନ୍ତରେ ବାଧ କରିଥିବ ସ୍ତ୍ରୀକୁ ? କଦାପି ନୁହେଁ । ସ୍ତ୍ରୀ ବି ଏମ.ଏ. ପଢ଼ିଛି । ସ୍ୱାମୀ ସରକାରୀ ଚାକିରିଆ । ତାଙ୍କର ଅକାଳ ମୃତ୍ୟୁରେ ସ୍ତ୍ରୀଟି ଚାକିରି ପାଇଥାନ୍ତା । ଝିଅ ଦୁଇଟି ବଢ଼ିଥାଆନ୍ତେ । ଆହା ! କ'ଣ ପାଇଁ ଏ କାମ କଲେ ! ରୋଗ ଭୂଃ ଶରୀର । ଜଣେ ରୋଗଗ୍ରସ୍ତ ହେଲା, ମୃତ୍ୟୁବରଣ କଲା ବୋଲି, ସଂସାର କ'ଣ ଅଟକି ଯିବ ? ଜଗତ ଏତେ ବିଚିତ୍ର ଯେ, ବରାବର ଆମ କଳ୍ପନାଠାରୁ, କଳନାଠାରୁ ଭିନ୍ନ ହୋଇଯାଏ ଭବିଷ୍ୟତ । ଅକସ୍ମାତ ଖୁବ୍ ଐଶ୍ୱର୍ଯ୍ୟମୟ ବି ହୋଇଯାଏ । ଏହିପରି କ୍ଷଣିକ ଉନ୍ମାଦନାରେ ଜୀବନକୁ କ'ଣ ଶେଷ କରାଯାଏ ? ଅନୀତା କାହିଁକି ବୁଝିଲା ନାହିଁ ଯେ, ବର୍ଦ୍ଧିଷ୍ଣୁ ଝିଅ ଦୁଇଟି ତା'ର, କେତେ ଜୀବନ ରସରେ ପୂର୍ଣ୍ଣ ଥିବେ ! ଶିକ୍ଷିତା ତରୁଣୀ, ସେ କ'ଣ ପିଲାଦୁଇଟିଙ୍କୁ ଠିଆ କରାଇ ପାରି ନ ଥାନ୍ତା ? ପିଲାଙ୍କ ଭବିଷ୍ୟତ କ'ଣ ଅନୀତାର ହାତ ତିଆରି ଭବିଷ୍ୟତ ? ରୁନୁ କହିଲା "କେତେ ଜାଗାରେ ବାପ ନ ଥିଲା ଝିଅ, କେତେ ସୁଖ ସୁବିଧାରେ ବି ରହୁଛନ୍ତି, ଯୋଗ୍ୟ ହେଉଛନ୍ତି । ହୁଏତ ବାପା ଥାଇ ବି ପିଲା ଦୁଃଖ ଦୁର୍ଭୋଗରେ ସଢୁଛନ୍ତି । ଝିଅଙ୍କ ଭାଗ୍ୟକୁ ଭବିତବ୍ୟକୁ ନିଜ ହାତ ମୁଠା ଭିତରକୁ ନେଇ କେତେ ମୂର୍ଖତା ନ କଲା ଅନୀତା ।

ଆକସ୍ମିକ ଦୁର୍ଘଟଣା, ମାରାତ୍ମକ ରୋଗ, ମଣିଷର ଅକାଳ ମୃତ୍ୟୁର କାରଣ ହୋଇଥାଏ । କିନ୍ତୁ ସେହି ମୃତ୍ୟୁ କ'ଣ ଜୀବନର ଜୟଗାନର କଣ୍ଠରୋଧ କରିପାରେ ? ପ୍ରମୋଦ ମିଶ୍ରଙ୍କ ଅକାଳ ମୃତ୍ୟୁର ହାହାକାର ହୁଏତ ରୀତା, ଜିତାଙ୍କ ଜୀବନର ଉଜ୍ଜ୍ୱଳତାରେ ଝଲ୍‌ସି ଉଠିଥାଆନ୍ତା । ମଣିଷ ଅମୃତସ୍ୟପୁତ୍ର । ବ୍ୟକ୍ତି ମରେ, କିନ୍ତୁ ମଣିଷର ଜୀବନଯାତ୍ରା

ଅବ୍ୟାହତ । ପ୍ରମୋଦ ଓ ଅନୀତା ଯା ବୁଝିଲେ ନାହିଁ । ନିଜ ରକ୍ତରେ ଗଢ଼ା, ଆଦରର ଧନ କନ୍ୟା ଦୁଇଟିଙ୍କୁ ନିଜ ହାତରେ ଫାଶି ଲଗାଇଲେ । ଯେ କ'ଣ ବିକୃତ ମାନସିକତା ? ନାଁ ଯାକୁ ଉଭଟତା କୁହାଯିବ ? ସତ୍ୟ ସଂଗୁପ୍ତ । ପ୍ରମୋଦଙ୍କ ବାଧବାଧକତା କି ଅନୀତାଙ୍କ ହତାଶା, ଏହି ହତ୍ୟା ଓ ଆତ୍ମହତ୍ୟାର ସଠିକ୍ କାରଣ, କ'ଣ ହୋଇପାରେ, କିଏ କହିବ ? କିନ୍ତୁ ଜୀବନର ସାମଗାନକୁ ନୀରବ କରାଇ ଦେବା ମନୁଷ୍ୟତ୍ୱ ନୁହେଁ । ବଢ଼ନ୍ତା ଚାରାକୁ ଓପାଡ଼ି ଫିଙ୍ଗିଦେବା, ରୀତା ଜିତାଙ୍କୁ ଫାଶିଦେବା, ଏକା କଥା ନୁହେଁ କି ? କି ଅପରାଧରେ ସେମାନେ ଫାଶିପାଇଲେ ? ଯେ ଅନ୍ୟ କାହାର ଦୋଷ ନୁହେଁ । ଅନୀତାର ହିଁ ।

ମୃତା ଅନୀତାର ଉଦ୍ଦେଶ୍ୟରେ ମୁଁ କହେ, ସତେ କି ସେ ମୋ ଆଗରେ ଛିଡ଼ା ହୋଇଛି । ଅନୀତା, ବିଶ୍ୱାସକର, ରୀତା, ଜିତା ଭଲପାଠ ପଢ଼ିବେ, ଭଲ ଘରେ ବିଭା ହେବ, ଭଲ ମଣିଷ ହେବେ । ଆଖି ଆଗରେ ଏମିତି କେତେ ଦୃଷ୍ଟାନ୍ତ, ଦେଖୁ ନାହିଁ । ସୁନା ଝିଅଟି, ସେ ଦୁହିଁଙ୍କୁ ପ୍ରାଣରୁ ମାରିଦବା କଥା କଦାପି ଭାବ ନାହିଁ । ତାଙ୍କୁ ବଞ୍ଚାଇ ରଖ । ତୁମେ ହିଁ ତାଙ୍କୁ ସଂସାରରେ ଠିଆ କରାଇ ପାରିବ । ଆଉ ଦୁଃଖ ବି ଯଦି ଆସେ, ଜୀବନ ଦୁଃଖର ସୁଖର ବୋଲି ତୁମେ କ'ଣ ଜାଣିନ ? କିଛି ସହିବ ନାହିଁ ବୋଲି ଜୀବନର ଅନ୍ତ ଘଟାଇବ ? କିନ୍ତୁ ସତ କୁହ, ଅନୀତା, ୬ ବର୍ଷର ନିଦ ବିଭୋର ଜିତାକୁ କାଖେଇ ଧରି ତା'ର କଅଁଳ ବେକରେ ନାଇଲନ ଫାଶ ଲଗାଇଦେବା ଦୁଃଖଠାରୁ, ଆଉ କିଛି ଦାରୁଣତତର ଦୁଃଖ ଥିବାର ତୁମେ କ'ଣ ବିଶ୍ୱାସ କର ? ମୁଁ ଭାବେ, ଯା'ଠାରୁ ନିମର୍ମତର, ତୀବ୍ରତର ଯନ୍ତ୍ରଣା ତୁମକୁ କଦାପି ଭୋଗିବାକୁ ପଡ଼ି ନଥାନ୍ତା ।



# ମରିବେ ସିନା, ସରିବେ ନାହିଁ

ଚାଞ୍ଚଲ୍ୟକର ଖବର ସବୁ । ପଞ୍ଜାବରେ ଝିଅଙ୍କର ଅନୁପାତ କମି କମି ଯାଉଛି । ଓଡ଼ିଶାର ସହରାଞ୍ଚଳରେ ମଫସଲ ତୁଳନାରେ କନ୍ୟାସନ୍ତାନଙ୍କ ସଂଖ୍ୟାତଳକୁ ତଳକୁ ଯାଉଛି । ଭାରତର ସମସ୍ତ ବଡ଼ ସହରରେ ଝିଅ ଜନ୍ମ ଅନୁପାତ ହ୍ରାସ ପାଉଛି । ଏହା ଖୁବ୍ ଉଦ୍‌ବେଗଜନକ । କିନ୍ତୁ ଏହାର ହେତୁ କଅଣ ? ସଜ୍ଞାନ ସଚେତନ ଭାବେ କନ୍ୟାଜନ୍ମ ହ୍ରାସ କରାଯାଉଛି । କନ୍ୟା ଭ୍ରୁଣ ହତ୍ୟା ଯୋଗୁ ଏପରି ହେଉଛି । ମୁଁ ଓ ମୋର କେତେକ ଅଧ୍ୟାପିକା ବାନ୍ଧବୀ ଏ ସଂପର୍କରେ କଥା ହେଉଥିଲୁ ।

କି କଥା ଯେ ? ଭାଳେଣି ପଡ଼ିଛି ଏତେ କାହିଁକି ? ମାନବ ସମ୍ବଳ ବିକାଶ ବିଭାଗ, ଅନ୍ୟାନ୍ୟ ସରକାରୀ, ବେସରକାରୀ ଅନୁଷ୍ଠାନର ଏତେ ମୁଣ୍ଡବ୍ୟଥା କ'ଣ ପାଇଁ, ଏତେ ଦରଦ ? ଗୋଟିଏ ଦିଗରେ ଭ୍ରୁଣହତ୍ୟା କରାଯାଉଛି । ''ଅନ୍ୟଦିଗରେ ମରିଗଲା, ସରିଗଲା ବଞ୍ଚାଅ'' ବଞ୍ଚାଅ ହୁରିପଡ଼ିଛି । କୋର୍ଟ ରାୟ ଦେଲେ ବିବାହିତ ଝିଅ ବାପଘରର ପରିବାରର ସଦସ୍ୟ ରୂପେ ଗଣାଯିବ ନାହିଁ । ସବୁ କାଳେ ଝିଅଟିଏ ଥିଲା 'ଦୁଇକୁଳକୁ ହିତା-ଦୁହିତା' । ଦୁଇକୁଳ ମଧ୍ୟରେ ସେ ଥିଲା ଆତ୍ମିକ ଯୋଗସୂତ୍ରଟିଏ । ଗୋଟିଏ କୁଳରୁ ଯଦି ତା' ସଦସ୍ୟପଣ କଟିଯାଏ, ସେ ଅସହାୟ ହୋଇଯିବ କି ନାହିଁ ? ଝିଅଙ୍କର ପିତୃସମ୍ପତ୍ତିରେ ଅଧିକାର ସାବ୍ୟସ୍ତ କରିବା, ଏ ଦେଶରେ ଗୋଟିଏ ସ୍ୱାଗତଯୋଗ୍ୟ ଆଇନ । କିନ୍ତୁ ଅଧିକାର ସାବ୍ୟସ୍ତ କରିବା ପାଇଁ ଝିଅଟିଏ ତା' ଶାଶୁଘରର ବା ସ୍ଥଳ ବିଶେଷରେ ବାପଘରର ସାହାଯ୍ୟ ସହାନୁଭୂତି ତ ଲୋଡ଼ିବ । ଆଜିକାଲି ଝିଅମାନେ ପ୍ରାୟତଃ ୨୫ବର୍ଷ ପରେ ହିଁ ବିବାହ କରୁଛନ୍ତି । ୨୫ବର୍ଷ ଯାଏ ଝିଅଟି ବାପଘରେ ରହି, ଘର ପ୍ରତି ତା'ର ପ୍ରଗାଢ଼ ମମତା ବାଣ୍ଟି ଦେଉଛି । ଘର ସଜାଇବା, ମାଆ ସହିତ ଘରକାମ କରିବା, ବାପଭାଇଙ୍କ ଖବର ବୁଝିବା ତାହାର ଦୈନନ୍ଦିନ କାର୍ଯ୍ୟ । ଶାଶୁଘରେ ଏଣେ ଲୋକଙ୍କ ଅର୍ଥଲୋଭ ବୋହୂକୁ ଅସହାୟ କରି ପକାଉଛି । ତେଣୁ ଝିଅ ଜନ୍ମ ଯେ କେତେ ବେଶି ବିଡ଼ମ୍ବିତ, ତାହା ବୁଝି ହେଉଛି । ଶରୀରଗତ କାରଣରୁ ଝିଅଟି ଉପରେ ଦାଉ ସାଧନ୍ତି ସମସ୍ତେ । ପିଲାଟିଏ ଜନ୍ମ କଲା ପରେ ସେ ପିଲାଟି ସହ ବାନ୍ଧି ହେଇଂପଡ଼େ । ତା'ର ଲାଳନ ପାଳନରେ ଅଧିକାଂଶ ଶକ୍ତି ଓ ସମୟ ଖଟାଏ । ଆଜିଯାଏ ଭାରତୀୟ ମାଆଟିଏ ସନ୍ତାନକୁ ଅବହେଳା

କରି ନିଜ ସୁଖ ସ୍ୱାଚ୍ଛନ୍ଦ୍ୟ ଖୋଜିବାକୁ ଯାଇନାହିଁ। ଅଥଚ, କେବଳ ଏହି କାରଣରୁ ସ୍ତ୍ରୀଲୋକଟି ଉପରେ ଅକସ ସାଧନ୍ତି ସ୍ୱାମୀ, ପରିବାର ଓ ସମାଜ।

୧୨/୧୪ବର୍ଷ ବେଳକୁ ବୟଃପ୍ରାପ୍ତ ହୋଇ ଝିଅଟି ଖୁବ ସନ୍ତର୍ପଣରେ ଚଳେ। ତା'ର ଦୋଷ ଥାଉ, ନଥାଉ, ତାକୁ ନାନା ଦୁର୍ଭୋଗ ମିଳିଥାଏ। ପ୍ରକୃତି ତାକୁ ମାତୃତ୍ୱର ଅଧିକାର ଦେଇଛି, ନାରୀଟିଏ ନିଜ ରକ୍ତକୁ ପାଣିକରି ପିଲାଟିକୁ ସ୍ତନ୍ୟଦାନ କରେ। ଏହା ଜଣେ ସ୍ତ୍ରୀଲୋକର ଚରମଦାନ। କିନ୍ତୁ ଏହି ଦାନକୁ ସ୍ୱୀକାର କରନ୍ତି କେହି ? ଯୌତୁକ ନିର୍ଯ୍ୟାତନା ରୂପକ ଯୂପରେ ବଳି ପଡୁଛନ୍ତି କେତେ ସ୍ତ୍ରୀଲୋକ, ଏଇ ଭାରତ ଭୂଇଁରେ। ତା'ର କ'ଣ ସତରେ ହିସାବ ଅଛି ? ଟିକେ ଆଦର, ସାମାନ୍ୟ ମର୍ଯ୍ୟାଦା ନ ପାଇ କେତେ ସ୍ତ୍ରୀଲୋକ ଆତ୍ମହତ୍ୟା କରୁଛନ୍ତି। କେହି ଏଇସବୁ କଥାବାର୍ତ୍ତା ଭିତରେ ରୁନୁ କହିଲା, ''ତା'ହେଲେ ଏତେ ହୁଲସ୍ଥୁଲ କାହିଁକି ? ଝିଅଙ୍କ ସଂଖ୍ୟା ଯଦି କମୁଛି, ପୃଥିବୀର ଯନ୍ତ୍ରଣାର ଭାର ଲାଘବ ହେଉଛି, ଏଥିପାଇଁ ଶୋଚନାର କାରଣ କ'ଣ ? ଏଥକୁ ଉପାୟ ଖୋଜିବାର ଆବଶ୍ୟକତା ବା କୋଉଠି ?'' ମୁଁ ଯୋଗ କଲି, ''ଶୋଚନା ଏଇଥିପାଇଁ ଯେ, ସ୍ତ୍ରୀଲୋକଟିଏ, ଝିଅଟିଏ ନ ହେଲେ ଯେ ନ ଚଳେ। ପୁରୁଷର ଶଯ୍ୟାସଂଗିନୀ ଦରକାର। ଭବିଷ୍ୟତର ବଂଶଧର ବି ଦରକାର।''

ରୁନୁ କଥା ଫୋପାଡ଼େ, ଖାଲି ସେତିକି, ଏଇ ଯେଉଁ 'ପ୍ରେମ' 'ଭାଲୋବାସା', 'ପ୍ୟାର୍' ବୋଲି ହୁରିପଡ଼ିଛି, ସେଥିରେ ଅନ୍ତରର ସଂପୃକ୍ତି ଥାଉ କି ନ ଥାଉ, ସେଥିପାଇଁତ ଝିଅଟିଏ ଦରକାର। ତା' ହେଲେ ? ଭାଳେଣି ପଡ଼ିବ ନାହିଁ ? ଯୁଗ ଯୁଗ ଧରି ଅବହେଳା, ଅତ୍ୟାଚାର ସହୁଥିବା ସମାଜର ଅଧେ ଲୋକ (ସ୍ତ୍ରୀଲୋକ) ଯେ ଦିନେ ରହିବେ ନାହିଁ, ସେମାନଙ୍କ ସଂଖ୍ୟା ଶୂନ ହେଇଯିବ, ସେଇ ଆତଙ୍କ ଖାଇଯାଉଛି। ଯାଉ, ନ ରହନ୍ତୁ ସେମାନେ, କାହାର କ'ଣ ଭାସିଯାଉଛି ଯେ। ବଳପ୍ରୟୋଗ କରିବେ, ଧର୍ଷଣ କରିବେ, ଏସିଡ଼ ପକାଇ ଅଧାପୋଡ଼ି କଲବଲ କରିବେ, ସୁନ୍ଦର ମୁହଁକୁ ଭୁତ ପ୍ରେତ ପରି ବିକୃତ କରିପକାଇବେ ନରକର କୀଟଗଣ। ତାଙ୍କରି ବୀଭତ୍ସ ମନୋବୃତ୍ତିର ଶିକାର ହେବ ଝିଅମାନେ। ଯଦି ଏଇ ଏସିଡ଼ ଫିଙ୍ଗାର ଘଟଣାରେ ଦୋଷୀକୁ ତା'ର ହସ୍ତଛେଦନ ଦଣ୍ଡ ଦିଆଯାଇପାରନ୍ତା, ତେବେ ହୁଏତ ପରିସ୍ଥିତି ସୁଧୁରନ୍ତା। ତତ୍‌କ୍ଷଣାତ୍ ଦଣ୍ଡବ୍ୟବସ୍ଥା ହୁଅନ୍ତା। ତା'ତ ନାହିଁ। କାହିଁକି ଜନ୍ମ ହେବେ ଝିଅମାନେ ? ଯେ ସମାଜ କେବେ ମୂଲ୍ୟ ଦେଇଛି ନାରୀମାନଙ୍କ ମଧୁରତା, କୋମଳତା ଓ ଆତ୍ମତ୍ୟାଗର କଷଣକୁ ? ପରିବାର ବି ସ୍ତ୍ରୀଲୋକର ସ୍ଥିତିକୁ କେତେ ଗୁରୁତ୍ୱ ଦେଇଛି ? ନ ହେଲେ ନ ଚଳେ ବୋଲି, ବ୍ୟବହାର୍ଯ୍ୟ ପଦାର୍ଥଟେ ଭଳି ଅଧିକାଂଶ ପରିବାରରେ ସ୍ତ୍ରୀଲୋକ ସ୍ୱୀକୃତି ପାଏ। 'ଭଲ ହୋଇଛି, ଝିଅ ସଂଖ୍ୟା ହ୍ରାସ ପାଉ- ଭ୍ରୁଣ କାଳରୁ ତାଙ୍କୁ ମାରିଦିଅ।' 'ମୁଲୁ ମାଇଲେ ଯିବ ସରି'- ଏ ପୃଥିବୀର ସବୁତକ ଯନ୍ତ୍ରଣା, ନିଷ୍ଠୁରତାକୁ, ଅସୁର ପଣିଆଁକୁ ଭୋଗିବାକୁ, ଲୁହରକ୍ତ କାନ୍ଦିବାକୁ କାହିଁକି ସେମାନେ ଜନ୍ମ ନେବେ ? ସରି ଯାଆନ୍ତୁ, ଶୂନ୍ୟ ହୋଇଯାଆନ୍ତୁ।

ବୁନୁ ମୁହଁ ଲାଲ ପଡ଼ିଯାଇଥାଏ ସେତେବେଳକୁ ।

ମୁଁ କିନ୍ତୁ ଠିକ୍ ଜାଣିଥିଲି ଯେ, ସ୍ତ୍ରୀ ଲୋକମାନେ କଦାପି ସରିଯିବେ ନାହିଁ । ବାରବାର ମରିବେ, ସମାଜର, ପରିବାରର, ବ୍ୟକ୍ତିର ଚୋଟ ସହିବେ, ପଦାଘାତ ସହିବେ, ତଥାପି ବଞ୍ଚି ରହିବେ, ଜନ୍ମ ହେବେ, ଜନ୍ମ ଦେବେ, କଷ୍ଟ ଭୋଗିବେ । ପୃଥ୍ୱୀ ରହିଥିବା ଯାଏ, ସେମାନେ ରହିବେ । ଜଣେ ବିଶ୍ୱବିଖ୍ୟାତ ଲେଖକ କହିଛନ୍ତି "Woman is a fountain of immortal water." ମୃତ୍ୟୁହୀନ ଜଳରାଶିର ଏକ ଝରଣା ହେଉଛି ନାରୀ । ଏକଥା ନିଶ୍ଚିତ ସତ, ଝିଅମାନେ ବହୁ ଭାବରେ ମରିବେ ସିନା, ବିଶ୍ୱାସକର ବୁନୁ, କଦାପି ସରିଯିବେ ନାହିଁ ।’’



# ଯୌତୁକ ଲୋଭ

ବିଶେଷ କରି ଏଇ ମହିଳା ସଶକ୍ତିକରଣ ସମ୍ବତ୍ସରରେ ଏକ ଜୀବନ୍ତ ପ୍ରଶ୍ନ ହୋଇ ଦଣ୍ଡାୟମାନ ହୋଇଛି ଯୌତୁକ ପ୍ରଥା । ପ୍ରକୃତରେ ଏହା ପ୍ରଥା ନା ଲୋଭ ? ପ୍ରଥା ଯଦି ଆଚରଣ ବିଧି ହୁଏ, ତା'ହେଲେ ତାକୁ ପ୍ରତିରୋଧ କରାଯାଇପାରିବ । କିଛି ଆନ୍ଦୋଳନ, କିଛି ସାହସ ଓ ପ୍ରଥାର ଅପକାରିତାକୁ ବିଶ୍ଳେଷଣ କରାଯିବା ଦ୍ୱାରା ପ୍ରଥାକୁ ପରିବର୍ତ୍ତିତ କରିବାକୁ ଚେଷ୍ଟା କରାଯାଇ ପାରିବ । ଇତିହାସରେ ଏହାର ପ୍ରଚୁର ଦୃଷ୍ଟାନ୍ତ ରହିଛି । ଯେପରି 'ସତୀଦାହ ପ୍ରଥା'- । କେଉଁଠି ଲୁଚିଛପି ହୁଏତ ଏହା କ୍ୱଚିତ୍ ଆଚରିତ ହେଉଛି, ମାତ୍ର ତାର ପ୍ରଭାବ ଆଉ ନାହିଁ । ହେଲେ, ଯୌତୁକ ଆଉ ପ୍ରଥା ଭିତରେ ସୀମିତି ହୋଇ ରହିନାହିଁ । ତାହା ସର୍ବଗ୍ରାସୀ ଲୋଭର ଶିଖାଟିଏ ହୋଇ ମଣିଷର ରକ୍ତରେ ମିଶିଯାଇଛି । ଅଧିକରୁ ଅଧିକ ପ୍ରଜ୍ଜ୍ୱଳିତ ହୋଇ ଉଠିବାରେ ଲାଗିଛି । ଏଥିରେ ସାହାଯ୍ୟକାରୀ ହୋଇଛି ଆମ ଦେଶରେ ରାଜତ୍ୱ କରୁଥିବା ଦାରିଦ୍ର୍ୟ ଓ ଶିକ୍ଷା ହୀନତା ।

ଦାରିଦ୍ର୍ୟ ଯୌତୁକ ଲୋଭର ମୁଖ୍ୟକାରଣ ନହେଲେ ମଧ, କେତେକ ମୁଖ୍ୟକାରଣ ମଧ୍ୟରୁ ଗୋଟିଏ ବୋଲି ସ୍ୱୀକାର ନ କରିବାର ଉପାୟ ନାହିଁ । ମାରାତ୍ମକ ଏକ ବ୍ୟାଧି ରୂପରେ ଏହା ସମାଜରେ ସଂକ୍ରମିତ । ବିଭାଘର କାଳରେ ବର ପକ୍ଷ କିଛି ଶ୍ରମ ବିହୀନ ସଂପତ୍ତି ଆଦାୟ କରିବାର ନିଶ୍ଚିତ ପନ୍ଥା ହେଉଛି ଯୌତୁକ ଦାବୀ । ଏହାର ନିରାକରଣ ହେବା ଜରୁରୀ, ମାତ୍ର ସହଜ ନୁହେଁ । କାରଣ, ମଣିଷର ଲୋଭକୁ ପରାସ୍ତ କରିବା ଖୁବ୍ କାଠିକର, ପ୍ରାୟ ଅସମ୍ଭବ । ଯୌତୁକ ଜୁଇରେ ପ୍ରତ୍ୟହ ବଳି ପଡୁଥିବା ଝିଅମାନଙ୍କ ନିଦାରୁଣ ଜୀବନକୁ ନିରୀକ୍ଷଣ କଲେ ଏହାର ମାରାତ୍ମକତା ବୁଝିହୁଏ । ଝିଅଟିର ରୂପ, ଶିକ୍ଷା, ଶ୍ରମ, ଆନ୍ତରିକତା ଓ ସହଷ୍ଣୁତା କିଛି ବି ବିଚାରକୁ ନିଆଯାଏ ନାହିଁ । ଧନ ହୁଏ ମୁଖ୍ୟ । ଆଜିବି ସମାଜରେ ଅପେକ୍ଷାକୃତ ନିର୍ଲୋଭ ଲୋକ ଅଛନ୍ତି । ନଥିଲେ, ପୃଥିବୀ ତିଷ୍ଠି ରହି ନଥାନ୍ତା । ଗୋଟେ ବିରାଟ ବୋମା ପରି ଶୂନ୍ୟମଣ୍ଡଳରେ ବିସ୍ଫୋରିତ ହୋଇସାରନ୍ତାଣି । ମାତ୍ର ସଂଖ୍ୟାଧିକ ଲୋକ ଅର୍ଥଲୋଭୀ ଓ ନିଷ୍ଠୁର । ନିଷ୍ଠୁରତା ଏ ଯୁଗର ଲକ୍ଷଣ । ଭଲ ଗୁଣ ଓ ଭଲପଣକୁ ଏ ଯୁଗରେ ସୁରକ୍ଷା ଓ ସମ୍ମାନ ମିଳେ ନାହିଁ । ଅତଏବ, ମନ୍ଦ ଗୁଣର ଚାହିଦା ଓ ଗୌରବ ବଢ଼ିଚାଲିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ଯୌତୁକ ପ୍ରଥା ଦିଗରେ ଯଦି କିଛି ବିହିତ ପଦକ୍ଷେପ ନିଆଯାଇପାରେ, ତା'ଭିତରେ ପ୍ରଥମ ପଦକ୍ଷେପ ହେଉଛି ନାରୀଶିକ୍ଷା ଓ ନାରୀର ଉପାର୍ଜନ କ୍ଷମତାର ବିକାଶ ଘଟାଇବା । ତା'ହେଲେ, ନାରୀର ମାନସିକ ଦୃଢ଼ତା ଆସିବା ସମ୍ଭବ ହେବ ଓ ତାର ଅର୍ଥନୀତିକ ନିରାପତ୍ତା ପ୍ରତିଷ୍ଠା ହୋଇ ପାରିବ । ବର୍ତ୍ତମାନ ମୁଠେ ଖାଇବା, ଖଣ୍ଡେ ପିନ୍ଧିବା ନାରୀର ପ୍ରଧାନ ସମସ୍ୟା ହୋଇଯାଉଛି । ନିର୍ଯ୍ୟାତନାର ଶିକାର ହେବାକୁ ସେ ବଳି ପଶୁ ପରି ନିଜକୁ ଉତ୍ସର୍ଗ କରିଦେଉଛି । ୨ୟ ପଦକ୍ଷେପ ହେଉଛି, ପିତାମାତାଙ୍କ ସମ୍ପତ୍ତି ଓ ସଂବଳରେ କନ୍ୟା ଓ ପୁତ୍ର ଉଭୟଙ୍କର ସମାନ ଅଧିକାର ସାବ୍ୟସ୍ତ କରିବା । ଆଇନତଃ ଏହା ସ୍ଥିରୀକୃତ ହୋଇଥିଲେ ବି ଆମ ସମାଜରେ ପୁରୁଣା ବିଶ୍ୱାସର ବଶବର୍ତ୍ତୀ ହୋଇ, ଏବେ ବି ପିତାର ସଂପତ୍ତିରୁ କନ୍ୟା ତାର ପ୍ରାପ୍ୟ ପାଏ ନାହିଁ, କିମ୍ବା ଦାବୀ ମଧ୍ୟ କରିପାରେ ନାହିଁ । ଫଳତଃ ତାର ନ୍ୟାର୍ଯ୍ୟଦାବୀ ନଥିବାର ଅନୁଭବରେ ସେ ଅସହାୟ ହୋଇପଡ଼େ । ଏତଦ୍ ବ୍ୟତୀତ ଏ ଦିଗରେ ମାଆମାନଙ୍କର ମଧ୍ୟ କର୍ତ୍ତବ୍ୟ ରହିଛି । ପରିବାରରେ ମାଆମାନେ କନ୍ୟାସନ୍ତାନକୁ ପୁତ୍ରସନ୍ତାନ ସହ ସମାନ କରି ପରିପାଳନ କରିବା ଉଚିତ । କେବେ ବି ପାତରଅନ୍ତର କରିବା କଥା ନୁହେଁ । ଖୁବ୍ ଶିକ୍ଷିତ ପରିବାରରେ ମଧ୍ୟ ଏହି ପାତର ଅନ୍ତର ଲକ୍ଷ୍ୟ କରାଯାଏ । ଏହାର ଚାକ୍ଷୁଷ ପ୍ରମାଣ ଅନେକଙ୍କ ପାଖରେ ଥିବ, ମୋ ପାଖରେ ମଧ୍ୟ ରହିଛି ।

ମୋର ପଡ଼ୋଶୀଭାବେ ଏକ ପ୍ରଫେସର ପରିବାର ଥିଲେ, ଯାହାଙ୍କର ଦୁଇ ପୁଅ ଓ ଦୁଇ ଝିଅ । ଖାଦ୍ୟ, ପୋଷାକ, ପାଠପଢ଼ା- ଏ ସବୁଥିରେ ପୁଅ ଦୁହିଁଙ୍କ ପାଇଁ ଉତ୍ତମ ବ୍ୟବସ୍ଥା, ଭଲ ଖାଦ୍ୟ, ପୋଷାକ ଓ ଦାମୀସ୍କୁଲ - ଝିଅ ଦୁହିଁଙ୍କ ପାଇଁ ସବୁଥିରେ ବାଛବିଚାର । ବାସନମଜାଠାରୁ ଘରର ଯାବତୀୟ କାମ କରିବା ପରେ ସେ ଦୁହେଁ ପାଠପଢ଼ନ୍ତି । ଅବଶ୍ୟ ପ୍ରଫେସରଙ୍କ ସ୍ତ୍ରୀ ଉଚ୍ଚଶିକ୍ଷିତା ନୁହନ୍ତି । ତାଙ୍କ ଘରେ ପୁଅଝିଅ ଭେଦଭାବ ସହଜରେ ଆଖିରେ ପଡ଼ିଯାଏ ।

ପରିବାରରେ ଏଭଳି ବାଛବିଚାର ଯୋଗୁଁ କନ୍ୟାସନ୍ତାନ ମନରେ ପିଲାଦିନୁଁ ନିଜ ପ୍ରତି ଏକ ହେୟ ମନୋଭାବ ବଢ଼ିଉଠେ । ସେ ଯେ ନ୍ୟୂନ, ଏକଥା ତାର ମାନସିକତାକୁ ଗ୍ରସ୍ତ କରିପକାଏ । ମାଆମାନେ ଶିକ୍ଷିତା ଓ ଯଥେଷ୍ଟ ବିଚାରଶୀଳ ହୋଇଥିଲେ ଝିଅମାନଙ୍କୁ ନୀତିଗତ ଶିକ୍ଷାପ୍ରଦାନ କରି ହୁଏତ ବଳବତ୍ତର କରାଇବାରେ ସାହାଯ୍ୟ କରିପାରିବେ ।

ତା'ପରେ ଆମ ଝିଅମାନେ, ଉପଯୁକ୍ତ ଶିକ୍ଷାପ୍ରାପ୍ତ, ବୁଦ୍ଧିମତୀ ଝିଅମାନେ ଯେଉଁଦିନ ବୁଝିବେ ଯେ ତାଙ୍କ ନିଜସ୍ୱ ମୂଲ୍ୟ ଅପେକ୍ଷା, ତାଙ୍କ ପିତା ପ୍ରଦାନ କରୁଥିବା ଯୌତୁକର ମୂଲ୍ୟ ଅଧିକ ଭାବେ ସ୍ୱୀକୃତ ହେଉଛି । ଏହା ତାଙ୍କର ବ୍ୟକ୍ତିତ୍ୱ ପ୍ରତି ଏକ ଅପମାନ ଭିନ୍ନ ଅନ୍ୟକିଛି ନୁହେଁ, ସେ ଦିନ ସେମାନେ ନିଜେ ଯୌତୁକର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବେ । ମାତ୍ର ଏଭଳି ଏକ ଚିନ୍ତା ଓ ବିଶ୍ୱାସରେ ଦୃଢ଼ମୂଳ ହୋଇ ଠିଆ ହେବାକୁ ପରିବାର ଓ ସମାଜ ଝିଅମାନଙ୍କୁ ଯୋଗ୍ୟ କରାଇବା ଦରକାର ।

ପରିବାର, ସମାଜ ଓ ବ୍ୟକ୍ତି ଯେଉଁଦିନ ଏକତ୍ର ଭାବେ ଯୌତୁକର ଭୟାବହତା ଓ ଅମାନୁଷିକତାକୁ ହୃଦୟଙ୍ଗମ କରି ତାହାର ନିରାକରଣ ଦିଗରେ ଉପଯୁକ୍ତ ପଦକ୍ଷେପ ନେବେ, ସର୍ବୋପରି ସର୍ବଗ୍ରାସୀ ଲୋଭକୁ ମଣିଷପଣିଆ ଦ୍ୱାରା ସଂଯତ କରିପାରିବେ, ମୋର ଆଶା ସେଦିନ ଯାଇଁ ଯୌତୁକ ପ୍ରଥାର ସମୂଳ ନିରାକରଣ ସମ୍ଭବ ହେବ। ସରକାର କିଛି କରୁଛନ୍ତି ସତ, ତାର ପ୍ରଭାବ ମଧ୍ୟ କିଛିଟା ରହିଛି। ମାତ୍ର ମଣିଷର ଅନ୍ତଃକରଣର ପରିବର୍ତ୍ତନ, ଯେ କୌଣସି ଆଇନର ଶାସନଠାରୁ ଏ କ୍ଷେତ୍ରରେ ଅଧିକ ଫଳପ୍ରଦ ହୋଇପାରିବ।

ଲୋଭ ଓ ବ୍ୟକ୍ତିଗତ ଲାଭ ପାଇଁ ହାଇଁ ପାଇଁ ପ୍ରତିଯୋଗିତାରେ ଊର୍ଦ୍ଧ୍ୱଶ୍ୱାସ ଏ ସମୟ ଓ ସମାଜରେ ତଥାପି ମଣିଷର ଭଲପଣ କୋଉଠି ନାଁ କୋଉଠି ନିଶ୍ଚୟ ରହିଛି। ତାହା ଜାଗ୍ରତ ହେବାର ସମ୍ଭାବନା ମଧ୍ୟ କଦାପି ଦୂରବର୍ତ୍ତୀ ନୁହେଁ। କିଏ ଜାଣେ, ଦିନେ ଝିଅ ଓ ପୁଅ ସମାଜ ଓ ପରିବାରରେ ସମାନ ଗୁରୁତ୍ୱର ସହ ସ୍ୱୀକୃତ ହେବେ ଏବଂ ଯୌତୁକ ପ୍ରଥା ଆପେ ଆପେ ଲାଜରେ ଧୂଳିସାତ୍ ହୋଇଯିବ।



# ଦ୍ୱାରାବତୀ ଅନ୍ତରାଳେ

ଏଇ ଦଶହରାକୁ ବର୍ଷେ ହେବ ଦ୍ୱାରକାଦର୍ଶନ ଯୋଗ ପଡ଼ିଥିଲା । ଖୁବ୍ ଭଲଲାଗିଥିଲା ଦ୍ୱାରକାନାଥଜୀଙ୍କ ମନ୍ଦିର-ତତ୍‌ସଂଲଗ୍ନ ସମୁଦ୍ରତଟସ୍ଥ ଶିବ ମନ୍ଦିର । କେ.ଏମ.ମୁନ୍‌ସିଙ୍କ 'ଜୟସୋମନାଥ' ପଢ଼ି ସୋମନାଥ ମନ୍ଦିର ପ୍ରତି ମଧ କେମିତି ଗୋଟେ ମାୟା ଆସିଯାଇଥିଲା । ଗାନ୍ଧିଜୀଙ୍କ ଜନ୍ମସ୍ଥାନ ପୋରବନ୍ଦର । ତାଙ୍କ ବାସଗୃହ ଦେଖୁଦେଖୁ ମୁଁ ନିଜକୁ ଭୁଲିଯାଇଥିଲି- ଅତି ଅଣଓସାର ସେ କାବାଗାନ୍ଧିଙ୍କ ଘର, ଛୋଟ ବଖରା, ଛୋଟ ଝରକା, ସେଥିରେ ପୁତୁଳୀବାଈଙ୍କ ସେଇ ଐତିହାସିକ ପ୍ରସୂତୀଗୃହ-ସବୁ ଅପୂର୍ବ ଲାଗୁଥିଲା । ସହଯାତ୍ରୀଥିଲେ ଓଡ଼ିଶାର ପ୍ରବୀଣ ସାହିତ୍ୟକ ଓ ସଂସ୍କୃତିବିତ୍ ମହାପାତ୍ର ନୀଳମଣିସାହୁ ଓ ହୃଦାନନ୍ଦ ରାୟ । ସତରେ ଗୁଜୁରାଟ- ତା'ଭିତରେ ଜୁନାଗଡ଼- ପ୍ରଚୁର ପ୍ରାକୃତିକ ସମ୍ପଦରେ ଭରପୂର । ଗିର୍‌ଜଂଗଲର ଅନତିଦୂରରେ ସେଇ ଶିବମନ୍ଦିର, ପୁରୁଣାଦୁର୍ଗ , ସେଠାରେ ଥିବା ଏକ ବିରାଟ କୁଅ ବା ବାଂଫୀ- ସେ ପାତାଳଫୁଟା କୁଅକୁ ଯିବାପାଇଁ ଗୋଟିଏ ପାର୍ଶ୍ୱରେ ଭିତରକୁ ଲମ୍ବିଯାଇଛି ପାହାଚ- ପାଣି ପର୍ଯ୍ୟନ୍ତ -ସବୁକିଛି ଉଲ୍ଲାସକର, ସ୍ୱପ୍ନମୟ ଲାଗୁଥାଏ ।

ପ୍ରକୃତପକ୍ଷେ ଆମେ ସେଇ ଜୁନାଗଡ଼ର କଲେକ୍ଟରଙ୍କ ଘରେ ଅତିଥି ହୋଇଥାଉ- କଲେକ୍ଟର ଗୁରୁପ୍ରସାଦ ନୀଳମଣିବାବୁଙ୍କ ସାନପୁଅ । ତାଙ୍କ ବାସଗୃହ ଅତିସୁନ୍ଦର ଦର୍ଶନୀୟ ପରିପାଟିରେ ପୂର୍ଣ୍ଣ । ତାହା ଜୁନାଗଡ଼ର ପୂର୍ବତନ ଦେବାନ ଶ୍ରୀ ଜୁଲଫିକର ଅଲ୍ଲୀ ଭୁଟ୍ଟୋଙ୍କ ପିତାଙ୍କର ବାସଭବନ ଥିଲା । ଆଶ୍ୱିନମାସ- ସାରା ଭାରତରେ ଦଶହରା ପର୍ବ । ଗୁଜୁରାଟରେ ଏହିପର୍ବ ସ୍ୱତନ୍ତ୍ର-ନବରାତ୍ର ପୂଜା ଏଠାରେ ୯ ଦିନ ଧରି ଚାଲିଥାଏ । ସାରାରାତି ଦଳ ଦଳ ଝିଅ ଛୋଟ ବାଡ଼ି ଦୁଇ ଖଣ୍ଡ ଲେଖାଁ ହାତରେ ଧରି ନାଚନ୍ତି । ନେପଥ୍ୟରୁ ସଂଗୀତ ଗାନ କରାଯାଇଥାଏ । ବଛା ବଛା ଗାୟକ ଗାୟିକା ବାଦ୍ୟଯନ୍ତ୍ର ସହିତ ଗୀତ ଗାଆନ୍ତି । ଗୋଟିଏ ଖୋଲାମଞ୍ଚରେ ନାଚ ହୁଏ । ଗୋଟିଏ ଦଳ ୧/୨ଘଣ୍ଟା ନାଚିଲାପରେ ଅପସରି ଯାଆନ୍ତି । ନୂଆ ଦଳଟିଏ ନାଚ ଆରମ୍ଭ କରନ୍ତି । ମୁଖ୍ୟତଃ ଯୁବତୀ ଓ କିଶୋରମାନଙ୍କର ସମବୟସୀ ଦଳରେ ଥାଆନ୍ତି । ଗୋଟିଏ କିଶୋରୀମାନଙ୍କ ଦଳରେ ୧୫/୨୦ ଜଣ କିଶୋରୀ ଥାଆନ୍ତି ଓ ସେମିତି ଯୁବତୀ ଦଳରେ ବି ଥାଆନ୍ତି । ବିଭିନ୍ନ

ବେଶଭୂଷା ସହିତ ଫୁଲରେ ମଧ୍ୟ ଭୂଷିତ ହୋଇଥାଆନ୍ତି । ନାଚମଣ୍ଡପକୁ କଲେକ୍ଟରଙ୍କୁ ନିମନ୍ତ୍ରଣ ଆସେ । କଟକ, ଭୁବନେଶ୍ୱରର ଦୁର୍ଗା ମଣ୍ଡପ ଭଳି, ସହରର ବିଭିନ୍ନ, ଅଞ୍ଚଳର, ସାହିର ମଣ୍ଡପସବୁ ଥାଏ । ରାତି ୧୦ଟାପରେ ଖିଆପିଆ ସାରି ଆମେ ଗୁରୁପ୍ରସାଦ ସହିତ ନାଚମଣ୍ଡପକୁ ଯାଉ । ଯିବା ଓ ଫେରିବା ବାଟରେ ଦେଖୁ ଯେ ଦଳ ଦଳ ଝିଅ ସଜବାଜ ହୋଇ ରାସ୍ତାରେ ଚାଲିଥାଆନ୍ତି- କିଏ ନାଚିବାକୁ କିଏ ବା ଦେଖିବାକୁ, କିଏ ବା ନୃତ୍ୟମଣ୍ଡପରୁ ଲେଉଟାଣି ଘରକୁ ।

ଆମେ କଥାବାର୍ତ୍ତା ହଉ । ମୋ ସାଙ୍ଗରେ ଥାଆନ୍ତି ପାପାନାନୀ-କହନ୍ତି,'' ଦେଖିଲ, ଆମ କଟକ ଭୁବନେଶ୍ୱରରେ ଏମିତି ହୋଇପାରନ୍ତା ? ଏତେ ରାତିରେ କେବଳ ଝିଅମାନେ ଯିବାଆସିବା କରିପାରନ୍ତେ ?'' ମୁଁ ଯୋଡ଼ିଦିଏ-''କୋଉଠି କାହିଁ ତ ଗୋଟିଏ ପୁଅପିଲାକି ଯୁବକ କି ମଧ୍ୟ ବୟସ୍କ ଦିଶୁନାହାନ୍ତି, ଅଶ୍ଳୀଳ ମନ୍ତବ୍ୟକାରୀମାନେ ଗଲେ କୁଆଡ଼େ ? ଆମର ସେଠି ତ ସନ୍ଧ୍ୟା ହେଲେ ଘରୁ ବାହାରିବାକୁ ଡର ।'' ଯା'ହଉ, ଗୁଜୁରାଟର ଅବସ୍ଥା ବହୁତ ଭଲ । ଏଠି ମଦ୍ୟ ନିଷେଧ ହୋଇଚି । କେହି ମଦଖାଇ ପାରିବେ ନାହିଁ । ମଦଦୋକାନ ତ ନାହିଁ । ଆମେ ଗଲାବେଳେ ଜଣେ ଯାତ୍ରୀ ଟ୍ରେନରେ ଗୋଟେ ହ୍ୱିସ୍କି ବୋତଲରେ ପିଇବା ପାଣି ନେଇଥିଲେ । ମଦ ବୋତଲ ପାଣିବୋତଲ ରୂପେ ବ୍ୟବହାର କରାଯାଇଥାଏ । ରେଲୱେ ପୋଲିସ୍ କମ୍ପାଟମେଣ୍ଟରେ ପଶି, ସେ ଭଦ୍ର ବ୍ୟକ୍ତିଙ୍କୁ ବାଧ୍ୟ କଲେ ବୋତଲଟି ଫିଙ୍ଗି ଦବାକୁ । ମଦ୍ୟ ନଥାଉ, ଏ ବୋତଲ ବ୍ୟବହାର ବି ନିଷିଦ୍ଧ । ଯା'ହଉ, ନିଶା ନିବାରଣର ପ୍ରକୃତ ସଫଳତା ଏଠାରେ ଦେଖିବାକୁ ମିଳିଲା । ଆମର ଏଠି ଯେପରି ଛକଜାଗାମାନଙ୍କରେ, ପାନ ଦୋକାନରେ ଭେରେସାଟୋକଙ୍କ ଭିଡ଼, ଅର୍ଥପୂର୍ଣ୍ଣ ହସ, ଅଶୋଭନୀୟ ଇଂଗିତ, କଥାବାର୍ତ୍ତା ଚାଲେ, ସେଠାରେ ଏତେ ରାତିରେ ବି ସେମିତି କୋଉଠି ଦେଖାଯାଏ ନାହିଁ ।

ଏପରିକି ଫେରିବା ବାଟରେ, ଆମେ ଜୁନାଗଡ଼ରୁ ଅହମଦାବାଦ କ୍ୟାଣ୍ଟରରେ ଆସୁଥାଉ । ରାତି ଅଧରେ ବିଭିନ୍ନ ଷ୍ଟପେଜରେ ସ୍ତ୍ରୀଲୋକମାନେ, ଝିଅମାନେ ବାହାରକୁ ଅନ୍ଧାର ଜାଗାକୁ ପରିସ୍ରାକରି ଯାଉଥାଆନ୍ତି । ସଙ୍ଗରେ ପୁରୁଷଲୋକ ନ ନେଇ । ଏ ସବୁ ଦେଖି ଗୁଜୁରାଟର ଜନସାଧାରଣଙ୍କ ପ୍ରତି ଓ ଶାସନ ବ୍ୟବସ୍ଥା ପ୍ରତି ବହୁତ ସଂଭ୍ରମ ଆସିଥିଲା । ଏମିତି ଗୋଟିଏ ରାଜ୍ୟ, ଯେଉଁଠି ଅଧରାତିରେ ଝିଅମାନେ ନିର୍ଭୟରେ ରାସ୍ତାରେ ଯିବା ଆସିବା କରିପାରୁଛନ୍ତି । ଆମେ ସ୍ଥିରକଲୁ ଯେ ଏ ସବୁ ସେଇ ମଦନିବାରଣର ଫଳ । ମଦ୍ୟପାନ କରି ବ୍ୟକ୍ତି ହିତାହିତ ଜ୍ଞାନଶୂନ୍ୟ ହୋଇପଡ଼େ ଓ କୁକାର୍ଯ୍ୟ କରେ । ତା'ନଥିବାରୁ ଏଠାରେ ରାସ୍ତାଘାଟର ଜୀବନ ବେଶ୍ ସୁଶୃଙ୍ଖଳ । ଆଜି ଯେତେବେଳେ ସମ୍ବାଦପତ୍ରରୁ ବାବା କେଶବାନନ୍ଦଙ୍କ ଆଶ୍ରମ ସଂପର୍କରେ ପଢ଼ିଲି ସେଠାକାର କୁକାର୍ଯ୍ୟ ଓ ଜଘନ୍ୟଲୀଳାର ବିବରଣୀ ଜାଣିବାକୁ ପାଇଲି, ବିଗତବର୍ଷର ମୋର ସେଇ ମଧୁର ଆଶ୍ୱାସ ଉପରେ କିଏ ଯେମିତି ଟଷ୍ଣୁନିଆଁ ଗଦାଏ ଅଜାଡ଼ିଦେଲା । ଦ୍ୱାରକା ଧାମରେ

ମନ୍ଦିରର ଅତି ନିକଟରେ ଏଇ ଆଶ୍ରମ। ଆଶ୍ରମର ମଠାଧୀଶ ପୁଣି ସାଧାରଣରେ ସମ୍ମାନିତ- ଅନେକ ଲୋକ ହିତକର କାର୍ଯ୍ୟର କର୍ତ୍ତା ସିଏ। ଅନାଥାଶ୍ରମ ପରି ସେ ମହିଳାମାନଙ୍କ ବାସ ସଂସ୍ଥାନ କରିଛନ୍ତି- ଯେଉଁଠି ନିରାଶ୍ରୟା କିଶୋରୀ ଓ ମହିଳାମାନେ ବସବାସ କରନ୍ତି। ସେମାନଙ୍କ ପାଇଁ ଶିକ୍ଷା ଓ କର୍ମସଂସ୍ଥାନ ବ୍ୟବସ୍ଥା ମଧ୍ୟ ତାଙ୍କ କାର୍ଯ୍ୟର ଅନ୍ତର୍ଗତ। ବାବା ଏତେ ବଡ଼ ଅନୁଷ୍ଠାନ ଓ ମହତକର୍ମ ପାଇଁ କ୍ଷମତାଶାଳୀ ଧନୀଲୋକଙ୍କ ଅନୁଦାନ ଓ ଅନୁକମ୍ପା ଲାଭ କରିଥିଲେ। କ୍ଷମତାପନ୍ନ ଲୋକେ ବାବାଙ୍କର ଅତି ଆପଣାର ହୋଇଥିବେ, ଫଳତଃ ସେଠାରେ ଏଇ ଅସହାୟା କିଶୋରୀମାନେ ବାବାଙ୍କ ସମେତ କ୍ଷମତାପନ୍ନ ଲୋକଙ୍କ ଯୌନଲାଳସାର ଶିକାର ହୋଇଥିବେ।

ଅସହାୟା କିଶୋରୀ ଗୁଡ଼ିକ ଜୀବନକୁ ଚିହ୍ନୁ ନଚିହ୍ନୁଣୁ, ଯୌବନର ଯାଦୁକୁ ଶରୀରରେ ଅନୁଭବ କରୁ ନ କରୁଣୁ ଏଇ କୁତ୍ସିତ ଯୌନପିପାସୁଙ୍କର ବଳାତ୍କାର ଭୋଗିଥିବେ ଓ ମାତୃତ୍ୱ କ'ଣ ବୁଝିବା ଆଗରୁ ଅବାଞ୍ଛିତ ମାତୃତ୍ୱ ଲାଭ କରିଥିବେ ଓ ଗର୍ଭପାତ କରାଇଥିବେ। ଆଦ୍ୟ ଯୌବନରେ ମଣିଷର କୁତ୍ସିତ ଲାଳସା ଦ୍ୱାରା ଦଳିତ ଓ ଶୋଷିତ ହୋଇ ଏମାନେ ସାରା ଜୀବନ ଅସହାୟତା ଓ ତିକ୍ତତା ଭିତରେ କଟାଇଥିବେ। ବାବାଙ୍କ ଆଶ୍ରମର ସବୁ ଲୋକହିତକର କାର୍ଯ୍ୟର ଅନ୍ତରାଳରେ ଏହି ଯୌନଲୀଳାର ବୀଭତ୍ସତା ଚାଲିଥିବ। ସୁରାର ବ୍ୟବହାର ବାହାରକୁ ଦୃଶ୍ୟହେଉ ନଥିଲେ ବି ସୁରାଠାରୁ ବହୁଗୁଣରେ ବିକଟ ଏକ ପିପାସା। ମଣିଷର ଧର୍ମକୁ, ଶାସନକୁ, ଭକ୍ତିଭାବକୁ ଓ ମାନବିକ ସଂପର୍କକୁ ବିକୃତ ଓ ଅନ୍ତଃସାର ଶୂନ୍ୟ କରିଚାଲିଥିବ।

ଘଟଣାକ୍ରମେ କିଶୋରୀଟିଏ ଗର୍ଭପାତ କରି ମୃତ୍ୟୁବରଣ କଲା, ତା'ର ବାପ ମା ପୋଲିସରେ ଖବର ଦେଲେ- ଅଭିଯୋଗ କଲେ। ନଚେତ୍ ଅସହାୟା ଝିଅମାନେ କ'ଣ ବା କରିପାରନ୍ତେ ? ଏହି ତଥାକଥିତ ମାନ୍ୟଗଣ୍ୟ ଲୋକଙ୍କ କୁତ୍ସିତ ନଗ୍ନତାକୁ ସେ କାହା ସାମ୍ନାରେ ପ୍ରକାଶ କରନ୍ତେ ? କିଏ ବା ବିଶ୍ୱାସ କରନ୍ତା ଏଇ ଦରିଦ୍ର, ଅନାଥାମାନଙ୍କ ନିର୍ଯ୍ୟାତନାର ବାସ୍ତବ କାହାଣୀକୁ ? ଆଉ ଯେଉଁ ଭକ୍ତାମାନେ ଆଶ୍ରମକୁ ଆସନ୍ତି ଓ ଏହି ଲାଳସାର ଶିକାର ହୁଅନ୍ତି, ସେମାନଙ୍କ ଭିତରୁ କେହି ହୁଏତ ପ୍ରତିବାଦ କରିପାରିଥାଆନ୍ତେ- ମାତ୍ର ସେମାନଙ୍କର ନଗ୍ନଚିତ୍ର ନିଆଯାଇ ତାଙ୍କୁ ବ୍ଲାକମେଲ କରାଇବାର ଧମକ୍ ଦିଆଯାଇଥିବ। ପୁଣି ମୁଖଲଜ୍ଜ୍ୟା ତ ଅଛି। ବାହାରେ ପ୍ରକାଶ କଲେ ମାନଇଜ୍ଜତ ଦି'କଡ଼ାର ହୋଇଯିବ, ଏଥିପାଇଁ ଏହି ନାରକୀୟ ଲୀଳା ଧର୍ମ ଓ ଲୋକସେବା ନାମରେ ଜୟପତାକା ତଳେ ନିଃସଂକୋଚରେ ପ୍ରସାରିତ ହୋଇଚାଲିଥିବ।

ଯେଉଁ ଭୂମିରେ ସେଦିନ ଦଳ ଦଳ ଝିଅ ବେଶଭୂଷା ଆଡ଼ମ୍ବରରେ ରାତି ବାରଟା ଗୋଟାକରେ ସହର ରାସ୍ତାରେ ଯିବା ଆସିବା କରୁଥିଲେ, ସେଇ ଭୂମିରେ, ବିଳାସକକ୍ଷରେ କିଶୋରୀଟିଏ ଲୁଣ୍ଠିତା ହେଉଥିଲା, ତା'ର ଆତ୍ମା ହାହାକାର କରୁଥିଲା ! ଲୁଣ୍ଠନାକରୀ ସମାଜର ବଡ଼ପଣ୍ଡା, ପିତୃପ୍ରତିମ ଭଦ୍ରଲୋକଙ୍କର ଯୌନବୁଭୁକ୍ଷା ଚରିତାର୍ଥତା ବ୍ୟତୀତ

କିଶୋରୀଟିର ଅନ୍ୟକିଛି ଦାୟ ନ ଥିଲା । ଗୋଟିଏ ନୁହଁ, ଶହ ଶହ କିଶୋରୀ ଲୁଣ୍ଠିତା ହଉଥିଲେ । ଯୋଜନାବଦ୍ଧ ଭାବରେ ଏଇ ଲୁଣ୍ଠନ ଚାଲିଥିଲା । କିଏ ଜାଣେ, ଯାହା ତଥ୍ୟ ପ୍ରକାଶ ପାଇଛି, ସତ୍ୟ ତା'ଠାରୁ ଆହୁରି କେତେ ବୀଭତ୍ସ ଓ ଭୟଙ୍କର ହେଇ ନ ଥିବ !

ନିରାଶ୍ରୟା ଝିଅମାନଙ୍କ କଥା ଛାଡ଼ନ୍ତୁ । ସଂଭ୍ରାନ୍ତ ଝିଅମାନେ, ଝିଅଙ୍କ ଅଭିଭାବକମାନେ କାହିଁକି ଏପରି ଘଟଣାକୁ ସହିଯାଆନ୍ତି ? କେଉଁ ତଥାକଥିତ ସମ୍ମାନର ଲୋଭରେ ଅସମ୍ମାନକୁ ହଜମ କରିଦିଅନ୍ତି ? ଫଳତଃ ଏକ ବୃହତ୍ତର, ଘୃଣ୍ୟ ଶୋଷଣକୁ ରାସ୍ତା ଛାଡ଼ି ଦିଅନ୍ତି ? ଝିଅମାନେ ଯଦି ସ୍ୱଚ୍ଛ ଓ ନିର୍ଭୀକ ହୁଅନ୍ତେ, ଧର୍ମାନ୍ଧତା ଓ ଅର୍ଥଲୋଭକୁ ଘୃଣା କରନ୍ତେ, ତେବେ ଏଇ ତଥାକଥିତ ଭଦ୍ରଲୋକଙ୍କ ଅନ୍ତରାଳରେ ଥିବା ପଶୁତ୍ୱକୁ ସଂହାର କରିପାରନ୍ତେ । ଜୀବଜଗତରେ ତ ଅନ୍ୟ କୌଣସି ପ୍ରାଣୀ ଭଣ୍ଡତା ଜାଣେନା- କେବଳ ମଣିଷ ହିଁ ଭଣ୍ଡତାର ଅଧିକାରୀ । ଏକ ଦିଗରେ ତା'ଠାରେ ପଶୁତ୍ୱ ଓ ଅନ୍ୟ ଏକ ଦିଗରେ ତା'ଠାରେ ଭଣ୍ଡତା । ଆଜିର ସମାଜ ଏଭଳି ଭଦ୍ର ଓ ସାଧୁ ବୋଲାଉଥିବା ଭଣ୍ଡମାନଙ୍କୁ ନେଇ କେତେ ରୁଗ୍ଣ, କେତେ ନୀତିହୀନ ହୋଇନପଡ଼ିଛି !

ଲୁଣ୍ଠିତା ଝିଅମାନେ ନିଜକୁ ମର୍ଯ୍ୟାଦାର ଚିରାଓଢ଼ଣୀତଳେ ନ ଢ଼ାଙ୍କି ଏହି ରୋଗର ନିରାକରଣ ପାଇଁ ଆଗେଇ ଆସିବା ଛଡ଼ା ଅନ୍ୟ ପନ୍ଥା ନାହିଁ । ଶିକ୍ଷିତା ସଂଭ୍ରାନ୍ତ ଝିଅମାନେ ଏଭଳି କୁତ୍ସିତ ବ୍ୟକ୍ତିତ୍ୱର ଅସଲ ରୂପକୁ ପ୍ରକାଶ କରିବାରେ କୁଣ୍ଠାବୋଧ କରିବା ହେତୁ ଆଜି ଏକ ବିଂଶ ଶତକର ଅବ୍ୟବହିତ ପ୍ରାକ୍‌କାଳରେ ହିଁ ବିଳାସର ସାମଗ୍ରୀ ରୂପେ ବ୍ୟବହୃତ ହେଉଛନ୍ତି ।

ଦ୍ୱାରକା ରାଜା ମର୍ଯ୍ୟାଦାବନ୍ତପୁରୁଷ ଶ୍ରୀକୃଷ୍ଣ ନାହାନ୍ତି । ଉପଯୁକ୍ତ ବିଚାର ଓ ନ୍ୟାୟ ପ୍ରତିଷ୍ଠା କରିବାର ପ୍ରତିଭୂଗଣ ନିଜେ ରୁଗ୍ଣ ଓ ଦୁର୍ବଳ । କିଏ ଆଜି ଦ୍ୱାରକାର ଦାୟିତ୍ୱ ନବ ? ଯଥାର୍ଥରେ ଜନସେବା, ଅସହାୟାଙ୍କର ମଙ୍ଗଳକର ଥଇଥାନ ପାଇଁ କିଏ ଆଗେଇ ଆସିବ ? ଗଣତନ୍ତ୍ରର ଯୁଗରେ ରାଜା ପ୍ରକୃତପକ୍ଷେ ଅନେକ । ବାହାରକୁ 'ଏକ' ଦେଖାଗଲେ ବି ସେହି 'ଏକ' ଅନେକଙ୍କ ନିକଟରେ ଉତ୍ତରଦାୟୀ । ଅଥଚ, ରାଜତନ୍ତ୍ରଠାରୁ ଏଇ ଗଣତନ୍ତ୍ରର ବୀଭତ୍ସତା କୌଣସି ପରିମାଣରେ କମ୍ ନୁହେଁ । ଆଜି ଖାଲି ଏଇ ନାରକୀୟକାଣ୍ଡ ବିଲୋପପାଇଁ ପ୍ରାର୍ଥନାକରିବା ଯଥେଷ୍ଟ ନୁହେଁ ଏହାର ନିରାକରଣ ଦିଗରେ ପଦକ୍ଷେପ ନେବା ଜରୁରୀ ହୋଇ ପଡ଼ିଛି । ଗୋଟିଏ ଦ୍ୱାରକାରେ ଗୋଟିଏ ଆଶ୍ରମରେ ନୁହେଁ, ଭାରତର ଅନେକତ୍ର ଏଇ ଜଘନ୍ୟକାଣ୍ଡ ଘଟିଚାଲିଛି । ଜାରାଥୁଷ୍ଟ୍ରା କହିଥିଲେ "The hands that act is greater than the hands that pray"

କେଉଁ ଦିବ୍ୟପୁରୁଷ ଧରାବତରଣ କରିବ, କେବେ ଏହି ଗଣ ନାରକୀୟତାର ବିଲୋପହେବ ? ଭାରତ ଭୂମିର ଅନ୍ୟତମ ପବିତ୍ରପୀଠ ଦ୍ୱାରାବତୀପୁରର ଏଇ କୁତ୍ସିତ କାର୍ଯ୍ୟ, ଆଜି, ସଚେତନ, ବିଚାରଶୀଳ ମଣିଷକୁ ବିବ୍ରତ କରି ପକାଉଛି । ଧର୍ମ, ସମାଜସେବା ମହତ୍‌ବାଣୀର ଅନ୍ତରାଳରେ ସଇତାନ ଯେ ଅଟ୍ଟହାସ କରୁଛି- ଏ ସନ୍ଦେହ ଅମୂଳକ ହୋଇରହିନାହିଁ ।

# ଆଲୋକ, ଛାୟା

*(କନ୍ୟା ଭ୍ରୁଣ ସଂପର୍କରେ)*

ଭାରତୀୟ ନାରୀର ପରମ୍ପରା ବଳିଷ୍ଠ, ଅତୀତ ମଧ୍ୟ ସମୃଦ୍ଧ । କେବେ ସେ ବେଦର ସୂକ୍ତ ରଚନା କରିଥିଲା- କେବେ ବୀରବେଶରେ ରଣଭୂମିରେ ଅବତୀର୍ଣ୍ଣ ହୋଇଥିଲା । ମାତ୍ର ଆଜି ତା'ର ଅବସ୍ଥାରେ ଭୟଙ୍କର ପରିବର୍ତ୍ତନ ଆସିଛି । ସମାଜ ବ୍ୟବସ୍ଥାର ପରିପ୍ରେକ୍ଷୀରେ ସେ ଆଜି ପଦାକୁ ବାହାରିଛି । ପୁରୁଷ ସହ ପ୍ରତିଯୋଗିତାରେ ସମାନ ଯୋଗ୍ୟତା, ସ୍ଥଳବିଶେଷରେ ଅଧିକ ଯୋଗ୍ୟତା ମଧ୍ୟ ପ୍ରଦର୍ଶନ କରିଛି । ଦେଶ ଶାସନଠାରୁ, ଉଡ଼ାଜାହାଜ ଚାଳନା, ପୋଲିସ ଅଫିସର, ବିଦେଶ ସଚିବ ସବୁ ସ୍ତରରେ ସେ ନିଜର ସାମର୍ଥ୍ୟ ପ୍ରତିପାଦନ କରିପାରୁଛି । ମାତ୍ର, ଭାରତୀୟ ସମାଜ ବ୍ୟବସ୍ଥାରେ ତାର ଆଲୋକ ଯେତିକି ଦୀପ୍ତ, ଛାୟା ତା'ଠାରୁ ଅଧିକ ପ୍ରଶସ୍ତ । ବରଂ ଆଲୋକଠାରୁ ଛାୟା ସୁଦୂରପ୍ରସାରୀ ଓ ମର୍ମାନ୍ତିକ । ଏହାର କେତେ ଗୁଡ଼ିଏ କାରଣ ମଧ୍ୟରୁ ଭାରତର ଅର୍ଥନୀତିକ ବ୍ୟବସ୍ଥା କେତେକାଂଶରେ ଦାୟୀ ଓ ଅନ୍ୟ କାରଣ ମଧ୍ୟରେ ମଣିଷର ଅର୍ଥଲୋଭ ଓ କାମୁକତା ମଧ୍ୟ ବିଦ୍ୟମାନ ।

ବିଂଶ ଶତକର ଶେଷପାଦରେ ମଣିଷ ଏତେ ବସ୍ତୁସର୍ବସ୍ୱ ହୋଇଛି ଯେ, ମାନବିକତାର ଗଳାରେ କୁଠାର ଚଳାଇବାକୁ ସେ ଦ୍ୱିଧାଗ୍ରସ୍ତ ହେଉନାହିଁ । ଅତୀତରେ ଭାରତ ଅର୍ଥ ଅପେକ୍ଷା ଅଧ୍ୟାତ୍ମଚେତନାକୁ ଅଧିକ ପ୍ରାଧାନ୍ୟ ଦେଇ ଥିଲା । ବର୍ତ୍ତମାନ ଯୁଗରେ ଅର୍ଥ ହେଉଛି ମୁଖ୍ୟ । ଏପରିସ୍ଥଳେ ଯୌତୁକ ରାକ୍ଷସର ଲେଲିହାନ ଜିହ୍ୱା ଲମ୍ବି ଚାଲିଛି ଓ କାମୁକତା ତଥା ପାଶବିକତାର ଅନ୍ତ ନାହିଁ । ଅଳ୍ପଦିନ ତଳେ ଏପରି ଗୋଟିଏ ସମ୍ବାଦ ପ୍ରକାଶ ପାଇଥିଲା ଓ ଅନୁସନ୍ଧାନଦ୍ୱାରା ସତ୍ୟ ବୋଲି ପ୍ରମାଣିତ ହୋଇଥିଲା । ଗାନ୍ଧିଜୀଙ୍କ ପଟ୍ଟଶିଷ୍ୟ ବୃଦ୍ଧ ହରିବଲ୍ଲଭ ପାରିଖ ଅନାଥାଶ୍ରମର ଅନ୍ତେବାସିନୀମାନଙ୍କୁ ଯୌନନିର୍ଯ୍ୟାତନା ଦେଉଥିଲେ । ଏପରି ଘଟଣା ଆମ ବିଶ୍ୱାସମୂଳରେ ନିର୍ମମ କୁଠାରାଘାତ ଭିନ୍ନ ଅନ୍ୟ କିଛି ନୁହେଁ ।

ଭାରତୀୟ ନାରୀ ଆପଣାର ଧୈର୍ଯ୍ୟ, ସାହସ, ଅଧ୍ୟବସାୟ ଓ ସାଧନାବଳରେ ଅନେକ କିଛି କୃତିତ୍ୱର ଅଧିକାରିଣୀ ହୋଇପାରିଛି, ମାତ୍ର ସମାଜର ଅର୍ଥଲାଳସା ଓ କାମଲାଳସାର ଶିକାର ହେବାକୁ ସେ ବାଧ୍ୟ ହେଉଛି ।

ଗତକାଲି ସାହିତ୍ୟ ପତ୍ରିକା 'ସାବିତ୍ରୀ'ର ଉନ୍ମୋଚନ ଉତ୍ସବରେ କେତେକ ବକ୍ତା ନାରୀର ବିକାଶ ସମ୍ପର୍କରେ ଉତ୍ସାହୋଦ୍ଦୀପକ ବକ୍ତବ୍ୟ ପ୍ରଦାନ କଲେ । 'ସାବିତ୍ରୀ' ହେଉଛନ୍ତି ଆଦର୍ଶ- ସେ ନିଜ ସାମର୍ଥ୍ୟବଳରେ ସୁବର୍ଣ୍ଣ ଦ୍ୱାର ଖୋଲି ଦେଇଛନ୍ତି- ନାରୀ ନିରହଙ୍କାର ହେଲେ ଓ ସ୍ୱାଭିମାନ ବଜାୟ ରଖିଲେ ଅନେକ ମର୍ଯ୍ୟାଦାର ଅଧିକାରିଣୀ ହୋଇପାରିବ । ଏ ସବୁ କଥା ସତ । ହେଲେ ବି, କାହିଁକି ସେତିକି ବେଳେ ମୋର ମନେପଡ଼ିଗଲା ଅନୁପମା କଥା । ଲାଗିଲା, ନାରୀହେବାର ଅସହାୟତାର ନମୁନା ହେଇପାରେ ଅନୁପମା ।

ଆମ ସାହିର ନିମ୍ନବିତ୍ତ ସ୍ତ୍ରୀଲୋକଟିଏ ସେ- ତା'ର ତିନୋଟି ଝିଅ । ତା'ସ୍ୱାମୀ ତାକୁ ଓ ଝିଅଙ୍କୁ ମାଡ଼ମାରି ନିକାଳି ଦେଇଛି ଘରୁ । ''ଖାଲି ଝିଅଜନ୍ମକରୁଛି, ୟେ ସ୍ତ୍ରୀ ମୋର ଲୋଡ଼ା ନାହିଁ ।'' ଏହାର ପୃଷ୍ଠପଟରେ ଅଛି ସ୍ୱାମୀର ମଦ୍ୟପାନ ଓ ଅନ୍ୟନାରୀ ସଂସର୍ଗ । ଅନୁପମା କରିବ କ'ଣ ? ଦୁଇବର୍ଷ ତଳେ ଥରେ ଏମିତି ତଡ଼ା ଖାଇଥିଲା । କେତେ ନେହୁରାହୋଇ ଘରକୁ ସ୍ୱାମୀପାଖକୁ ଫେରିଥିଲା । ଏବେ, ତା'ଆତ୍ମାକୁ ଭାରି ବାଧୁଚି, ସ୍ୱାମୀ ପାଖକୁ ଫେରିବାର ଇଚ୍ଛା ନାହିଁ, ମାତ୍ର ତିନୋଟି ଝିଅ ସହିତ ସେ ଆଶ୍ରୟ ନେବ କେଉଁଠି ? ବାପଘରେ ସେପରି ସାମର୍ଥ୍ୟ ନାହିଁ ବା ଆଗ୍ରହ ନାହିଁ ।

ଅନୁପମା ଯଦି ଝିଅ ତିନୋଟିଙ୍କୁ ଛାଡ଼ିଦେଇ ପାରନ୍ତା, ହୁଏତ ବଞ୍ଚିଯିବା ପାଇଁ ଖୋରାକ ମିଳିବା ଅଭାବ ହୁଅନ୍ତା ନାହିଁ । ବୟସ ଅଛି, ଖାଇଲେ ପିଇଲେ ଦେହରେ ବଳ ବି ଆସିବ । କିନ୍ତୁ ୧୦।୭।୩ ବର୍ଷର ତିନିଗୋଟି ଝିଅ କୋଉଠି ରହିବେ- କାମ କରି ପେଟ ପୋଷିବା ଭଳି ତ ହେଇନାହାନ୍ତି ସେମାନେ, ରହିବେ ବି କାହା ପାଖରେ ? ସେ ମା- ଭାରତୀୟ ମା'-ସନ୍ତାନ ପାଇଁ ଆତ୍ମବଳି ଦେବା ତାର ଧର୍ମ । ଏଥର ବି ହୁଏତ ସ୍ୱାମୀର ଗୋଡ଼ହାତ ଧରି ରହିବା ଛଡ଼ା ଅନ୍ୟ ଗତି ମିଳିବ ନାହିଁ ତାକୁ । ମାତ୍ର ପୁଣି ଯଦି କଥାକଥାକେ ସ୍ୱାମୀ ତଡ଼ିଦିଏ ? ମାଡ଼ମାରି ନିକାଳି ଦିଏ ? ଚାକିରୀପାଇଁ ତାର ଯୋଗ୍ୟତା ନାହିଁ, ଆଜିକାଲି ଚାକିରୀର ସୁଯୋଗ ବି ନାହିଁ । ତା' ସମସ୍ୟାର ସମାଧାନ କେଉଁଠି ? କେତେ କେଜାଣି ଅନୁପମା, ଦୁଃଖ ଅପମାନରେ ଛଟପଟ ହୋଇ ରହିଛନ୍ତି । ନାରୀ ସଶକ୍ତିକରଣ ସମ୍ଭବରରେ ନାରୀଜାତିର ବିକାଶର ବିଜ୍ଞାପନରେ ଅନୁପମାର ଦୀର୍ଘଶ୍ୱାସର ହିସାବ ରଖୁଚି କିଏ ?

ଏବେ ଖବର କାଗଜରେ ବାହାରିଛି, ସହରାଞ୍ଚଳରେ ଝିଅଜନ୍ମ ହେଉଛନ୍ତି, ତୁଳନାତ୍ମକ ଭାବେ କମ୍ । ବଡ଼ ଚିନ୍ତାର ବିଷୟ । ସହରର ଶିକ୍ଷିତ ବାପମାଆ ଡାକ୍ତରୀ ପରୀକ୍ଷା କରି କନ୍ୟାଭ୍ରୁଣ ହତ୍ୟା କରିଦେଉଛନ୍ତି । ଏହାର କିଛି ପ୍ରତିକାର ହେବା ଜରୁରୀ ଦରକାର । ଏ ସମ୍ବାଦ ପଢ଼ି ମୁଁ ରୁନୁକୁ କହୁଥିଲି, ''ଏତେ କୁମ୍ଭୀରକାନ୍ଦଣା କାହିଁକି ? କ'ଣ ପାଇଁ ଝିଅ ଜନ୍ମ ହେବେ ? ମାଆ ନହେଲେ ବାପ ବା ଦୁହେଁ ଯାକ ଯେତେବେଳେ ଅନିଚ୍ଛୁକ, ଆଜିକାଲି ସେମାନେ ଝିଅକୁ ପ୍ରାଣରେ ମାରିଦେବାର ଖବର ମଧ୍ୟ ମିଳୁଛି । ଝିଅ କ'ଣ ଜନ୍ମ ହେବେ ଧର୍ଷିତା ହେବାକୁ, ନିର୍ଯ୍ୟାତିତା ହେବାକୁ ? କେତେଜଣ ଛାତିରେ

ହାତଦେଇ କହିପାରିବେ ଯେ, ସେମାନେ ତାଙ୍କ ସ୍ତ୍ରୀମାନଙ୍କୁ ଆଦର ସମ୍ମାନ କରନ୍ତି ? ସ୍ତ୍ରୀ ନ ହେଲେ ନ ଚଳେ, ଏଇଟା ସତ, ତଥାପି ସାମାନ୍ୟ ଭୁଲ ତ୍ରୁଟି, ଯୌତୁକ ଦାବୀ, ଏଥିରେ କେତେ ନିର୍ଯ୍ୟାତନା ଭୋଗିବ ଝିଅଟି ? ଭଲ ହୋଇଛି, ଝିଅ ନ ଜନ୍ମନ୍ତୁ । ଏ ନିଷ୍ଠୁର ବ୍ୟଭିଚାରୀ ପୁରୁଷଙ୍କୁ ସ୍ତ୍ରୀଟିଏ ନମିଳୁ'' ।

ରୁନୁ ଆଶ୍ଚର୍ଯ୍ୟ ହେଇ ଅନାଇଛି ମୋ ମୁହଁକୁ । ''ଯେ କି କ୍ରୋଧ ତୋର, ମୁହଁ ଲାଲ୍ ପଡ଼ିଗଲାଣି, ଆଖି ଛଳ ଛଳ ! ସତେରେ ମୋତେ ବି ବଡ଼ ଦୁଃଖ ଲାଗୁଛି । ନାରୀ ସହିଛି ବୋଲିସିନା ଯେ ସୃଷ୍ଟି ରହିଛି । ଜଣେ ବିଖ୍ୟାତ ଲେଖକ କହିଥିଲେ ''ନାରୀ ହିଁ ଦେବତାଙ୍କୁ ଜନ୍ମ ଦିଏ'' ଦେଖି, ସତକଥା, ଝିଅ କେବେ ସରିବେ ନାହିଁକି, ମରିବେ ନାହିଁ । ସହରରେ ନହେଲେ ଗାଁରେ ଜନ୍ମ ହେବେ, ଦୁଃଖ ନିର୍ଯ୍ୟାତନା ଭୋଗିବେ । ମଣିଷ ଜାତିର ଅପ୍ରତିହତ ଜୀବନଧାରାକୁ ଆଗକୁ ବଢ଼ାଇନେବା ପାଇଁ ଆଉ ଯେ ଅନ୍ୟ ଉପାୟ ନାହିଁ ।



# ଅତିକ୍ରାନ୍ତ ନୁହେଁ

ଅତୀତ ଅତିକ୍ରାନ୍ତ ନୁହେଁ । ବିତିଯିବାଦିନ, ଏଇ ଭୋଗୁଥିବା ଦିନମାନଙ୍କ ଭିତରେ ଛପି ରହିଥାଏ- ସେଗୁଡ଼ିକୁ ବି ଆୟତ୍ତାଧୀନ କରିପକାଏ ବେଳେବେଳେ । Let bygones be bygones- କେବେ ଅତୀତକୁ ପଛରେ ଛାଡ଼ିଯିବାର ବଳବତୀ ଇଚ୍ଛାରୁ ହୁଏ ତ ଏକଦା କହିଦିଆଯାଇଛି, ପୁଣି କେବେ କୁହାଯାଉଛି "Unborn tomorrow, dead yesterday" କିନ୍ତୁ ବିଗତକାଲି ଯେ ମରିଯାଇ ନାହିଁ- ସେଥିପାଇଁ ଶୋଚନା ନକରିବାକୁ ମଣିଷ ନିଜକୁ ବୁଝାଇ ଲାଗିଛି ସତ, କିନ୍ତୁ ଅତୀତକୁ ଅତିକ୍ରମ କରି ପାରି ନାହିଁ ବି । ସ୍ମୃତି ରୂପରେସେ ରହିଯାଇଛି ଜୀବନ୍ତ, ଯେମିତି ସେ ଆଜିର, ଗଲାକାଲିର ନୁହେଁ ।

ପ୍ରାଣୀମାନଙ୍କ ଭିତରେ ମଣିଷର ହିଁ କେବଳ ସ୍ମୃତି ଅଛି, ପ୍ରଖର ସ୍ମୃତି । ଯାହା ଅତୀତକୁ ଲିପିବଦ୍ଧ କରି ରଖେ, ଲିଭିଯିବାକୁ ଦିଏନା । ପ୍ରକୃତରେ ଯଦି ଅତୀତ ଅତିକ୍ରମ୍ୟ ହୋଇପାରନ୍ତା, ହୁଏତ ମଣିଷର କଳା, ଜ୍ଞାନ ତଥା ଭାବଜଗତରେ ତୁମୂଳ ପରିବର୍ତ୍ତନ ଘଟିଥାଆନ୍ତା । ସ୍ମୃତି ନ ଥିଲେ କଳାସୃଷ୍ଟି ନଥାନ୍ତା, ପୁଣି ମନସ୍ତାପ ମଧ୍ୟ ନଥାନ୍ତା । ବ୍ୟକ୍ତିଟି ଯେଉଁକାଳ, ଯେଉଁ ସ୍ଥାନ, ଯେଉଁ ଶକ୍ତିମାନଙ୍କ ସହ ସଂପୃକ୍ତ ଥାଏ, ତାର ସ୍ମୃତିରେ ସେ ସବୁ ସ୍ଥାନ ମାଡ଼ି ରହିଥାନ୍ତି । ତା'ଭିତରୁ ନିଜ ଅନ୍ତରାତ୍ମାସହ ଯାହାର ଯୋଗାଯୋଗ ନିବିଡ଼ ଓ ପ୍ରଭାବ ବଳିଷ୍ଠ- ତାହା ଜୀବନ୍ତ ହୋଇ ରହିଥାଏ - ଆଜିର, ବର୍ତ୍ତମାନର ପରି ଲାଗେ । ବର୍ତ୍ତମାନର ଦୃଶ୍ୟ ଉପରେ ଅତୀତର ଦୃଶ୍ୟ, ବର୍ତ୍ତମାନର ଘଟଣା ଉପରେ ଅତୀତର ଘଟଣା ଆରୋପିତ -ହୋଇଯାଏ । ଅତଏବ, ଘଟିଯାଇଥିବା ଘଟଣାକୁ ମଣିଷ ତତ୍କାଳର ଆଲୋକରେ ନଦେଖି ବର୍ତ୍ତମାନର ଆଲୋକରେ ଦେଖେ । ଦେଖେ- ସେଠାରେ କେତେ ଅବିଚାର, କେତେ ଭୁଲ, ଭ୍ରାନ୍ତି, କେତେ ଅନ୍ୟାୟ । କେତେ ନିଷ୍ଠୁରତା-ଯାହା ତାର ବର୍ତ୍ତମାନକୁ ଆକ୍ରାନ୍ତ ଓ ବାଧିତ କରେ । ମୂଳକଥା ହେଲା ମଣିଷର ଅନ୍ତରାତ୍ମା ଯେଉଁଠି ଆନନ୍ଦ ବା ବ୍ୟଥା ଲାଭ କରିଥାଏ, ସ୍ମୃତିରେ ତାହା ଅମଳିନ ରହିଯାଏ । ମଣିଷର ଥାଏ ବିଚାର ବୋଧ- ଥାଏ ଆତ୍ମନିରୀକ୍ଷା- ଆଉ ସେଇଥିପାଇଁ ଥାଏ ମର୍ମସ୍ତାପ । ଯଦି ଠିକ୍ ସମୟରେ ଠିକ୍ କଥାଟି କରିହୁଅନ୍ତା, ଠିକ୍ ସମୟରେ ଠିକ୍ ଘଟଣାଟି ଘଟନ୍ତା, ତା'ହେଲେ 'ମନସ୍ତାପ' ଶବ୍ଦଟି ସୃଷ୍ଟି ହେଇ ନଥାନ୍ତା । ମଣିଷ ଠିକ୍ ସମୟରେ ଠିକ୍ କଥାଟି

କହିପାରେନା, ଠିକ୍ କାମଟି କରିପାରେନା, ଅନ୍ୟ ଅର୍ଥରେ ଅତୀତରେ ଯାହା ଠିକ୍ ବୋଲି ମନେ ହୁଏ ବର୍ତ୍ତମାନ ତାହା ଭୁଲରୂପେ ପ୍ରତୀତ ହୁଏ । ତେଣୁ ଜୀବନସାରା ମଣିଷ ଧନ୍ଦି ହୁଏ, ମନେ ମନେ କଷ୍ଟ ପାଏ । ଯିଏ ଅନୁତାପକୁ 'ତୁଷାନଳ' କହିଥିଲେ ସେ କିଛି ମିଛ କହିନଥିଲେ । ଏହି ମନସ୍ତାପ ବା ଅନୁତାପ, କର୍ତ୍ତା ମଣିଷର ମନର ଅତଳରେ ତଷୁନିଆଁ ପରି ଦିକ୍ ଦିକ୍ ଜଳେ, କାହାରିକୁ ଦିଶେ ନାହିଁ, ଅଥଚ ଅନ୍ତର୍ଲୋକର ଆନନ୍ଦ, ଆଶ୍ୱସ୍ତି ଓ ସନ୍ତୋଷକୁ ଜାଳିପୋଡ଼ି ଛାରଖାର କରିଦିଏ । ଫଳତଃ ବାହ୍ୟଜୀବନରେ ମଧ୍ୟ ତାର ପାଉଁଶ ଛିଟିକି ପଡ଼େ । ମନର ସରାଗ ମରିଯାଏ, ଦୈନନ୍ଦିନ କାମ ଠିକ୍ ଭାବେ କରିହୁଏନା- ନୂଆ କିଛି କହିବାକୁ ବା ଭାବିବାକୁ ଆଗ୍ରହ ହୁଏନା ।

କିନ୍ତୁ ଏଇ ପଶ୍ଚାତ୍ତାପ ଦ୍ୱାରା କ'ଣ ସାଧିତ ହୋଇପାରେ ? ଯାହା ଘଟିଯାଇଛି, ଯେଉଁ ସମୟ ବହିଯାଇଛି ନଈ ସୁଅପରି, ସେତ ଆଉ ଲେଉଟି ଆସେନା, ବ୍ୟକ୍ତିକୁ ତ ଆଉଥରେ ବିଚାର-ମାର୍ଜିତ ଘଟଣାର ନାୟକ ହେବାକୁ ସୁଯୋଗ ମିଳେନା- ଅନେକ ସମୟରେ ନେଡ଼ିଗୁଡ଼ କହୁଣୀକୁ ବୋହିଯାଇ ସାରିଥାଏ । ଆଉ କିଛି ପ୍ରତିକାର କରି ହୁଏନା- ତଥାପି ଅନୁତାପ ଥାଏ ଥାଏ ହାହାକାର କିଛି, ଥାଏ ଭୁଲ କରିପକାଇଥିବାର ଗ୍ଳାନି-ମଣିଷ ସେ ସବୁଥିରୁ ମୁକ୍ତି ପାଇ ପାରେନା । ପାଇପାରେନା ବୋଲି କେତେ କବିତା, ସାହିତ୍ୟ, ସଂଗୀତ, ତାଳ, ଲୟ ରାଗରାଗିଣୀ ଗଢ଼ି ହୋଇଯାଏ- କେତେ ଅନୁକ୍ତ ରଙ୍ଗର ରେଖା ଟାଣି ହୋଇଯାଏ କାନ୍‌ଭାସ୍‌ରେ । ଯାହା କରି ହେଇନି, ଯାହା କହିହେଇନି, ଘଟିପାରିନି, ମାତ୍ର କହି ହେଇଥାନ୍ତା, କରି ହେଇଥାନ୍ତା, ଘଟିବାର ସମ୍ଭାବନା ବି ଥିଲା ପ୍ରଚୁର, ସଚେତନ ମଣିଷ ତାହାରିପାଇଁ ଛଟପଟ ହୁଏ, କାହିଁକି ସମୟର ଉପଯୁକ୍ତ ବ୍ୟବହାର କରିପାରିଲା ନାହିଁ ବୋଲି ହାୟ ହାୟ କରେ ।

ଯେଉଁ ସମୟରେ ଯେଉଁ ନିଷ୍ପତ୍ତି ସେ ନେଇଥାଏ, ହୁଏତ ସେ ସମୟରେ ତାକୁ 'ଭୁଲ୍' ଭଳି ଲାଗେ ନାହିଁ- ଉପଯୁକ୍ତ, ଯଥାର୍ଥ ମନେ ହେଇଥାଏ । ଏପରି ସ୍ଥଳେ ହୁଏତ ତାର ବିଚାର ହୋଇଥାଏ ବିଭ୍ରାନ୍ତ- ବେଳେବେଳେ 'ଭୁଲ', 'ଠିକ୍'ର ମାପକାଠି ହଜିଯାଇଥାଏ । ତେଣୁ ଏକଦା ଠିକ୍ ମନେହେଇଥିବା ନିଷ୍ପତ୍ତି ପରବର୍ତ୍ତୀକାଳରେ 'ଭୁଲ' ରୂପେ ପ୍ରତିପାଦିତ ହୁଏ । ଅହଂକାର, ମୂଢ଼ତା, ସ୍ଥଳ ବିଶେଷରେ ନିଷ୍ଠୁରତା ମଣିଷକୁ ଏପରିକାମ କରିବାକୁ ନିୟୋଜିତ କରେ । ପରିଣତିର ପରାଭବ ସେ ଭୋଗକରେ ଏବଂ ନିଜକୁ ଧିକ୍କାର କରେ । କିନ୍ତୁ ସୁଧାରି ନେବାକୁ ଆଉ ବେଳ ନଥାଏ । କେତେକ ବ୍ୟକ୍ତି ନିଜ ଅନ୍ତରାତ୍ମାର ସ୍ୱରୂପକୁ ସ୍ପଷ୍ଟ ରୂପେ ଚିହ୍ନି ନଥାନ୍ତି । କାରଣ, ସେଥିନିମନ୍ତେ ସେମାନଙ୍କର ଧ୍ୟାନ ନଥାଏ, ନିଜେ କ'ଣ ଚାହାନ୍ତି, ଠିକ୍ ରୂପେ ଜାଣନ୍ତି ନାହିଁ-ଅଥଚ, କୌଣସି ଲକ୍ଷ୍ୟକୁ ଆପଣାର କରିବାକୁ ନିଷ୍ପତ୍ତି ନେଇ ପାରନ୍ତି ନାହିଁ । ସେମାନେ ପରବର୍ତ୍ତୀ ସମୟରେ ପଶ୍ଚାତ୍ତାପ କରନ୍ତି । ସୁଯୋଗ ହାତଛଡ଼ା ହୋଇଗଲାପରେ ହା ହତୋସ୍ମି ହୁଅନ୍ତି । ମାତ୍ର ଗଠନମୂଳକ କିଛି ଘଟିପାରେ ନାହିଁ ।

କଥାଟିଏ ରୀତା ଅନେକବର୍ଷ ତଳେ କହିଥିଲା, ସେତେବେଳେ ସେ ଓ ମୁଁ ଦୁଇଜଣ

ତରୁଣୀ -ଅବିବାହିତା, ବି.ଏ. ପଢୁଥାଉ। ରୀତାର ସହପାଠୀ 'ତଡ଼ିତ୍' ରୀତାକୁ ଭଲ ପାଉଥିଲା, ସେ ଖୁବ୍ ସରଳ ଓ ହୃଦୟବାନ୍ ଯୁବକ। ପରବର୍ତ୍ତୀ କାଳରେ ସମାଜରେ ବେଶ୍ ପ୍ରତିଷ୍ଠାପନ୍ନ ହୋଇ ଅବସ୍ଥାପିତ ହେଲା। ମାତ୍ର ସେଇ ଅଳ୍ପ ବୟସରେ ରୀତା ଭଲ ପାଇବାର ମୂଲ୍ୟ ବୁଝି ନଥିଲା। ନିଜେ ଥିଲା ଅସାମାନ୍ୟା ସୁନ୍ଦରୀ ଓ ବୁଦ୍ଧିମତୀ, କୃତୀଛାତ୍ରୀ। ସେଇ ଅହଂକାରରୁ କି ଅବିମୃଶ୍ୟକାରିତାରୁ କେଜାଣି ତଡ଼ିତକୁ ରୀତା ଦୂରେଇ ଦେଲା। ନିଜ ଭିତରର ଆତ୍ମୀୟତାକୁ ବଢ଼ିବାକୁ ଦେଲା ନାହିଁ। ଅଥଚ, କେଇବର୍ଷପରେ ବସ୍ୟେରେ ପାଠ ପଢ଼ିବା କାଳରେ ରୀତାର ହୃଦ୍‌ବୋଧ ହେଲା ଯେ ତଡ଼ିତ୍ ଭଳି ସରଳ, ଅମାୟିକ, ଭଲପାଇବା ଆଉ କେହି ତାକୁ ଦେଇପାରିବ ନାହିଁ। ସେ ଆପଣାର ହୃଦୟହୀନତା ପାଇଁ ଅନୁତାପ କଲା। ଦିନ ଦିନ ରାତି ରାତି ତଡ଼ିତ୍‌ର ନିରୀହ ଆଖି, ଆବେଗମୟ ସ୍ୱର ତାର ମାନସପଟରେ ଜୀବନ୍ତ ହେଇଉଠିଲା। ତଡ଼ିତ୍ ସେତେବେଳେ ଆମେରିକାରେ। ରୀତା- ଏଇଲେ ଆଉ କେଉଁ ଅଧିକାରରେ ତାକୁ ନିବେଦନ ଜଣାଇବ ? ହୁଏତ ଏଇ କେଇଟି ବର୍ଷଭିତରେ ତଡ଼ିତ୍ ଅନ୍ୟକୌଣସି ଝିଅ ସହ ଆବେଗାତ୍ମକ ସଂପର୍କ ରଖିସାରିବଣି। ରୀତା ଆକୁଳ ହେଲା, ନିଜକୁ ଧିକ୍‌କାରିଲା। ନିଜେ ଯେ ମଣିଷପଣିଆଁରୁ ବିଚ୍ୟୁତ ଯା'ବି ଅନୁଭବ କଲା। ମାତ୍ର କୌଣସିମତେ ଏଇ ଭୁଲର ଆଉ ସଂଶୋଧନ ହୋଇପାରିଲା ନାହିଁ। ତରୁଣ ବୟସରେ ରୀତାର ଏଇ ଭାବ ଗଦ୍ ଗଦ୍ ଅସହାୟତା ଦେଖି ମୁଁ ସ୍ତମ୍ଭୀଭୂତ ହେଇଥିଲି। ଉପଯୁକ୍ତ କାଳରେ ଅନ୍ତର୍ଜଗତର ଆବେଗ ସହ ତାର ପରିଚୟ ହେଇପାରି ନଥିଲା ବୋଲି ସାରାଜୀବନ ଅବଶୋଷ ରହିଗଲା ତା'ର। ହୁଏତ ରୀତା ଅନେକ କିଛି ପାଇଛି- ପାଇପାରିନି ସତ୍ୟନିଷ୍ଠ ସେଇ ଭଲପାଇବା- ଯାହାକୁ ସେ ନିଜେ ଦିନେ ଆଡ଼େଇ ଦେଇ ଯାଇଥିଲା।

ରୀତା କେବଳ ନୁହେଁ, ପ୍ରତ୍ୟେକ ବ୍ୟକ୍ତିର କିଛି ନା କିଛି ପଶ୍ଚାତ୍ତାପ ରହିଛି। କେବେ ଭାବଜଗତରେ ତ କେବେ ବସ୍ତୁଜଗତରେ, ହେଲେ ପଶ୍ଚାତ୍ତାପ ବଳରେ ବସ୍ତୁଜଗତର ଅନେକ ଭୁଲ ସୁଧାରି ହେଇପାରେ, ଅଭାବ ପୂରଣ ହୋଇପାରେ। ଭୁଲ ବିଚାରର ଭରଣା କରାଯାଇପାରେ। ମାତ୍ର, ଭାବଜଗତରେ ସମୟର ମୂଲ୍ୟ ବହୁତ ବେଶି, କଥାପଦିକ ମଧ ଅମୂଲ ମୂଲ। ଉପଯୁକ୍ତ ସମୟରେ ଉପଯୁକ୍ତ ସିଦ୍ଧାନ୍ତ ନେଇ ପାରି ନଥିଲେ ସାରାଜୀବନ ଅନୁତାପରେ ଦଗ୍ଧହେବାକୁ ପଡ଼ିଥାଏ। ଯେମିତି ଶରତ୍ ଚନ୍ଦ୍ରଙ୍କ କାହାଣୀର ଦେବଦାସ-କୀଟଦଷ୍ଟ ଫୁଲପରି ଅକାଳରେ ଝଡ଼ିଗଲା, ପାର୍ବତୀ ବି ତିଳ ତିଳ ଆଦର୍ଶର ନିଆଁରେ ଜଳିଲା। କୋମଳ ଅନୁରାଗର ଯେଉଁ କଥାପଦକ ସ୍ନେହଜର୍ଜର କରି ପକାଇଥାନ୍ତା, ତା'ଉଚ୍ଚାରିତ ହୋଇପାରିଲା ନାହିଁ ଠିକ୍ ବେଳରେ। ସେ ଯୁଗ ଅବଶ୍ୟ ଅଲଗା ଥିଲା। ଏ ଯୁଗରେ ସେଭଳି ସଂଭ୍ରମ, ସେଭଳି ଉତ୍ସର୍ଗିତ ଭଲପାଇବା କ୍ୱଚିତ୍ ହେଲେ ବି କେଉଁଠି ନା କେଉଁଠ ଅଛିତ !

ଥରେ, କଲେଜରୁ ଫେରିବା ରାସ୍ତାରେ ରାସ୍ତାକଡ଼ରେ ଗୁଡ଼ିଏ ଲୋକ ଜମା ହେଇଥିଲେ। ରିକ୍ସା ଅଟକାଇଲି, ଝୁଂକିପଡ଼ି ଅନାଇଲି-ରାସ୍ତାକଡ଼ରେ ଭିକାରୁଣୀଟିଏ

ମରିଶୋଇଛି- କାଳିଆ ସିଠୁଆ ଦିହ, ମୁଦାଆଖି, ପାଟିଟା ସାମାନ୍ୟ ଆଁ- ସଦ୍ୟ ମରିଥାଏ । ପାଖରେ ବସିଚି ଦୁଇ ଅଢ଼େଇ ବର୍ଷର ଦୁର୍ବଳ ଲଙ୍ଗଳା ଛୁଆ । ତା'ପାଖରେ ଖଲିପତ୍ରରେ ଛୁଟି ଓ ତରକାରୀଟିକେ । ଛୁଆଟି ଆବାକାବା ହେଇ ଚାରିଆଡ଼କୁ ଅନାଉଁଥାଏ । ମୁଁ ବେଶିବେଳ ଅଟକିଲି ନାହିଁ, ଓହ୍ଲାଇଲି ନାହିଁ ରିକ୍ସାରୁ । ଘରେ ମୋର ବର୍ଷକର ଛୋଟ ଝିଅ- ମୁଁ ସକାଳ ୧୦ଟାରୁ ଯାଇଚି, ୫ଟା ବାଜିଲାଣି । ଶୀଘ୍ର ଶୀଘ୍ର ଫେରିଆସିଲି, କିନ୍ତୁ ସେଦିନ ରାତିସାରା ଶୋଇପାରିଲି ନାହିଁ । ଦାରୁଣ ମନସ୍ତାପରେ ଘାଣ୍ଟିହେଲି । କ'ଣ ହେଲା ସେ ଛୁଆଟିର ? ମୁଁ ଯେ ତା'ପାଇଁ କିଛି ବି କରିପାରିଲି ନାହିଁ- ମୋର ତ କିଛି କର୍ତ୍ତବ୍ୟ ଥିଲା, କରିବା ପାଇଁ ସାମର୍ଥ୍ୟ ବି ଥିଲା । କି ନୀଚ ସ୍ୱାର୍ଥପରତା ମୋର ? ଧାର ଧାର ଲୁହ ବୋହିଲା । ପରଦିନ ସେ ଘଟଣାର ଖୋଜ ନେଲି ଅବଶ୍ୟ, କିନ୍ତୁ ସଠିକ୍ ତଥ୍ୟ କିଛି ପାଇଲି ନାହିଁ । ଏବେ ଯାଏ ବି ମନେ ପଡ଼ିଲେ ମନସ୍ତାପର ଚିଆଁ ଲାଗିଯାଏ ପ୍ରାଣରେ ।

କେତେପ୍ରକାର ଅନୁତାପ ପୁଣି ସୁଧାରି ହେଇପାରେ । ଆମେ କୌଣସି ପ୍ରିୟବନ୍ଧୁ ବା ସହକର୍ମୀ ବା ଅଧସ୍ତନ ପ୍ରତି ନିଷ୍ଠୁର ବ୍ୟବହାର କରିଛେ, ଅକାରଣେ ଅପମାନ ଦେଇଛେ, କ୍ରୁଦ୍ଧ ହୋଇଛେ । ଭୁଲ୍ ବୁଝି ଆମେ ହୁଏତ କ୍ଷମା ମାଗିବା, ଅଧିକ ଆତ୍ମୀୟତା, ନମ୍ରତା ଦେଖାଇବା । କିନ୍ତୁ ଆଉ କେତେକ ଅନୁତାପ ଅଛି- ଯେଉଁଥିରୁ ରକ୍ଷା ନାହିଁ, ମୁଣ୍ଡପିଟି, ପ୍ରାଣବିସର୍ଜି ଦେଲେ ବି ତାର ସଂଶୋଧନ ହୋଇପାରେ ନାହିଁ । ଆପଣାର ଅବିମୃଶ୍ୟକାରିତାକୁ ଧିକ୍କାର କରି କପୋତୀ ପରି ''ଉଠ୍‌ରେ ପୁତା ଉଠ୍' ଡାକି ଡାକି ସାରାଜୀବନ ବିତିଯାଏ, କ୍ଷମା ମିଳେ ନାହିଁ । ଅତଏବ ମଣିଷ ନିଜକୁ ଧିକ୍କାରେ, ଘୃଣା କରେ । ଘାଣ୍ଟି ହୁଏ ।

ଅନୁତାପର ତୁଷାନଳରେ ଜଳିବା ତେବେ କ'ଣ ମଣିଷର ଅଲଂଘ୍ୟ ନିୟତି ? ଭୁଲ ପାଇଁ ତାର କ'ଣ କ୍ଷମା ନାହିଁ, ନାହିଁ ବି ପ୍ରାୟଶ୍ଚିତ୍ତ ? ତେବେ, ତା'ପ୍ରାଣରେ ଶାନ୍ତି ଆସିବ କିପରି ? ଏ ସମସ୍ୟାକୁ ପୁରାଣକାର ମୁନି ଋଷିଗଣ ମଧ୍ୟ ପ୍ରତ୍ୟକ୍ଷ କରିଥିଲେ । ଏଇ ଅସହାୟତା ଜର୍ଜରିତ ମଣିଷକୁ କଳନା କରିଥିଲେ, ତେଣୁ ଏକ ବିପୁଳ ଶକ୍ତିନିକଟରେ ଆତ୍ମ ସମର୍ପଣ କରି ଭୁଲ କରିଥିବା ବ୍ୟକ୍ତିଟି ସେଦିନ ଗାଇଥିଲା- ''ତ୍ୱୟା ହୃଷିକେଶ ହୃଦି ସ୍ଥିତେନ/ଯଥା ନିଯୁକ୍ତୋଽସିତଥା କରୋମି'' ''ମୁଁ କିଛି କରି ନାହିଁ- ଭୁଲ୍ ବିଚାର ବା ଠିକ୍ ବିଚାରର କର୍ତ୍ତା ବୋଲାଇବାକୁ ମୁଁ କିଏ ? ଭଲ କିମ୍ବା ମନ୍ଦ କରିବାକୁ ସେ ମୋତେ ନିଯୁକ୍ତ କରିଛନ୍ତି- ମୁଁ ତାହାହିଁ କରୁଛି । ମୁଁ କର୍ତ୍ତା ନୁହେଁ । କର୍ତ୍ତା ସେଇଜଣକ ।'' ସେହିଥିରୁ ମିଳେ ଆଶ୍ୱାସନା । ପରମ ନିରହଂକାର ଓ ଚରମ ସମର୍ପଣର ଅବବୋଧରେ ହିଁ ମିଳେ ଆଶ୍ୱସ୍ତି । ଅନ୍ୟ ପନ୍ଥା କିଛି ହେଲେ ନାହିଁ ।



# ଅଶରୀରୀ ଜଗତ

''ବୋଉଲୋ ! ଇଏ କି ବିକଟାଳ ରୂପ''- ଚିତ୍କାର କରି କଚାଡ଼ି ପଡ଼ିଲା ଇନା- ମୁହଁ ସଞ୍ଜ ବେଳଟା । ଇନା ସହରରେ କଲେଜ ହଷ୍ଟେଲରେ ରହି ବି.ଏ. ପଢ଼େ । ଛୁଟିରେ ଘରକୁ ଆସିଥିଲା । ସେ ଦିନ ଥିଲା ରବିବାର । ସୋମବାରଦିନ ଭୋଅରୁ ବାପାଙ୍କ ସହ ଇନା ହଷ୍ଟେଲକୁ ଫେରିଯିବ । ୧୮ ବର୍ଷର ଝିଅ ସେ- 'ବାଡ଼ିଆଡ଼କୁ ପରିସ୍ରାକରି ଯାଇଥିଲା । ବାଡ଼ିପଟ ପକ୍କା ବାରଣ୍ଡାକୁ ଲାଗି ମାଟି ତିଆରି ବଖରାଏ ଚାଳଘର, ରୋଷେଇ ଘର ସିଏ । ବୋଉ ରୁଟି କରୁଥିଲେ- ଇନା ରୁଟି ବେଲି ସାରିଲା, ପରିସ୍ରା ଯିବାକୁ ବାହାରିଲା । ବୋଉକୁ ଡାକିଲା ସାଙ୍ଗରେ ଯାଇ ଠିଆ ହେବାକୁ । ବୋଉ କହିଲେ- ମୁଁ ଏଇଠି ଅନେଇଚି- ତୁ ଯା ଏଇ ପାଖରେ କିନା ବସିପଡ଼ିବୁ ।

ଇନା ବାରଣ୍ଡା ତଳକୁ ୪/୬ ହାତ ଦୂରରେ ବସିଥିଲା-ତା'ପଛକୁ ନଡ଼ିଆବାଡ଼ି ଲମ୍ବିଯାଇଛି- କିଛି ଦୂରକୁ ପୋଖରୀ- ବାଡ଼ିପଟ ବାରଣ୍ଡାଠାରୁ ପୋଖରୀ ଦୂରତାର ଠିକ୍ ମଝିରେ କୁଅ ଚଉତରା ଓ ପକ୍କା ପାଇଖାନା । ଇନା ଏତେ ଦୂରକୁ ଯାଇନାହିଁ । ଦୁଇ ମହଲା କୋଠାଘର ତାଙ୍କର-ଅନ୍ୟ ଭାଇଭଉଣୀମାନେ କିଏ ଉପର ବା କିଏ ତଳ ମହଲାରେ, ପଢୁଥିବେ ନହେଲେ ଖେଳୁଥିବେ । ବାପା ବି ଆଜି ଘରେ ଅଛନ୍ତି- ରବିବାର ଛୁଟି, ସେଥିରେ ପୁଣି ପାଖଘର କୁଟୁମ୍ବରେ ଯେ ଜଣେ ମରିଯାଇଛନ୍ତି । ଆଜି ତାଙ୍କ ୧୩ ଦିନ । କାଲିଥିଲା ବାରପତ୍ରଶ୍ରାଦ୍ଧ । ବହୁତ ଧୁମ୍‌ଧାମ୍ ଖିଆପିଆ ବଢ଼ିସାରିଛି । ବାପା ବୋଧ ହୁଏ, ଏଇଲେ ସାନଭାଇ ଟୁକୁନ୍‌କୁ ପଢ଼ାଉଥିବେ ।

ଚିତ୍କାର କରି କଚାଡ଼ି ପଡ଼ିଗଲା ଇନା-ବୋଉ ବି ପାଟି କରି ଦଉଡ଼ି ଆସିଲେ- ବାପା, ଭାଇଭଉଣୀ ଓ ଅନ୍ୟମାନେ ବି । ଘର ଭିତରର ଆଲୁଅ ବାଡ଼ିପଟକୁ ମ୍ଳାନ ଦିଶୁଥାଏ ବାପାଙ୍କ ହାତରେ ଟର୍ଚ୍ଚ-ଇନା ଆଖିବୁଜି ଦାନ୍ତ ଚାପି ହାତ ମୁଠା ମୁଠା କରିଥାଏ ଓ ଘଡ଼ିକୁ ଘଡ଼ି ଠାଇ ଠାଇ ଚମକୁ ଥାଏ । ପାଖଘରୁ ରବିକକେଇ ହେରିକା ବି ଦଉଡ଼ି ଆସିଲେ । ବାପା, ରବି କକେଇ ମିଶି ଇନାକୁ ଘର ଭିତରକୁ ଟେକି ଆଣିଲେ । ବାଡ଼ିପଟ ତଳମହଲା ଘରେ ତାକୁ ଶୁଆଇଦେଲେ- ପାଣି ଛାଟିଲେ, ପଙ୍ଖା ଖୋଲିଦେଲେ । ବାପା କୋଳରେ ଇନାକୁ ଧରି ବସିରହିଲେ । ''ମା'ଲୋ, ମା' ଇନା କ'ଣ ହେଲା- ଚାହିଁଲୁ

ମତେ ଚାହାଁ''-ମୁଣ୍ଡରେ ପାଣିମାରି ଆଉଁସି ଆଉଁସି ବାପା ଡାକୁଥାଆନ୍ତି ।

ଇନା ଆଖି ଖୋଲିଲା ପୁଣି ଭୟରେ ମୁହଁ ବିକୃତ କରି ହାତ ମୁଠା ମୁଠା କରି ଥରି ଉଠିଲା-''ଯେ କି ବିକଟାଳ ରୂପ''- ଲୋକେ ବେଢ଼ିଗଲେ । ଜାଣିବାରେ ବାକୀ ରହିଲା ନାହିଁ ଯେ, ଇନାକୁ ପ୍ରେତ ଗ୍ରାସିଛି । ଗାଁ ଲୋକେ ଏକଥା ଅନ୍ଧେ ବହୁତେ ଅଭିଜ୍ଞତାରେ ଆଣିଥାଆନ୍ତି । କେତେକ ପଚାରି ଲାଗିଲେ ''ଆଲୋ ମା', ତୁ କିଏ, କୁଆଡ଼େ ଆସିଛୁ-'' ଇନା ବାପାଙ୍କ କୋଳରେ ଥାଇ ବାହୁନି କାନ୍ଦିଲା- କହିଲା- ''ମୋ ବଡ଼ ପୁଅକୁ ଟିକେ ଡାକ- ତାକୁ ତ ଦେଖିବି ବୋଲି ଅନେଇ ରହିଲି- ଦେଖି ପାରିଲି ନାହିଁ, କଥା ପଦେ କହିପାରିଲି ନାହିଁ- ଭାରି କଷ୍ଟରେ ମୋ ଜୀବନ ଗଲା- ଡାକ ତାକୁ ।'' ଲୋକେ ଡାକି ଆଣିଲେ- ଗତ କାଲି ମାଆର ବାରପତ୍ରଶ୍ରାଦ୍ଧ ସାରିଥିବା ବିନ କକେଇ ଲଣ୍ଡିତ ମସ୍ତକରେ ଆସି ଦ୍ୱାରଦେଶରେ ଛିଡ଼ାହେଲେ । ଇନା ତାଙ୍କୁ ଦେଖିବାମାତ୍ରେ ଉଠିଯାଇ ତାଙ୍କୁ କୁଣ୍ଢେଇ ଧରି ତାଙ୍କ ଛାତିରେ ଲୋଟିପଡ଼ିଲା- ''ବାପରେ ଦୁଇଦିନ ଧରି ଏମାନେ ମତେ କିଛି ବି ଖାଇବାକୁ ଦେଲେ ନାହିଁ- ପାଟି ପଡ଼ିଗଲାରୁ ମୁଁ ତ କିଛି କହିପାରୁ ନଥାଏ । ତୋତେ ସବୁ କହିବି ବୋଲି ଅନେଇଁ ଥିଲି, ହେଲେ ତୁ ତ ଏଡ଼େ ଡେରିରେ ଆସିଲୁ ।'' ବିନ କକେଇ ଇନାକୁ ଆଦର କରି ଆଣି ତା'ବାପାଙ୍କ କୋଳରେ ଶୁଆଇ ଦେଲେ । ଗୁଣିଆ ଡକା ହେଇ ଆସିଲା ।

ହଁ, ବିଚରା ବିନବୋଉ ତ ତାର ବଡ଼ ପୁଅ, ରୋଜଗାରିଆପୁଅକୁ ଦେଖି ନ ପାରି ମଲା । ବଡ଼ ପୁଅ ଦୂରରେ ଥାଏ । ଖବର ପାଇ ଗାଡ଼ିକରି ଆସୁଆସୁ ବିନବୋଉର ପ୍ରାଣବାୟୁ ଉଡ଼ିଯାଇଥିଲା । ଅବଶ୍ୟ, ବିନ ହିଁ ଆସି ସବୁ ସଂସ୍କାର କଲା । ଗାଁରେ ଥିବା ଦୁଇଭାଇ ରବି ଓ ଦେବ ଅଯୋଗ୍ୟ, ଏଥିରେ ସେ ଦୁହିଁଙ୍କର ଗୁଡ଼ାଏ ଛୁଆପିଲା । ମାର କୌଣସି ଯତ୍ନ ସେମାନେ ନେଇପାରନ୍ତି ନାହିଁ । ବିନ ଯଦି ମଝିରେ ମଝିରେ କିଛି ଟଙ୍କା ପଠାଏ- ମା'ଆର ହେପାଜତ ପାଇଁ, ସେତକ ଏମାନେ ପେଟରେ ପକେଇ ବସନ୍ତି, ବିନ ମଧ୍ୟ ଅବହେଳିତା ମାଆକୁ ନିଜ ପାଖକୁ ସହରକୁ ନିଏ ନାହିଁ । ହେଲେ, ବୁଢ଼ୀ ବଡ଼ ପୁଅକୁ ଭାରି ଭଲ ପାଏ । ସବୁ କଥା ଅଙ୍ଗେ ନିଭାଏ, ଅଭାବୀପୁଅଙ୍କ ପାଇଁ ଗାଁରେ ହିଁ ପଡ଼ିଥାଏ । ସେ ଯେ ଅଯତ୍ନରେ, ବିନା ଚିକିତ୍ସାରେ ମରିଛି, ଏକଥା ସମସ୍ତଙ୍କୁ ଜଣା । ଅଥଚ, ମାଆ ବିନକୁ ନିଜ ତୁଣ୍ଡରେ ଏକଥା କହିବାକୁ ଚାହେଁ ।

ଲୋକେ ମୁହଁ ଚୁହାଁ ଚୁହିଁ ହେଇ ଚୁ ଚୁଁ,ଆହା, ଆହା କରୁଥାଆନ୍ତି । ଇନାର ଗୋରାତକ ତକ ମୁହଁଟି ମଳିନ ପଡ଼ିଯାଇଥାଏ । ଗୁଣିଆ ମନ୍ତ୍ର ପଢ଼ିଲେ ଓ ଇନାକୁ କହିଲେ-''ତୁ ବିନ ବୋଉ ତ, -ପୁଅକୁ ତ ଦେଖିଲୁ, ସବୁକଥା କହିଲୁ, ଏବେ ଯେ ଝିଅଟାକୁ ଛାଡ଼ି ଦେ-ତା' ବାପ ତୋର କେତେ ଭଲ ମନ୍ଦ ବୁଝେ । ତା' ବୋଉ ଭଜ୍ଜା ଦରବଟିଏ ହେଲେ ଲୁଚେଇ କି ତୋତେ ଖୁଆଏ-ତୁ ତା' ଉପରେ ଦାଉ ସାଧେନା- ଯା'-ଯେଉଁଠୁ ଆସିଚୁ, ଯା'-

ଏଥର ଇନା ଧଡ଼ପଡ଼ ହେଇ ଉଠିଲା । ବାପାଙ୍କୁ ଠେଲିଦେଇ ପବନ ବେଗରେ

ବାଡ଼ିଆଡ଼କୁ ଦୌଡ଼ିଗଲା । ରାତି ଗଭୀର ହେଲାଣି । ୧୧ଟା ବାଜିବ ବାଡ଼ିଆଡ଼େ କିଟି କିଟି ଅନ୍ଧାର । ଇନା ବଡ଼ ଜୋର୍‌ରେ ଦୌଡ଼ିଗଲା ଓ ସେଇ ନଡ଼ିଆ ଗଛ ମୂଳେ ହିଁ ମୁହଁ ମାଡ଼ି ପଡ଼ିଗଲା, ଠିକ୍ ଯୋଉଠି ସେ ସନ୍ଧ୍ୟାବେଳେ ଚିତ୍କାର କରି ପଡ଼ିଯାଇଥିଲା । ଲୋକେ ପଛେ ପଛେ ଦୌଡ଼ିଥିଲେ । ଇନାର ବାପା ଓ ଗୁଣିଆ ତାକୁ ଉଠାଇ କାଖ କରି ଘରକୁ ଆଣିଲେ । ଇନା ଦେହରୁ ଗମ୍ ଗମ୍ ଝାଳ ବୋହି ଯାଉଥାଏ । ସେ ଆଖିବୁଜି ହାଲିଆ ହୋଇ ବାପାଙ୍କ କୋଳରେ ଶୋଇଗଲା ।

ଇନାର ବାପା ମୋର ଦିଅର ହିସାବ ହୁଅନ୍ତି । ପ୍ରାଇଭେଟ କଲେଜର ବିଜ୍ଞାନ ଅଧ୍ୟାପକ । ସେ ମୋ ଆଗରେ ଏସବୁ କଥା କହି ବଡ଼ ବ୍ୟସ୍ତ ହୋଇ ପଡୁଥିଲେ । ଅଥଚ, ଏକଥାଟାକୁ ରୁନୁ ସନ୍ଦେହ ଚକ୍ଷୁରେ ଦେଖିଲା ବୋଲି ମୋର ମନେ ହେଲା । ଭୁତ ପ୍ରେତ ଘଟଣା ଅଧିକାଂଶ ମିଛ ହୋଇଥାଏ । ଲୋକମାନଙ୍କର ଅନ୍ଧବିଶ୍ୱାସ-ପ୍ରସୂତ । ଭୁତ ପ୍ରେତ ଡାହାଣୀର କିଛି ନିର୍ଦ୍ଦିଷ୍ଟ ପ୍ରମାଣ ନାହିଁ ।

ହଁ, ରୁନୁ କଥାର ଅର୍ଥ ରହିଛି- ଏ ସବୁର ନିର୍ଦ୍ଦିଷ୍ଟ ପ୍ରମାଣ ନାହିଁ । ପରୀକ୍ଷାମୂଳକ ଭାବେ ଦେଖାଇ ହେବ ନାହିଁ ହୁଏତ, କିନ୍ତୁ, ଏପରି ଗୋଟାଏ ଅଶରୀରୀ ଜଗତ ନାହିଁ ବୋଲି କିଏ ବା ପ୍ରାମାଣିକ ତଥ୍ୟ କିଛି ଦେଇପାରିବ ? ଅଶରୀରୀ ଜଗତର ରୀତି ଅଲଗା- ବାୟୁରେ ପହଁରି, ଅନ୍ଧାରରେ ରୂପ ନେଇ ସେ ହୁଏତ ଦୃଶ୍ୟ ଜଗତ ଭିତରକୁ ପଶିଆସେ- କି ଅଜବ ତାଡ଼ନାରେ-ଲୋଭ, ମାୟା ନା ପ୍ରତିହିଂସାର ତାଡ଼ନାରେ କେଜାଣି ! ଅଶରୀରୀ ଜଗତ ମିଛ ନୁହେଁ । ଶହେ ଲୋକଙ୍କ ସାମ୍ନାରେ କଲେଜ ପଢୁଆ ଯୁବତୀ ଝିଅ ଇନା ଯେଉଁ ସତ୍ତାର ବାହକ ହୋଇ ଯେଉଁ ଆଚରଣ ଦେଖାଇଲା, ତାକୁ ମିଛ ବୋଲି କହିହବ କେମିତି ? ଅନେକ ଅନ୍ତରାଳ ଦୃଶ୍ୟ ଓ ଘଟଣା ଏଇ ଅଶରୀରୀ ଜଗତର ଅସଲ ସତ୍ୟ ବୋଲି ପ୍ରତୀତ ହୁଏ । ଆଜି ଇନାର ବାପାଙ୍କଠୁଁ ଏଇ କଥା ଶୁଣିଲା ପରେ ମୁଁ କ'ଣ ତାକୁ ଇନାର ମନର ବିକାର ବୋଲି ଭାବିବି ? ରାତି ଏଗାରଟାରେ ବାଡ଼ିଆଡ଼ର କିଟି କିଟି ଅନ୍ଧାର ଭିତରକୁ ଏକା ଏକା ଇନା ଯେ ଦୌଡ଼ିଗଲା, ସତେରେ କ'ଣ ଭୁତ ଗ୍ରସ୍ତ ନ ହୋଇ ?

ମୋ ସ୍ମୃତିରେ ଗୋଟିଏ ପ୍ରଶ୍ନ ଏ ଯାଏଁ ଆସେ- ବେଳେ ବେଳେ ଭାବେ କ'ଣ ସତ, ଆଉ ମିଛ ବା କଅଣ ? ମୁଁ ହାଇସ୍କୁଲରେ ପଢୁଥାଏ - ମୋତେ ୧୩/୧୪ ବର୍ଷ ହୋଇଥିବ । ମୁଁ ଓ ବୋଉ ଘରେ ଥାଉ । ବାପା ପ୍ରବାସରେ । ବଡ଼ ଭଉଣୀ ବିବାହିତା, ଦୂରରେ ଥାଏ । ବଡ଼ ଭାଇ ହଷ୍ଟେଲରେ ରହି ପଢୁଥାଏ । ଅତଏବ ବୋଉ ଓ ମୁଁ ଆମ ବିରାଟ ଖଞ୍ଜାଘରେ ରହୁ । ଥରେ ଆମର ଜଣେ ବିଦେଶିନୀ ଖୁଡ଼ୀ ଆସିଥାନ୍ତି । ସେ ମଝିରେ ମଝିରେ ଜମିଜମା କାମରେ ଗାଆଁକୁ ଆସନ୍ତି । ଆମଘରେ, ନ ହେଲେ ଆଉ ଜଣେ କକେଇଙ୍କ ଘରେ ରହନ୍ତି । ଖିଆପିଆ ବି କରନ୍ତି । ସେ ଦିନ ସେଇ ଖୁଡ଼ୀ ଆସି ଥାଆନ୍ତି । ଉପରବେଳା ଆସି ସେ ଆମଘରେ କହିଥିଲେ ଯେ, ରାତିରେ ଆସି ଆମଘରେ

ଶୋଇବେ, ସେଠୁ ଖାଇକି ଆସିବେ । ମୋ ବୋଉ ଭାରି ଗପୁଡ଼ି । ଗପସପ ଜମିବ ବୋଲି ଖୁଡ଼ୀଙ୍କୁ ଅନେଇ ବସିଥାଏ । ମୁଁ ଲଣ୍ଠନ ଜାଳି ପଢୁଥାଏ । ରାତି ପ୍ରାୟ ୮ଟା ହେବ ।

ସେତେବେଳକୁ ଗାଆଁମାନଙ୍କରେ ବିଜୁଳି ବତୀ ନ ଥାଏ- ଅତଏବ ରାତି ୮ଟାର ଅନ୍ଧକାର ଆଉ ନିଃଶବ୍ଦତା । ଦାଣ୍ଡକବାଟ ପାଖରେ ଖୁଡ଼ୀଙ୍କ ସ୍ୱର ପରି କିଛି ଶୁଭିଲା । ହୁଏତ ଖୁଡ଼ୀଙ୍କୁ ଏଠାରେ ଛାଡ଼ିଯିବାକୁ କକେଇଙ୍କ ଘରୁ କେହି ଆସିଛନ୍ତି ଓ ଫେରିଯାଉଛନ୍ତି, ସେମିତି ଶୁଭିଲା । ବୋଉ କହିଲା, ''ଯା', କବାଟ ଫିଟେଇ ଦେ'-'' ମୁଁ ଦାଣ୍ଡକବାଟ ଖୋଲି ଦେଲି । ଖୁଡ଼ୀ କୁଆଡ଼େ ଲୁଚିଗଲେ ନାଁ କଅଣ ? ହାତରେ ଲଣ୍ଠନ ନଥାଏ । କିଟି କିଟି ଅନ୍ଧାର ଭିତରକୁ ମୁଁ ଡାକ ଫୋପାଡ଼ିଲି- ''ଖୁଡ଼ି, ଖୁଡ଼ି'' ସେପଟ ହାତୀଅନ୍ଧରୁ କୁରୁ କୁରୁ ଚାପା ହସ ଶୁଭିଲା, ଠିକ୍ ଖୁଡ଼ୀଙ୍କ ହସ ପରି । ଖୁଡ଼ୀ ଏମିତି ବୋଉ ସହିତ ପରିହାସ କରନ୍ତି, ମୁଁ ଆଉ ହାତ୍ୟାନ୍ଧକୁ ଗଲି ନାହିଁ, ଭାବିଲି, ବୋଉକୁ ଖୋଜେଇବାକୁ ଖୁଡ଼ୀ ଏମିତି ଲୁଚିଛନ୍ତି । ବଳେ ଆସିବେ ଓ ପୁଣି କବାଟ ପାଖେ ଡାକିବେ । ମୁଁ କବାଟ ବନ୍ଦ କରି ଫେରି ଆସିଲି । ବୋଉ ଓ ମୁଁ କିଛି ବେଳ ଅପେକ୍ଷା କଲୁ । କିନ୍ତୁ ଖୁଡ଼ୀ ଆଉ ଡାକିଲେ ନାହିଁ । ଆମେ ଭାବିଲୁ, ଖୁଡ଼ୀ ବୋଧେ ଏମିତି ଖେଳି ଖେଳି ଫେରିଗଲେ । କାରଣ, ଖୁଡ଼ୀ ବି ଦିନେ ଦିନେ କକେଇଙ୍କ ଘରେ ଶୋଇଯାଆନ୍ତି । ଖୁଡ଼ୀ ନିଶ୍ଚେ ସକାଳକୁ ଆସି ବୋଉକୁ କହିବେ ଯେ, ''ନାନୀ, ତୁମକୁ ଡରେଇବାକୁ ମୁଁ ଆସିଥିଲି । ତୁମେ ତ ଖୋଜିଗଲନି, ମୁଁ ତେଣୁ ଫେରିଚାଲିଗଲି ।''

ପରଦିନ ଖୁଡ଼ୀ ଆସିଲେ । ଆମେ ନିଶ୍ଚିତ ଯେ, ସେ ଆସି ବୋଉକୁ ଟାପରା କରି ଫେରି ଯାଇଛନ୍ତି । ମାତ୍ର ଖୁଡ଼ୀ କହିଲେ, ''ତାଙ୍କ ମୁଣ୍ଡ ବିନ୍ଧିଲା, ଖୁବ୍ ଡେରିରେ ରନ୍ଧାବଢ଼ା ହେଲା । ସେ ଆଉ ଡେରିରାତିରେ ନ ଆସି ତାଙ୍କ ଘରେ ଶୋଇ ପଡ଼ିଲେ ।'' ରାଣ ନିୟମ ପକାଇ କହିଲେ ଯେ, ସେ ଆସି ନାହାନ୍ତି ।

ଅଥଚ, ପୂର୍ବରାତିରେ ହାତ୍ୟାନ୍ଧ ସେପଟ ଦିଶୁନଥିବା ଜାଗାର ଅନ୍ଧାରରେ ଖୁଡ଼ୀଙ୍କ ହସ ପରି ପାଟିରେ ଲୁଗା ଜାକି କିଏ କୁରୁକୁରୁ ହସୁଥିଲା ? ଆଜିବି ସେ ହସ ସ୍ପଷ୍ଟ ହୋଇ ମୋ କାନରେ ଶୁଭିଯାଉଛି । ଖୁଡ଼ୀ ତ ସେଠି ନ ଥିଲେ- ସେ କ'ଣ ମୋ ମନର ଭ୍ରମ ? ମୋ ମନରେ ତ ସେତେବେଳେ କୌଣସି ପ୍ରକାର ଭୟ ବା ଦୁର୍ବଳତା ନଥିଲା । କେଜାଣି ! ଆଜିଯାଏ ସେ ରହସ୍ୟ ମୁଁ ଭେଦକରି ପାରି ନାହିଁ । ଏ ରହସ୍ୟ ଅନ୍ୟ କେହି କିପରି ଭେଦ କରିପାରିବ ? ବୁନୁ ବା କେଉଁପରି ବିଶ୍ୱାସ ଯିବ ?



# ସୁଖ ରୂପେ ଯାହା...

''ଅମୃତସ୍ୟ ପୁତ୍ରାଃ'' ମନୁଷ୍ୟଗଣ ସବୁକାଳେ ଅମୃତ ପିପାସୀ। ମଣିଷଜାଣେ ଅମୃତରେ ତା'ର ଅଧିକାର। ସେ ଅଧିକାର ଆପେ ସାବ୍ୟସ୍ତ ହେବ। ଯଦି ନ ହୁଏ ସେ ଅସୁଖୀ ହେବ। ହିଂସା, ପ୍ରତିବାଦ, ବିଳାପ ରୂପେ ସେହି ଭାବ ପ୍ରକଟିତ ହେବ। ଅମୃତ କିଏ ଆସ୍ୱାଦନ କରିଛି ? ଅମୃତ ବୋଲି ନିର୍ଦ୍ଦିଷ୍ଟ ଏପରି କିଛି ଭୋଜ୍ୟ କି ? ଏହା ଯୁକ୍ତି ସାପେକ୍ଷ, ଦର୍ଶନର ଅତୀତ। ମାତ୍ର ସାଧାରଣ ମଣିଷଟିଏ ଅମୃତକୁ କେବଳ ରସନା ଇନ୍ଦ୍ରିୟ ଦ୍ୱାରା ନୁହେଁ ସକଳ ଇନ୍ଦ୍ରିୟ ମଧ ଦେଇ ଏହାକୁ ଆସ୍ୱାଦନ କରିଥାଏ। ନିଦାଘର ଶୀତଳ ପବନ, ସୁମଧୁର ରାଗିଣୀ, ଅମୃତ ବଚନ, ମନୋମୁଗ୍ଧକର ଦୃଶ୍ୟ, ପରିତୃପ୍ତି ପ୍ରଦାନ କାରୀ ଭୋଜନ ଏସବୁ ମଧରେ ଅମୃତ ବିଦ୍ୟମାନ। ଅମୃତ ତେଣୁ ଏକ ପଦାର୍ଥ ନୁହେଁ, ଏକ ଭାବ ଚେତନା। ଏଥିରେ ମଣିଷ ଭିନ୍ନ ଆଉ କାହାର ଅଧିକାର ରହିବା ସମ୍ଭବ ? କିନ୍ତୁ ଏହି ଅମୃତ ଓ ଜାଗତିକ ସୁଖ ଏକ ନୁହେଁ। ଅଧିକାଂଶ ମଣିଷ ଭାବନ୍ତି, ଜାଗତିକ ସୁଖ ହିଁ ଅମୃତ, ନ ହେଲେ ଅମୃତର ଉପଯୋଗିତା କେଉଁଠି ? ଏହି ଅର୍ଥତନ୍ତ୍ରର ଦୁନିଆଁରେ, କ୍ଷମତା ବଳରେ ଅର୍ଥ ଠୁଳ କରିବା ପାଇଁ ନ୍ୟାୟ ନୀତିକୁ ବଳି ପକାଇ ଧନୀ ହେବାରେ ଅହ ରହ ଚିନ୍ତିତ ବ୍ୟସ୍ତ ମଣିଷ ପାଖରେ ସୁଖର ମୂଲ୍ୟ କଣ ? ଏହା ଯଦି ତା'ର ଅର୍ଥ ଲିପ୍ସା, କ୍ଷମତା- ଲାଳସାକୁ ଚରିତାର୍ଥ ନ କରି ପାରିଲା ? ଅମୃତ ଲିପ୍ସୁ ମଣିଷ 'ଅମୃତ'ର ଅର୍ଥ 'ସୁଖ' ବୋଲି ବୁଝେ। ଏହି ସୁଖର ସ୍ୱରୁପ ପୁଣି ନିର୍ଦ୍ଦିଷ୍ଟ-ଉତ୍ତମ ରୂପଗୁଣର ଅଧିକାରୀ ପତି ବା ପତ୍ନୀ, ବୁଦ୍ଧିମାନ, ସୁସ୍ଥ ସନ୍ତାନ, ପ୍ରଚୁର ଅର୍ଥ, ସାମାଜିକ ସମ୍ମାନ ସବୁଠି ଜୟ, ସବୁଠି ଆଗଧାଡ଼ି, ପୁଣି ଆଗଧାଡ଼ିରେ ସର୍ବାଗ୍ର। ଜାଗତିକ ସୁଖ ବୋଲି ମଣିଷ ଏହାକୁ ହିଁ ବୁଝେ। ସବୁଠାରୁ ସମର୍ଥ ବ୍ୟକ୍ତି, ପାରିବାର ବ୍ୟକ୍ତି ବୋଲି ନିଜକୁ ଜାହିର କଲେ ସେ ଯାଇ ସନ୍ତୁଷ୍ଟ ହୁଏ। ନଚେତ୍ ହିଂସା, ଈର୍ଷା, ପ୍ରତିବାଦ ଓ ବିଳାପ। ଈର୍ଷା ଓ ବିଳାପ ଯଥାର୍ଥରେ ଈର୍ଷାନ୍ୱିତ ଓ ବିଳାପକାରୀ ବ୍ୟକ୍ତିର ଅଶେଷ କ୍ଷତି ଘଟାଏ। ହିଂସା ଓ ପ୍ରତିବାଦ ନିଜର, ଅପରର ତଥା ସମାଜର କ୍ଷତି ଘଟାଏ। ଏ ପ୍ରକାର ସୁଖାନ୍ୱେଷୀ ମଣିଷ ଯଦି ଧାଡ଼ିର ଦ୍ୱିତୀୟରେ ଥାଏ, ତେବେ ଧାଡ଼ିରେ ସର୍ବାଗ୍ର ଲୋକଟିକୁ ହଟାଇ ଦେବାକୁ ଚେଷ୍ଟା କରେ। ଜୀବନର

ନାନଦିଗନ୍ତରେ ଏ ପ୍ରକାର ପ୍ରତିଯୋଗିତା, ବିଦ୍ୱେଷ, ଅହଂକାରର ଅନବରତ ରାଜତ୍ୱ ଜାରି ରହିଛି। ସେଥିପାଇଁ ଶାନ୍ତିରେ ମଣିଷ ନିଶ୍ୱାସ ମାରିପାରୁ ନାହିଁ। ନିଜ ଢ଼ୋଲ ନିଜେ ପିଟିବାର, ବିଜ୍ଞାପନର ହଟଚମଟ ଏଇ କାଳ, ଏଥିରେ ଗୁଣୀ, ମାନୀ, ସାଧୁଜନେ ନୀରବ ରହି ଆଢ଼େଇଯିବେ। ଗୁଣର ଆଦର କରିବା ପାଇଁ, ବିଜ୍ଞାପନହୀନ ସଦ୍‌ଗୁଣର ପୂଜା ପାଇଁ, କେହି ଆସିବେ ସତରେ ? ହୁଏତ ଆସିବେ, ସଂଖ୍ୟା ନିଶ୍ଚିତ ଭାବେ ସ୍ୱଳ୍ପ, ତଥାପି ଗୁଣୀଲୋକଙ୍କୁ ସେଇଥିରେ ହିଁ ସନ୍ତୁଷ୍ଟ ହେବାକୁ ହେବ। କିନ୍ତୁ ଧୈର୍ଯ୍ୟଧରି ମଣିଷ ରହିପାରେ ନାହିଁ- ସାମାନ୍ୟ ଟିକିଏ ପ୍ରତିଭାର ଅଧିକାରୀ ହେଲେ ବି, ସେ ବିଚାରେ, ସେ ବହୁତ କିଛି। ସର୍ବଶ୍ରେଷ୍ଠ ସମ୍ମାନ ପାଇବାକୁ ହକ୍‌ଦାର। ଏଭଳି ବିଚାର ଆସିଗଲେ ଦୁଇ ପ୍ରକାର କ୍ଷତି ହୁଏ। ପ୍ରଥମତଃ ପ୍ରତିଭାର ବିଲୟ ଘଟେ, ତାହା ମଳିନ ପଡ଼ିଆସେ। ପ୍ରାୟତଃ ପ୍ରତିଭାଧର ବ୍ୟକ୍ତି ଅବନତି ପଥରେ ଚାଳିତ ହୁଏ ଓ ଅହ ରହ ଅଶାନ୍ତ ହୋଇପଡ଼େ।

ଏ ପୃଥିବୀ ସୁଖ ସମ୍ଭୋଗର ଗନ୍ତାଘର। ଆମେ ନିଜପାଇଁ ସବୁ ଗୋଟାଇ ନେବାକୁ ତତ୍ପର। ଏ ପୃଥିବୀ ମଧ୍ୟ ଦୁଃଖ ଦୁର୍ଭାଗ୍ୟର ଗନ୍ତାଘର। ସୁଖାନ୍ୱେଷୀ ମଣିଷ ସେ ଦିଗକୁ ଦୃକ୍‌ପାତ କରେ ନାହିଁ। ଜଣେ ବଣ ଜଙ୍ଗଲର ଆଦିବାସୀ, ଯଥାର୍ଥ ସାଧୁ ଓ କବି କହିଥିଲେ, '' ପ୍ରାଣୀଙ୍କ ଅପ୍ରମିତ ଦୁଃଖ ସହି ହେଉନାହିଁ। ମୁଁ ପଛେ ନର୍କରେ ପଡ଼େ; ସେମାନେ ଦୁଃଖରୁ ଉଦ୍ଧାର ପାଆନ୍ତୁ''। ଏହି ସନ୍ଥ କବି ମଣିଷର ଦୁଃଖକୁ ବୁଝିଥିଲେ। ତାର ଯନ୍ତ୍ରଣାର ଅତି ନିକଟରେ ଉପସ୍ଥିତ ଥିଲେ । ଦୁଃଖୀ ମଣିଷର ସାଥୀ ହୋଇଥିଲେ, ବିବିଧ ଦୁର୍ଭୋଗ ଓ ଦୁର୍ଭାଗ୍ୟକୁ ହୃଦୟଙ୍ଗମ କରିଥିଲେ। ରୋଗ, ଶୋକ, ଦାରିଦ୍ର୍ୟ ପ୍ରପୀଡ଼ିତ, ନିରନ୍ନ ବ୍ୟକ୍ତି ପ୍ରକୃତରେ ଦୁଃଖୀ। ପ୍ରିୟ ବ୍ୟକ୍ତି ହରାଇଥିବା ଲୋକ ଓ ରୋଗ ଯନ୍ତ୍ରଣା ପୀଡ଼ିତ ବ୍ୟକ୍ତିର ଦୁଃଖ ଅସହଣୀୟ। ଆମେ କିନ୍ତୁ କେବେ ଭାବୁନାହୁଁ ଯେ, ମୁଁ ରୋଗ ଭୋଗୁନାହିଁ, ନିକଟତମ ଆତ୍ମୀୟର ମୃତ୍ୟୁକଷ୍ଟ ଅଙ୍ଗେ ନିଭାଉନି, ଉପାସ ରହିନାହିଁ,ତେବେ ମୁଁ କାହିଁକି ନିଜକୁ ସୁଖୀ ମଣିବି ନାହିଁ ? ଏ ସର୍ବନିମ୍ନ ଅଥଚ ସର୍ବୋତ୍କୃଷ୍ଟ ସୁଖକୁ କେହି ସୁଖ ବୋଲି ଗଣେ ନାହିଁ। ଜୀବନ କ୍ଷେତ୍ରର ଝଲମଲ ଉଜ୍ଜ୍ୱଳ ଦିଗ, କେବଳ ବ୍ୟସ୍ତତା, ପ୍ରତିଯୋଗିତା ଓ ଈର୍ଷାରେ ଭରପୁର- ଏକଥା କିଏ ନ ଜାଣେ ? ଅପେକ୍ଷାକୃତ ସମାହିତ, ଆତ୍ମବିଶ୍ୱାସ ସଂପନ୍ନ, ଉଦାରତାରେ ସୁଗନ୍ଧିତ ଦିଗଟି ଉପେକ୍ଷିତ ହୋଇ ପଡ଼ିରହେ।

ମୋ ସହକର୍ମିଣୀର ଯେଉଁ ଝିଅଟି ସୀମା-୩୪ ବର୍ଷ ବୟସରେ ହଠାତ୍ ପୀଡ଼ିତ ହୋଇପଡ଼ିଲା, ସ୍ୱାମୀ ତା'ର ଇଞ୍ଜିନିୟର ଅଥଚ ମଦ୍ୟପ, ଛୋଟ ଝିଅ ଦୁଇଟି। ସୀମା ହଠାତ୍ ଜାଣିବାକୁ ପାଇଲା ତାକୁ ରକ୍ତ କ୍ୟାନ୍‌ସର। ଶାଶୁ ଶ୍ୱଶୁରଙ୍କ ପ୍ରତି ସେବା ପରାୟଣା, ପରିବାର ପ୍ରତି ବିଚାରଶୀଳା, ସ୍ୱାମୀର ନିଷ୍ଠୁରତାକୁ ସହି ନେଉଥିବା ସେହି ସୀମା ପୁଣି ଅଧ୍ୟାପିକା, ପି.ଏଚ.ଡ଼ି ପ୍ରାପ୍ତ ହୋଇଛି। ସୁସ୍ଥ ଥିବା ସମୟ ଭିତରେ ସେ ଅଧ୍ୟୟନ କରିଛି। ପିଲା ଦୁଇଟିକୁ ଜନ୍ମ ଦେଇ ଲାଳନ କରିଛି। ଅଥଚ ଯେତେବେଳେ ସେ ଟିକେ ଶାନ୍ତିରେ ନିଶ୍ୱାସ ମାରନ୍ତା, ଦୁରାରୋଗ୍ୟ କ୍ୟାନ୍‌ସର, ଯାହାରଅନ୍ୟନାମ ମୃତ୍ୟୁ, ସେ ଆସି ତାର

ଲଳିତ ସୁନ୍ଦର ଶରୀରକୁ କବଳିତ କରିଛି । ପ୍ରଚୁର ଅର୍ଥ ଶ୍ରାଦ୍ଧ ପରେ, ସୀମା ଯେ ବଞ୍ଚି ରହିବ କି ଗ୍ୟାରେଣ୍ଟି ରହିଛି ? ଦୁଇଟି ସାନ ସାନ ଝିଅଙ୍କୁ ମାତୃହରା କରି ସୀମା ଏ ସଂସାରରୁ ବିଦାୟ ନେବ ମାତ୍ର ୩୫ ବର୍ଷ ବୟସରେ । ଖାଲି ବଞ୍ଚି ରହିଥାନ୍ତା ସେ, ସଂସାର ଭିତରେ ଝିଅ ଓ ସ୍ୱାମୀଙ୍କୁ ଧରି । ତା'ତ ସମ୍ଭବ ହେଲା ନାହିଁ- ସହଜ ମରଣ, ଆକସ୍ମିକ ମରଣ ମଧ୍ୟ ଘଟିଲା ନାହିଁ । ଅକଥନୀୟ ଯନ୍ତ୍ରଣା, ଅପର୍ଯ୍ୟାପ୍ତ ଅର୍ଥଶ୍ରାଦ୍ଧ, ଅଥଚ ସାମାନ୍ୟ ଟିକେ କେଇବର୍ଷ ବଞ୍ଚି ରହିବା ସୌଭାଗ୍ୟ ତାଠୁଁ ଛଡ଼ାଇ ନିଆଗଲା, ତିଳ ତିଳ ଶାରୀରିକ ଯନ୍ତ୍ରଣାରେ ଛଟପଟ ସୀମାକୁ ଲକ୍ଷ୍ୟ କଲେ, କେହି ସଚେତନ ମଣିଷ, କ'ଣ ଭାବି ପାରିବ ଯେ, ବୁଝି ପାରିବ ଯେ, ତା'ର ସକଳ ସୌଭାଗ୍ୟରୁ ଟିକେ ଉଣା ପଡ଼ିଗଲା ବୋଲି ସେ ଦୁଃଖୀ ହୋଇ ପଡୁଛି ?

ଯେମିତି ମୋର ପଡ଼ୋଶୀ, ଡାକ୍ତରଙ୍କ ପତ୍ନୀ ରେଣୁକା । ସୁନ୍ଦର ସୁସଜ୍ଜିତ ଘର । ସ୍ନେହଶୀଳ, ହୃଦୟବାନ୍ ସ୍ୱାମୀ । ପୁଅ ଦୁଇଟି କଲେଜରେ ପଢ଼ନ୍ତି । ହଠାତ୍ ସ୍ତନ କ୍ୟାନସରରେ ସେ ପୀଡ଼ିତା ହୁଏ । ସଦା ହସ ହସ ଉଚ୍ଚ ଶିକ୍ଷିତା ଗୃହିଣୀ ଜଣକ । ରୋଗ ସହିତ ଲଢ଼ିବାରେ ଲାଗନ୍ତି ବର୍ଷ ବର୍ଷ । ଥରକୁ ଥର ଦେହର ଅଂଶ କଟା ହୁଏ, ପୋଡ଼ି ସିଝିଯାଏ, ସେ ଭଲ ହୁଅନ୍ତି, ୬ ମାସ ଯାଇନଥିବ ପୁଣି ସେ ରୋଗର ଚେର ବାହାରେ । ତଥାପି ରେଣୁକା ହସନ୍ତି, ବୁଲିଯାଆନ୍ତି, ରାନ୍ଧନ୍ତି । କହନ୍ତି, ''ମୋର ଘଣ୍ଟି ବାଜିଲାଣି, ମୁଁ ଆଉ କେତେଦିନ ?'' କୁଆଡ଼େ ଯାଏ ମଣିଷର ସବୁ ଅହମିକା, ସଂପଦର ଭଣ୍ଡାର, 'ମୋର' 'ମୋର' ଭାବ, ଲୋଭ ମୋହ ! କେତେ ଦୁଃଖୀଟିଏ ରେଣୁକା ଅଥଚ ସେ ହସିପାରନ୍ତି କେମିତି ?

ଯେଉଁ ଯୁବ ଅଫିସରଟି ସେନାବାହିନୀର ଆଗରେ ରହି ଶତ୍ରୁ ପକ୍ଷକୁ ମୁକାବିଲା କରେ, ଶତ୍ରୁ ହାତରେ ଧରାପଡ଼ି ଯାଏ, ପୁଣି ତାର ଅଙ୍ଗ ପ୍ରତ୍ୟଙ୍ଗ, ହାତ, ଗୋଡ଼, ଯୌନାଙ୍ଗ, ଆଖି, ଜିଭ, ନାକ, ଖଣ୍ଡ ଖଣ୍ଡ କରି ପ୍ରତ୍ୟେକ ଦିନ କଟାଯାଏ, ପିଣ୍ଡରୁ ପ୍ରାଣ ବାହାରି ଯିବା ପର୍ଯ୍ୟନ୍ତ, ସେ ଯନ୍ତ୍ରଣାର ସୀମା ଅଛି ? ସଇତାନ୍ ବି ଏଭଳି ଯନ୍ତ୍ରଣା ଦେଖି ଧୈର୍ଯ୍ୟ ଧରନ୍ତା ନାହିଁ । ଆହା ! ମଣଷ ଏତେ ଯନ୍ତ୍ରଣା କାହିଁକି ଭୋଗେ ? ଅଦୃଷ୍ଟ ଦଣ୍ଡ ଦିଏ, ପୁଣି ମଣିଷ ବିକଟ ପଶୁ ପାଲଟିଯାଏ ! କେମିତି ସହନ୍ତି ସେନାବାହିନୀର ସେହି ଯୁବ ଅଫିସରର ବାପା ମାଆ, ଭାଇ ଭଉଣୀ, ତା'ର ଏତାଦୃଶ ବିୟୋଗ ଦୁଃଖକୁ ? ସତେରେ ମଣିଷ ଦୁଃଖର ସ୍ୱରୂପ ଏପରି ବହୁମୁଖୀ, ଏପରି ତୀବ୍ର ଓ ବିବିଧ ।

ବିମାନ ଅପହରଣ ଘଟଣାରେ ନବବିବାହିତା ବଧୂ ରଚନା କଟିଆଇ । ମଧୁଚନ୍ଦ୍ରିକା କାଳରେ ସ୍ୱାମୀକୁ ହରାଏ ସେ । ବିନା ଦୋଷରେ, ଅକାରଣରେ । କୋଉଠି ଦୈବ ନିର୍ଦ୍ଦୟ ହୁଏ ତ, କୋଉଠି ମଣିଷ ରାକ୍ଷସ ପାଲଟେ । ଏହି ଦୁଇଟି କାରଣରୁ ହିଁ ଯନ୍ତ୍ରଣା ଦଗ୍ଧ ହୁଏ ମଣିଷ । ତାର ସକଳ ଦୁଃଖର ହେତୁ ମଣିଷ ଓ ଅଦୃଷ୍ଟ ଉଭୟେ । ଦୁଃଖ ଦୁର୍ଭୋଗର ସ୍ୱରୂପ ନିର୍ଦ୍ଦିଷ୍ଟ ନୁହେଁ, ଅଥଚ ଭୟଙ୍କର ଶାରୀରିକ ଓ ମାନସିକ ଯନ୍ତ୍ରଣା ମଣିଷ ପାଇଁ ରହିଛି ।

ମଣିଷ ପାଇଁ ସୁଖ ଯେତିକି ରହିଛି, ଦୁଃଖ ରହିଛି ତା'ଠାରୁ ପ୍ରବଳ। ଅଥଚ ଆମେ ସବୁବେଳେ ସୁଖ ଖୋଜୁ। ନିଜ ମନମୁତାବକ ସବୁକିଛି ଘଟିଲା ନାହିଁ, ଚାହିଦା ମୁତାବକ ସବୁକିଛି ପାଇଲୁ ନାହିଁ ବୋଲି। ଭାବୁ ଆମେ ଭାଗ୍ୟହୀନ ଦୁଃଖୀ। ବୃହତ୍ତର ପରିପ୍ରେକ୍ଷୀରେ ପ୍ରକୃତରେ ଦୁଃଖୀ ମଣିଷ ସ୍ଥାନରେ ନିଜକୁ ରଖି ପରୀକ୍ଷା କଲେ, ତୁଳନା କରି ଦେଖିଲେ, ଆମର ଦୁଃଖ ଯେ କାଳ୍ପନିକ, ନିତାନ୍ତ ଆତ୍ମ କୈନ୍ଦ୍ରିକ, ଏହା ବୁଝିହୁଏ। ବୁଝିଲେ ସହାନୁଭୂତିରେ ସିକ୍ତ ହୁଏ ମନପ୍ରାଣ। ଦରଦୀ କବି ଗାଇ ଉଠନ୍ତି- ସହିପାରିବି ନାହିଁ, ପ୍ରାଣୀଙ୍କର ଏ ଆର୍ତ୍ତି - ମୋତେ ସେ ଦୁଃଖ ଦିଅ, ପ୍ରାଣୀଙ୍କୁ ଉଦ୍ଧାର କର ପ୍ରଭୁ-'' ଈଶ୍ୱର ଶୁଣନ୍ତି କି ନା, ଭିନ୍ନ କଥା। ନଶୁଣିବାର ପ୍ରମାଣ ଅଧିକ ମିଳିଥାଏ। ତଥାପି ମଣିଷର ଏ ଶୁଭେଚ୍ଛା, କବିର ଏ ସୁମନାସ ଆର୍ତ୍ତି ଜନତା ପାଇଁ କେତେ ବେଶି ଆଶାଜନକ ନୁହେଁ !



# ବିଭଙ୍ଗକାଳ

*(ଏକ ସତ୍ୟ ଘଟଣା ଉପରେ ଆଧାରିତ)*

ତଳେ, ଗେଟରେ କିଏ ଡାକୁଛନ୍ତି । ସୁଦୀପ ଚା ପିଉଥିଲେ । ନମିତା କହୁଥିଲେ- ''ଦେଖୁନ୍ଥ, ଟୁଲୁ ଡ୍ରଇଂ ଖାତାରେ Very good ପାଇଚି । ସୀମାର ଭଲ ଡ୍ରଇଂ ହୁଏନା, ତ, ସୀମା ସେଥିପାଇଁ ସବୁଠୁଁ ବେଶି ଖୁସି ।'' ଡ୍ରଇଂ ଖାତାରୁ ଜାତୀୟ ପତାକାର ଚିତ୍ରଟି ଖୋଲି ଆଖି ଆଗକୁ ଆଣିଥିଲେ ନମିତା । ସତେରେ ୭ ବର୍ଷର ପିଲାଟା- କି ସୁନ୍ଦର ପତାକାଟେ ଆଙ୍କି ଦେଇଚି । ସୁଦୀପ ନିଜେ ବି ଡ୍ରଇଂରେ ଦୁର୍ବଳ ଥିଲେ । ''ସାର୍-ସାର୍'' ଡକୁଡାକ ଶୁଭିଲା । ସୁଦୀପ ତଳକୁ ଗଲେ ।

ତଳବାରଣ୍ଡାରେ ଗ୍ରିଲ୍‌ଗେଟ୍ । ବନ୍ଦଗ୍ରିଲ୍ ସେପଟେ ୩/୪ ଜଣ ଛାତ୍ର । ଛାତ୍ରମାନେ ପ୍ରାୟ ବରାବର ତାଙ୍କ ପାଖକୁ ଆସନ୍ତି । ସୁଦୀପ ସେଇଠି ଗ୍ରିଲ୍ ଖୋଲି ଠିଆ ଠିଆରେ କେବେ କେମିତି କିଛି ସମୟ କଥା ହୁଅନ୍ତି । ଘରଭିତରକୁ ଛାତ୍ରମାନଙ୍କୁ ପ୍ରାୟ ଡାକନ୍ତି ନାହିଁ । ଛୋଟ ଭଡ଼ା ଘରଟି ଭିତରେ ପିଲାଙ୍କୁ ବସାଇବାକୁ ପ୍ରାୟ ଜାଗାନଥାଏ । ତଳ ମହଲାରେ ବି ନିଜେ ଘର ମାଲିକ ରହନ୍ତି । ଅତଏବ ବାରଣ୍ଡାର ଗ୍ରିଲ୍‌କୁ ଖୋଲି ଧରିଲେ ସୁଦୀପ । ଯେ ପିଲାଙ୍କ ଭିତରୁ କେହି କିନ୍ତୁ ଆଜି ଖୁବ୍ ଚିହ୍ନା ଲାଗୁନାହାନ୍ତି ।

''ସାର୍, ଆଜି ଯେଉଁ କପି ଧରିଥିଲେ ରିପୋର୍ଟ କରନ୍ତୁ ନାହିଁ ସାର, କେତେ ପିଲା କପି କରୁଛନ୍ତି । ଆଜିକାଲି ଚାରିଆଡ଼େ କପି । ତାକୁ ଏଥରକ ଛାଡ଼ିଦିଅନ୍ତୁ ସାର୍ ।'' ପିଲା ଦୁଇଟି ଅନୁରୋଧ କରୁଥାନ୍ତି । ପଛରେ ଦୁଇଟି ପିଲା ଚୁପ୍‌ଚାପ୍ ଛିଡ଼ା ହୋଇଥାଆନ୍ତି । କଥା କହୁ ନଥାନ୍ତି ସତ, ମାତ୍ର ଯେ ଆଲୋଚନା ସହିତ ସେମାନଙ୍କର ସଂପୃକ୍ତି ଖୁବ୍ ବେଶି ଥିଲା ପରି ଲାଗୁଥାଏ । ସୁଦୀପ ବୁଝାଇବାକୁ ଚେଷ୍ଟାକରୁଥାନ୍ତି- ''ଆରେ ବାବୁ, ଡ୍ୟୁଟିରେ ତ ମୁଁ କିଛି ଏକୁଟିଆ ନଥିଲି । ଆଉ ଜଣେ ଦିଜଣ ସାର୍ ବି ଥିଲେ । ପିଲାଟାକୁ ବାରମ୍ବାର ମନାକରିବା ସତ୍ତ୍ୱେ ବେଖାତିର୍ କରି ସେ ଟିପି ଚାଲିଲା-୪ ପୃଷ୍ଠାର କପି । ବୁଝେଇଲେ ବି ମାନିଲାନି । କ'ଣ ଆଉ କରାଯିବ ?'' ସୁଦୀପ ଦୁଃଖରେ ଭାବୁଥିଲେ, ପିଲାଟା ବାରଣ ମାନିଥାନ୍ତା ହେଲେ । ତାର ଜିଦ୍-ସବୁ କଲେଜରେ ଚାରିଆଡ଼େ କପି- ଆପଣମାନେ କିଏ ମୋତେ ବାରଣ କରିବେ- ଉତ୍ପାତ ସେ ପିଲାର ! ତା'ପରେ ପୁଣି ଧମକାଇବାକୁ ଆରମ୍ଭ

କରିଥିଲା । ଏତେବଡ଼ ହଲ୍‌ରେ ଏତେ ପିଲା । ଜିଲ୍ଲାର ବଡ଼ କଲେଜ, ସରକାରୀ କଲେଜ, କୋଉଠି କିଏ କ'ଣ କଲାବୋଲି, ଯେ କଲେଜରେ ବି ଏୟା ହବ ! ଯେ କଲେଜର ତ ଏଯାଏଁ ମର୍ଯ୍ୟାଦା ଏତେ ତଳକୁ ଯାଇନି । ସୁଦୀପ ଓ ରଜତ ଦିହେଁ ମିଶି ପିଲାଟା ଠାରୁ କପି କରୁଥିବାର ଲେଖାଇ ଆଣିଲେ । ସେମିତି ବେଖାତିରରେ ସେ ପିଲାବି ଲେଖିଦେଲା- ସତେ କି ଏଥିରେ ତା'ର କିଛି ଯାଏ ଆସେ ନାହିଁ । ୟୁନିଭରସିଟିର ପ୍ରିଡିଗ୍ରୀ ପରୀକ୍ଷା, ସୁଦୀପ ନରମଗଳାରେ କହୁଥାନ୍ତି, ଶୁଣ, ବ୍ୟସ୍ତ କରନା, ଯିଏ କପିକଲା, ସେ ଫଳ ଭୋଗୁ । ତୁମେ ତା'ପାଇଁ କାହିଁକି ବ୍ୟସ୍ତ ? ଆମେତ ଆଜି ୟୁନିଭରସିଟିକୁ ରିପୋର୍ଟ ପଠାଇ ସାରିଛୁ ।''

ପଛ ଧାଡ଼ିରେ ଠିଆ ହୋଇଥିବା ପିଲା ଜଣେ ରାଗରେ ଗର୍‌ଗର୍ ହେଇ ଅସ୍ପଷ୍ଟ ଭାବେ କ'ଣ କହିଲା । ସାମ୍ନାର ପିଲାଜଣେ ଆକ୍ରୋଶମୂଳକ ସ୍ୱରରେ କହିଲା, ''ଠିକ୍ ଅଛି ଆମେ ମଧ୍ୟସ୍ଥତା କରୁଥିଲୁ- ନହେଲା ନାହିଁ- ସୁଦୀପ ଗ୍ରିଲଗେଟ୍‌ଟା ଆଉଜାଇ ଆଣୁଥିଲେ । ହଠାତ୍ ତାଙ୍କ ପାପୁଲିରେ ପ୍ରଚଣ୍ଡ ଚୋଟର ଆଘାତରେ ସେ ଚିତ୍କାର କରି ଉଠିଲେ ।

ଅନ୍ଧାରରେ ହେଟାବାଘ ଦୌଡ଼ିଲା ପରି ପିଲା ୪/୫ଟା କୁଆଡ଼େ ଦୌଡ଼ି ପଳାଇଗଲେ । ଥରିଥରି ବସିପଡ଼ିଲେ ସୁଦୀପ । ଆଖି ଖୋଲିଲା ବେଳକୁ ସେ ତଳ ମହଲାର ବଖରାଟିରେ ଶୋଇଛନ୍ତି । ରକ୍ତ ଯେ ରକ୍ତ ଚଟାଣ ଭିଜିଯାଇଛି । ସେମାନେ ଟେକାଟେକି କରି ତାଙ୍କୁ ଗାଡ଼ି ଭିତରକୁ ନେଲେ । ସୁଦୀପଙ୍କ ଆଙ୍ଗୁଠି ଦୁଇଟି କଟିଯାଇ ଝୁଲୁଥିଲା । ଡାକ୍ତରଙ୍କ ଅକ୍ଳାନ୍ତ ପରିଶ୍ରମରେ ହାତ ସିଲେଇହେଲା । ସେଇ କାଳରାତିରେ ଅତ୍ୟଧିକ ରକ୍ତସ୍ରାବ ହେତୁ ତାଙ୍କୁ ଚାରି ବୋତଲ ରକ୍ତ ଦିଆଗଲା । ତତ୍‌କ୍ଷଣାତ୍ କେହି ରକ୍ତଦାନକାରୀଙ୍କୁ ଯୋଗାଡ଼ କରି ହେଲା ନାହିଁ । ଘର ମାଲିକ ଓ ସୁଦୀପର ଦୁଇଜଣ ବନ୍ଧୁ ଦୌଡ଼ାଦୌଡ଼ି କରି ରକ୍ତ ଭଣ୍ଡାରରୁ ରକ୍ତ ଆଣି ଦେଲେ । ସବୁ ଦୁଃଖର ରାତି ପାହିଗଲା ପରି ସେ ରାତିଟି ବି ପାହିଗଲା । କିନ୍ତୁ ସତରେ କ'ଣ ସବୁ ଦୁଃଖର ରାତି ପାହିଯାଏ ?

ଏ ଘଟଣାଟି ଚାକ୍ଷୁଷ ଯାହାର, ସେ ମୋର ଛାତ୍ର । ସୁଦୀପର ସ୍ତ୍ରୀ ନମିତାର ସାନ ଭାଇ । ତା'ଠାରୁ ଏଇ ଘଟଣାଟି ଶୁଣି ମୁଁ ଓ ରୁନୁ ସ୍ତମ୍ଭୀଭୂତ ହୋଇଗଲୁ ।

ସେ କାଳରାତିର ସକାଳକୁ ସୁଦୀପର ମେଡ଼ିକାଲ ବେଡ୍ ପାଖରେ ଅଶ୍ରୁମୁଖୀ ନମିତା ଓ ନମିତାର ସାନଭାଇ । ସାନଭାଇ ପାଖ ସହରରେ ରହେ । ଟେଲିଫୋନ୍ ପାଇ ଆସିଲାବେଳକୁ ସକାଳ ହେଇ ଯାଇଛି । ପିଲା ଦୁଇଟିଙ୍କୁ ଘରେ ଏକା ଛାଡ଼ିଦେଇ ନମିତା ଆସିଛି । ସୁଦୀପ ହାତରେ ପ୍ରବଳ ଯନ୍ତ୍ରଣା । ନମିତାର ଅଲରାବାଳରେ, ଶୁଖିଲା ମୁହଁରେ ନିଜର ଦୁର୍ବଳ ବାମହାତକୁ ଛୁଆଁଇ ସାନ୍ତ୍ୱନା ଦେବାକୁ ଚେଷ୍ଟା କରୁଛି ସେ । ଅଥଚ ନମିତା, କି ନରୁପଦ୍ରବ ସୁଖର ଜୀବନ କାମନା କରିନଥିଲା ସେ । ଅଧ୍ୟାପକଟିଏ ବିଭାହୋଇସେ ନିଜକୁ ଖୁବ୍ ଗର୍ବ ଅନୁଭବ କରୁଥିଲା । ସୁଦୀପ ଏମ୍.କମ୍.ରେ ଗୋଲ୍ଡ ମେଡାଲିଷ୍ଟ ପୁଣି ପି.ଏଚ.ଡ଼ି- ୟୁ.ଜି.ସି. ଦରମାରେ ଚଳିବାକୁ ଯଥେଷ୍ଟ ହୁଏ । ସତେରେ, କେତେ ହସ

ଖୁସିରେ ସେ ଦୁହିଁଙ୍କ ଦିନ କଟୁ ନଥିଲା ! ପୁଅ ଝିଅ ଦୁହେଁ ସ୍କୁଲ ଯିବେ । ଖାଇବା ପିନ୍ଧିବାର ଯତ୍ନ, ଛୋଟଘରଟିକୁ ସଜାଡ଼ିବାର ଦାୟିତ୍ୱ ହସି ହସି ନିଜ ଉପରକୁ ନେଇଥିଲା ନମିତା । ହେଲେ, କ'ଣ ଏମିତି ହେଲା । କେତେ ସବଳ, ସୁଦର୍ଶନ ସ୍ୱାମୀ ତାର ଏଇଲେ କି କରୁଣ ଓ ରୋଗା ରୋଗା ଦିଶୁଛନ୍ତି । କେତେ ରକ୍ତ ଯେ କାଲି ବୋହି ଯାଇଛି । ରକ୍ତ ଦେଖିଲେ ନମିତାର ମା' ଚେତା ହରାଇ ଦିଅନ୍ତି- କେମିତି ନର୍ଭସ ବ୍ରେକ୍‌ଡାଉନ୍ ହୁଏ ତାଙ୍କର । କିନ୍ତୁ ନମିତା ତ ଖୁବ୍ ଧୈର୍ଯ୍ୟ ସହକାରେ ଏସବୁ ଦେଖିସହି ପାରିଲା ।

ଏବେ ସୁଦୀପଙ୍କୁ ଜର- ପ୍ରାୟେ ମାସେ ହେଲାଣି- ଝାଡ଼ା ବି ଲାଗି ରହିଛି । ଜଣ୍ଡିସ୍ ଅଛି । ସବୁ ପ୍ରକାର ଔଷଧ ଖାଇ ମଧ ଭଲ ହେଉ ନାହିଁ । ଏତେ ସୁସ୍ଥ ଶରୀର- ଶୁଖିଶୁଖି ଆସିଲାଣି । କ'ଣ ଏମିତି ହେଉଛି ? ସୁଦୀପର ଓ ନମିତାର ବଡ଼ଭାଇ ଉଭୟେ ଆସି ତାର ଚିକିତ୍ସାର ଯତ୍ନ ନେଉଛନ୍ତି । ବଡ଼ ମେଡ଼ିକାଲର ବିଶେଷଜ୍ଞମାନେ ଦେଖୁଛନ୍ତି । ନମିତା କେତେ ଦେବଦେବୀଙ୍କୁ ମାନସିକ କରିସାରିଲାଣି- ବିକଳରେ ଗୁହାରି ଜଣାଇଲାଣି । ସୁଦୀପର ବଡ଼ ଭାଇଙ୍କ ବନ୍ଧୁ ଜଣେ ବିଶେଷଜ୍ଞ ଡାକ୍ତର । ସେ କେମିତି କେଜାଣି ବ୍ୟସ୍ତ ହେଇ ପଡ଼ିଲେ । ସେଦିନ ରକ୍ତ ପରୀକ୍ଷାର ରିପୋର୍ଟ ଆଣି ଆସିଲାବେଳକୁ ତାଙ୍କ ମୁହଁ ଯେମିତି ନସ୍‌କି ପଡ଼ିଛି । ସମସ୍ତେ ଆଶଙ୍କିତ ହେଇ ଉଠିଲେ । ସୁଦୀପ ରକ୍ତ ଟ୍ରାନ୍ସଫ୍ୟୁଜସନ୍ ନେଇଥିଲେ, ଏଇ ମାତ୍ର ୬ ମାସ ତଳେ । ସେଥିରେ ଦୂଷିତ ରକ୍ତ ଚାଲିଯାଇଛି । ଏବେ, ୩୫ ବର୍ଷର ଯୁବ ଅଧ୍ୟାପକ ସୁଦୀପଙ୍କର ରକ୍ତରେ ଏଚ୍.ଆଇ.ଭି. ପଜିଟିଭ ରହିଛି । ଏଡ୍ସ ରୋଗର ଭୂତାଣୁ ଦ୍ୱାରା ସେ ସହଜରେ ଆକ୍ରାନ୍ତ ହେବେ ।

ଛୋଟ ପରିବାରଟି ଉପରେ ଯେମିତି ଦୁଃଖର କଳାମେଘ ଘୋଟି ଆସିଲା । ସୁଦୀପ ଓ ନମିତାଙ୍କ ବାପ ମା' ଭାଇଭଉଣୀ ହାହାକାରକଲେ । କାହାକୁ ବା କହିହେବ ଏକଥା ? ସମାଜ ତ ଏଇଲେ ବାସନ୍ଦ କରିବସିବ । ନମିତା ଆଉ ପିଲାମାନେ । ଆଜିକାଲି ସୁଦୀପ ସଙ୍କୁଚିତ ହୋଇଯାଉଛନ୍ତି । ସେଇ ଦୁର୍ଘଟଣା ପରେ ପରେ ଅବଶ୍ୟ ଅନ୍ୟଏକ ସହରକୁ ସେ ବଦଳି ହେଇ ଆସିଛନ୍ତି । ଜଣ୍ଡିସ୍ ଭଲ ହୋଇ ଯାଇଛି । ମାତ୍ର କିଛି ନା କିଛି ଅସୁସ୍ଥତା ଲାଗିରହିଛି । ନିୟମିତ କଲେଜ ଯାଇ ପାଠ ପଢ଼ାଉଛନ୍ତି । ଏହି ଦୁର୍ଭାଗ୍ୟଜନକ ଘଟଣାଟି ଖୁବ୍ ବେଶି ପ୍ରଚାରିତ ହେବାକୁ ଦିଆଯାଇ ନାହିଁ । ସୁଦୀପ ନିଜ ଘରେ ଅଲଗା ହେଇ ରହୁଛନ୍ତି । ପିଲାମାନଙ୍କୁ ଖୁବ୍ ନିକଟରେ ରଖିବା, ଚୁମାଦେବା ଇତ୍ୟାଦିରୁ ନିଜକୁ ଦୂରେଇ ରଖୁଛନ୍ତି । ନମିତା ପାଇଁ ତାଙ୍କ ଆଖିରେ ବିଷଣ୍ଣ ସହାନୁଭୂତି । ନମିତା-ସେ ଯେମିତି ଛାୟାଟିଏ- ପିଲା ଦୁଇଟିଙ୍କ ଭବିଷ୍ୟତ ଓ ସ୍ୱାମୀଙ୍କ ଦୁର୍ଭାଗ୍ୟକୁ ସେ କୌଣସି ମତେ ସଂଲଗ୍ନ କରିପାରୁ ନାହିଁ । ଅଥଚ, ମନ ପ୍ରାଣଦେଇ ସେମାନଙ୍କ ସେବା କରି ଲାଗିଛି । ଆଗକୁ ଆଖି ପାଉନାହିଁ- ସବୁକିଛି ଅନ୍ଧାର ଲାଗୁଛି ।

ରୁନୁ ଓ ମୁଁ ଶିହରି ଉଠିଲୁ । ସୁଦୀପ ଓ ତାଙ୍କ ପରିବାର ପାଇଁ ଆମ ଅନ୍ତର ବିଚଳିତ ହୋଇଗଲା । କୋଉ ଦୋଷରେ ସେ ଏଇ ଦଣ୍ଡ ଭୋଗିଲେ ? ଭଲ ଅଧ୍ୟାପକ, ଛାତ୍ରବତ୍ସଳ, କର୍ତ୍ତବ୍ୟନିଷ୍ଠ- କ'ଣ ବା ସାଫଲ୍ୟ ମିଳିଲା ତାଙ୍କୁ ? ଅବିମୃଶ୍ୟକାରୀ, ମୂଢ଼ କେଉଁ ଯୁବକର

ମୁହୂର୍ତ୍ତକ ଉଦ୍ଭ୍ୟକ୍ତ କାଣ୍ଡରେ ଜୀବନ ତାଙ୍କର ବିଷାକ୍ତ ହେଇଗଲା । ଦୁଇଟି ଛୋଟ ଶିଶୁଙ୍କ ଭବିଷ୍ୟତ ହେଲା ବିପନ୍ନ । କିଏ ଏଥିପାଇଁ ଉତ୍ତର ଦାୟୀ ହେବ ? ଅବମୂଲ୍ୟାୟିତ ଏଇ ସମାଜରେ ଯୁବଗୋଷ୍ଠୀଙ୍କର ଏ କାଣ୍ଡଜ୍ଞାନଶୂନ୍ୟତାକୁ କୋଉ ଭାବରେ ବିଚାର କରି ହେବ ? ଗାଁକୁ ଗାଁ କଲେଜ, ପରୀକ୍ଷା ବେଳେ କପି, ବାହାରେ ଲୋକ ଠିଆ ହୋଇ ପ୍ରଶ୍ନପତ୍ରର ଉତ୍ତର ଡାକିବା, ଶିକ୍ଷକ, ଅଭିଭାବକ ପରୀକ୍ଷାର୍ଥୀଙ୍କୁ କପି ଯୋଗାଇବା- ଏସବୁ ବହୁ ନୂତନ କଲେଜରେ ନିତ୍ୟ ନୈମିତ୍ତିକ ଘଟଣା । ଫଳରେ ପୁରୁଣା କଲେଜ, ଅନ୍ୟ ବଡ଼ ବଡ଼ କଲେଜର କେତେକ ପିଲା ଅସହିଷ୍ଣୁ ହୋଇ ଉଠୁଛନ୍ତି । ଜ୍ଞାନ ଆହରଣ ନୁହେଁ, ଯେନତେନ ପ୍ରକାରେଣ ଡିଗ୍ରୀ ହାସଲ କରିବା ଓ ଅର୍ଥବିନିମୟରେ ସରସ୍ୱତୀଙ୍କୁ କ୍ରୟ କରିବା ଏଯୁଗର ବେପାରୀ ସ୍ୱଭାବର ପରିଣତି । ତ୍ରୁଟିପୂର୍ଣ୍ଣ ଶିକ୍ଷାବ୍ୟବସ୍ଥାର ଯୂପକାଠରେ ବଳି ପଡ଼ିଲେ ଯୋଉ ସୁଦୀପ ଓ ତାଙ୍କ ପରି କେହି କେହି- ସେମାନଙ୍କ ପାଇଁ କି ସାନ୍ତ୍ୱନା ଅଛି ?

ରୁନୁ ମନେ ପକାଇଦେଲା, ‘‘ଆରେ, ତୁ ଜାଣିନୁ କି, ଅନେକବର୍ଷ ତଳେ ଆଉ ଜଣେ ଅଧ୍ୟାପକ କପି ଧରିବାକୁ ଯାଇ ନିଜର ଆଖି ଗୋଟିଏ ହରାଇଥିଲେ ।’’ଅଥଚ, ଆମ ଦେଶରେ ଗୁରୁଶିଷ୍ୟର ଯେଉଁ ମହାନ୍ ପରମ୍ପରା ଥିଲା, ତାର ଚିହ୍ନବର୍ଣ୍ଣତକ ବି ହଜିଗଲା କୁଆଡ଼େ ? ତାକୁ କ’ଣ ଆଉ ଖୋଜି ଆଣି ହେବ ନାହିଁ ? ପ୍ରତିଷ୍ଠିତ କରିହେବ ନାହିଁ ସେହି ତ୍ୟାଗଭିତ୍ତିକ, ଜ୍ଞାନଗର୍ଭକ ସମ୍ପର୍କ ? ସମଗ୍ର ମାନବ ସଭ୍ୟତାର ବିକାଶ ପଥରେ ଗୁରୁଶିଷ୍ୟର ଆତ୍ମିକ ସଂପର୍କର ଅବଦାନ ଯେ ଅତୁଳନୀୟ ଏହା ଉପଲବ୍ଧି କରି ଏ ଦିଗରେ ଉଦ୍ୟମ କରିବ କିଏ ? ଗୁରୁ ନା ଶିଷ୍ୟ ? ନା ଆମର ସମାଜ ବ୍ୟବସ୍ଥା ଗଢୁଥିବା ସମାଜପତିମାନେ ?



# ବାଲ୍ୟକାଳ : ରକ୍ତ ଜର୍ଜର

ଚାରିଆଡ଼େ କ୍ରିକେଟ ଖେଳ । ଗାଁ ମାନଙ୍କରେ ବହୁବର୍ଷ ପୂର୍ବେ ଚାଲୁଥିଲା ଡୁଡୁ ଖେଳ, ବୋହୂଚୋରୀ, ଚିଙ୍ଗୁଡ଼ିବାଲୁବାଲୁ, ଲୁଚକାଳି ଖେଳ ତ ସହଜେ । ଏବେ କିନ୍ତୁ ଯୁଗ ବଦଳିଲା, କ୍ରିକେଟ ଖେଳ । ଟିଭିରେ ଯୋଉଦିନ ଖେଳ ପ୍ରଚାର ହେବ ସେଦିନ ପିଲାଙ୍କ ସ୍କୁଲ କଲେଜ ଯିବା ବନ୍ଦ । ଶିଶୁମାନେ ବି କ୍ରିକେଟ ଖେଳରେ ମଜ୍ଜିଗଲେ । ୭/୮ ବର୍ଷର ପୁଅପିଲା ବି କ୍ରିକେଟ ଖେଳିଲେ । ଷ୍ଟମ୍ପ ପୋତି, ବ୍ୟାଟ ଧରି ବ୍ୟାଟିଂ, ବୋଲିଂ ଚଲେଇଲେ । ମହାନ୍ କ୍ରିକେଟ ତାରକାଙ୍କ ଛକାପଞ୍ଝା ବଣିକ ବେପାର ଯଦିଓ ସାରା ବିଶ୍ୱର କ୍ରିକେଟପ୍ରେମୀଙ୍କୁ ଆହତ ଓ ବିସ୍ମିତ କରିଦେଲା, ତଥାପି ଖେଳର ମଉଜ ଉଣା ପଡ଼ିଲା ନାହିଁ । ଶିଶୁମାନେ ବି କ'ଣ ଜାଣନ୍ତି ଯେ ମ୍ୟାଚଫିକ୍ସିଂ କଥା । ସେମାନେ ସବୁ ଖେଳରେ କ୍ରିକେଟ ଖେଳ ପ୍ରତି ଆଗ୍ରହୀ । ସବୁକିଛି ଯୁଗୋପଯୋଗୀ ହୋଇଥାଏ । ସହରୀ ପିଲା ସେମାନେ । ଖେଳରେ ଝଗଡ଼ା ହେବା କିଛି ନୂଆକଥା ନୁହେଁ ।

ଆଜିଠାରୁ ୨୨/୨୩ ବର୍ଷ ତଳେ ମୁଁ ରେଭେନ୍ସା କଲେଜରେ ଥାଏ । ଜଣେ ତରୁଣ ଇଂରାଜୀ ଅଧ୍ୟାପକ ଓଡ଼ିଶାର ହକି ଦଳରେ ଖେଳିବାକୁ କଲିକତା ଯାଇଥାଆନ୍ତି । ଶୁଣିବାକୁ ମିଳିଲା, ସେ ଆହତ ହୋଇଛନ୍ତି । ଈର୍ଷାଜନିତ ମାଡ଼ ବାଜିଛି ତାଙ୍କ ଦେହରେ । ବିପକ୍ଷ ଦଳ ଖେଳାଳୀ ଜଣେ ଷ୍ଟିକରେ ପିଟି ଦେଇଛି ତାଙ୍କୁ ମୁହଁକୁ । ତଳ ମାଢ଼ି ଓ ଦାନ୍ତତକ ଖସି ପଡ଼ିଛି । କିଛି ଦିନ ପରେ ସେ କଲେଜ ଆସିଲେ । ଦାନ୍ତସବୁ ତାରରେ ବନ୍ଧା ହୋଇଥାଏ । ଭଲ କି' ସୁସ୍ଥ ହୋଇନଥାନ୍ତି । କହିଲେ, ''ମ୍ୟାଡାମ ଜାଣିଶୁଣି ରାଗ ରଖି ମୋତେ ପିଟିଦେଲା, ସେଠି ମୋଟେ ବଲ ନଥିଲା, ସେତେବେଳକୁ ବଲ ଗଡ଼ି ଯାଇ ସାରିଥିଲା । ଅଥଚ ସେ ମୋ ମୁହଁକୁ ଲକ୍ଷ୍ୟକରି ପାହାରଟେ ବସାଇଲା ।''

ଷ୍ଟାଡ଼ିୟମରେ ଖେଳ ହେଲେ ରେଫରୀ ଥାଆନ୍ତି । ସେ ଯାହା ନିର୍ଣ୍ଣୟ ନିଅନ୍ତି, ତାହା ସମସ୍ତେ ମାନନ୍ତି । ସେଥିପାଇଁ ପୂର୍ବରୁ ଶପଥ ନେଇଥାଆନ୍ତି । କିନ୍ତୁ ଯେ ଛୋଟ ପିଲାଙ୍କର ଛୋଟକାଟିଆ ଖେଳରେ ତ ସେମିତି କିଛି ନିୟମ ନଥାଏ । ଅତଏବ କଳି ହେବା ସ୍ୱାଭାବିକ ।

ମୋର ମନେ ଅଛି ୯/୧୦ବର୍ଷ ବୟସରେ ମୁଁ ମାମୁଁଘରେ ଥିଲା ବେଳେ ମୋତେ ତାସ ଖେଳର ନିଶା ଘାରିଥିଲା । ଆଈମାନଙ୍କ ସହିତ ତାସ ଖେଳ । ତେବେ ବେଶିଦିନ ପାଇଁ ନୁହେଁ । ଘରକୁ ଫେରି ସ୍କୁଲ ପଢ଼ାରେ ମନ ଦେବାରୁ ସେ ନିଶାରୁ ବର୍ତ୍ତିଗଲି । ପରେ, କେବେ ତାସନିଶା ଘାରିଲେ ପିଲାଙ୍କୁ ବୁଝାଏ ''ତାସ୍, ସର୍ବନାଶ'' । ମନେ ଅଛି ତାସ ଖେଳରେ ଠରାଠରି ଚାଲେ, ହାରଜିତ୍ ଥାଏ, ଠିକ୍ ଭୂଲ ନିୟମ ବେନିୟମ ବି ଥାଏ । ଯୁକ୍ତିତର୍କ ହୁଏ । ତାସ ଫିଙ୍ଗା ଫୋପଡ଼ାହୁଏ । କେହି କେହି ହାରିଗଲେ କାନ୍ଦି ପକାନ୍ତି ମଧ୍ୟ ।

ସେଦିନ ୭/୮/୯/୧୦ ବର୍ଷର ୪ ଜଣ ପିଲା କ୍ରିକେଟ ଖେଳରେ ମାତିଥିଲେ । ଖେଳକୁ କଳି, ମାରଧର । କେହି କାହାକୁ ମାନିଲେ ନାହିଁ । କଳିରୁ ମାରଧର ଯାଏ କଥା ଗଲା । ୮ ବର୍ଷର ପିଲା ଲଛମନ୍, ତାକୁଆଉ ତିନିଜଣ ଖେଳ ସାଙ୍ଗ ମିଶି ଷ୍ଟମ୍ପରେ ପିଟିଲେ । ସେ ତଳେ ପଡ଼ିଗଲା । ତଥାପି ଏମାନଙ୍କର ଦୟା ବା ଭୟ କିଛି ହେଲେ ଆସିଲା ନାହିଁ । ଲଛମନ ହୁଏତ ଗାଳିମନ୍ଦ କରୁଥିବ । ଶେଷକୁ ଷ୍ଟମ୍ପର ମୁନିଆଁ ଅଂଶକୁ ତା'ର ପେଟରେ ଭୁଷିଦେଲେ । ତା'ର ଚିତ୍କାରରେ ବି ଦବିଗଲେ ନାହିଁ । ତାପରେ ୩ ଜଣ ଶିଶୁ ଆତତାୟୀ ସେଠାରୁ ଫେରାର ହୋଇଗଲେ । ବହୁତ ପରେ ଲଛମନକୁ ଖୋଜୁ ଖୋଜୁ ତା'ର ମୃତଦେହ ମିଳିଲା ।

ପାଶ୍ଚାତ୍ୟ ଦେଶରେ, କୁବେର ନଗରୀ ଆମେରିକାରେ ଶିଶୁଟିଏ ପିସ୍ତଲ ଚଳାଇ ତାର ସହପାଠୀକୁ ହତ୍ୟା କଲା । ଭାରତ ବର୍ଷରେ, ଶାନ୍ତି ଓ ସହବସ୍ଥାନ ପାଇଁ ବିଶ୍ୱପ୍ରସିଦ୍ଧ ଯେ ମାଟିରେ ଶିଶୁମାନେ ମଧ୍ୟ ପରସ୍ପରକୁ ଅତି ନିର୍ଦ୍ଦୟ ଭାବେ ହତ୍ୟା କରିବାର ଯେ ଏକ ଦୃଷ୍ଟାନ୍ତ ।

ଶିଶୁମାନେ କେବେ ହରାଇ ବସିଲେ ସେମାନଙ୍କ ସରଳ, ନିଷ୍ପାପ ଶୈଶବ ? ସ୍ନେହ ପ୍ରତ୍ୟାଶୀ ମନ ? ପ୍ରକୃତି ପ୍ରବଣ ଦୃଷ୍ଟି ? ଖେଳ ଘର ପ୍ରତି ମାୟା ? ଏ ନିର୍ମମ, ନିଷ୍ଠୁର ରାକ୍ଷସ ସ୍ୱଭାବର ଅଧିକାରୀ ହେଲେ କେବେଠାରୁ ? ବାପା ମାଆ ପିଲା ଏକାଠି ବସି ଯେଉଁ ଟିଭିର ମନୋରଞ୍ଜନ ମାଧ୍ୟମକୁ ଉପଭୋଗ କଲେ, ସେଥିରେ ମଧ୍ୟ ନାରକୀୟ ହତ୍ୟାକାଣ୍ଡର ଅପର୍ଯ୍ୟାପ୍ତ ଦୃଶ୍ୟ ଦେଖିଲେ । ଚଳଚ୍ଚିତ୍ର ମାଧ୍ୟମରେ ଛୁରୀ, ବୋମା, ରଡ଼, ହତ୍ୟା, ନିଷ୍ଠୁରତା ଓ ପ୍ରଚୁର ରକ୍ତ ଦେଖି ଦେଖି ସେମାନେ ମଧ୍ୟ ଅବସନ୍ନ । ଦୂରଦର୍ଶନରେ ଯେଉଁ ରକ୍ତପାତ ହୁଏ, ତାହା ବାସ୍ତବ ରକ୍ତପାତ ନୁହେଁ, ସେଥିରେ ମୃତ୍ୟୁ ଯନ୍ତ୍ରଣା ସତ୍ୟ ନୁହେଁ । ତାହାଦ୍ୱାରା ମନୋରଞ୍ଜନ ହୁଏତ ହୋଇଥାଏ । ମାତ୍ର ଶିଶୁ ହୃଦୟରେ ସେ ସବୁ ବୁଝିବା ପାଇଁ ପ୍ରସ୍ତୁତି ନ ଥାଏ । ରକ୍ତପାତ ଦେଖି ଦେଖି ସେଥିପ୍ରତି ଦର୍ଶକମାନଙ୍କର ସହାନୁଭୂତିର ଅଭାବ ଦେଖି ଦେଖି କ୍ରମଶଃ ଶିଶୁଟି ଅଭ୍ୟସ୍ତ ହୋଇପଡ଼େ । ସ୍ଥଳ ବିଶେଷରେ ଦୁର୍ଦ୍ଦାନ୍ତ ଚରିତ୍ର ମଧ୍ୟ ତାକୁ ଆକୃଷ୍ଟ କରିଥାଏ । ସେଥିପାଇଁ, ଲଛମନର ପେଟରେ ଷ୍ଟମ୍ପ ଭୁଷିଲା ବେଳେ ଶିଶୁ ତିନି ଜଣଙ୍କୁ କାର୍ଯ୍ୟଟି ଖୁବ୍ ବୀରତ୍ୱ ବ୍ୟଂଜକ ମନେ ହେଇଥିବ ନିଜ କ୍ରୋଧର ଉପଶମ ହୋଇପାରିବ ବୋଲି ସେମାନଙ୍କର ଧାରଣା ହୋଇଥିବ । ପରସ୍ପର ପ୍ରତି

ହିଂସା, ହତ୍ୟାକାଣ୍ଡ ଯେ କେତେବଡ଼କୁକାର୍ଯ୍ୟ ଏହା ସେମାନେ ହୃଦୟଙ୍ଗମ କରି ନଥିବେ । ସେମାନଙ୍କ ଚରିତ୍ରକୁ ଗଢ଼ିବାର ଦାୟିତ୍ୱ ଯେଉଁ ବାପା ମାଆଙ୍କର, ସେମାନେ କି ଭୂମିକା ନିର୍ବାହ କଲେ ?

ଏବେ ଯାଏ ବି, ଭାରତୀୟ ବାପାମା ସାରା ବିଶ୍ୱରେ ଆଦର୍ଶ । ସନ୍ତାନ ପ୍ରତି ସେମାନଙ୍କର ଦାୟିତ୍ୱବୋଧ ଅନେକ । କିନ୍ତୁ ସେମାନେ ଏସବୁ ବିଷୟ ଅନୁଧ୍ୟାନ କରିବା ଉଚିତ । ହିଂସା, ରକ୍ତ ପାତର ଭୟାବହତା ତଥା ଅମାନୁଷିକତା ବିଷୟରେ ଶିଶୁଟିକୁ ଅବଗତ କରାଇବା ସେମାନଙ୍କ ଦାୟିତ୍ୱ । ପରସ୍ପର ପ୍ରତି ସହନଶୀଳ ଆଚରଣ ଯେ ଅପରିହାର୍ଯ୍ୟ ଓ କେତେ ମହତ୍ ଏ ବିଷୟରେ ତାକୁ ଉପଯୁକ୍ତ ଶିକ୍ଷା ଦେବା ଦରକାର । ନ ହେଲେ ଏହିପରି ଭାବେ କୋମଳ ଶୈଶବ ରକ୍ତରଞ୍ଜିତ ହେଉଥିବ । ବାପା, ମାଆ, ପ୍ରିୟ ପରିଜନ, ଶିକ୍ଷକ ସମସ୍ତେ ମିଶି ଶୈଶବକୁ ସୁନ୍ଦର କରିବାର ଦାୟିତ୍ୱ ନ ନେଲେ ଗତ୍ୟନ୍ତର ନାହିଁ ଏଣିକି । ଭବିଷ୍ୟତ ରକ୍ତାକ୍ତ ହୋଇଯିବ ଓ ବଂଶଧର ନିଶ୍ଚିହ୍ନ ହେବାର ସମ୍ଭାବନା ଦୂରବର୍ତ୍ତୀ ହେବ ନାହିଁ ।



# ମୁକୁଳର ତ୍ରାସ

ନିଦ ଭାଙ୍ଗୁନଥିବ ଅଜୟର । ମାଆ ବାରମ୍ବାର ଡାକି ହଲେଇ ହଲେଇ ଶେଷକୁ ଉଠାଇ ଟେକି ନେଇଥିବେ ଶେଯରୁ । ଚାରିବର୍ଷର ଅଜୟ-ନୂଆ ନୂଆ ସ୍କୁଲ ଯାଉଚି- ଖେଳ ଛାଡ଼ିନି ହାତଗୋଡ଼ରୁ କ ନିଦ ଛାଡ଼ିନି ଆଖିରୁ । କ'ଣ କରାଯିବ ? ଏଣେ ସ୍କୁଲବେଳ ହେଲାଣି । ଅଜୟକୁ ପ୍ରସ୍ତୁତ କରିବାରେ ଲାଗିପଡ଼ିଲେ ମାଆ- ଡାଡି ଚାଲିଗଲେଣି ଅଫିସ୍ । ଅଜୟ ଗେଁ ଗେଁ ହେଇ ଅଳ୍ପଟିକେ ଖାଇଲା, ପରିଚ୍ଛନ୍ନ ସ୍କୁଲଡ୍ରେସ୍ ପିନ୍ଧିଲା- ପଚାରିଲା ''ମାଆ କ'ଣ ଟିଫିନ୍ ଦଉଚ ଆଜି- ରୋଜ୍ କେକ୍ ଦଉଚ ତ ?'' ପୁଅକୁ ଜୋତା ମୋଜା ପିନ୍ଧାଇ ନିଜ ହାତରେ ବ୍ୟାଗ ଧରି ମାଆ ପଦାକୁ ଆସିଲେ, ଗାଡ଼ିରେ ବସାଇ ଦେଲେ । ଡ୍ରାଇଭର ମାର୍ଟିନ ଅଜୟକୁ 'ଗୁଡ଼ମର୍ଣ୍ଣିଂ' କହିଲା ଓ ଅଜୟ ତାକୁ ଗୁଡ଼ମର୍ଣ୍ଣିଂ ଫେରାଇଲା । ବିଦାୟ ସୂଚକ ହାତ ହଲେଇଲେ ମାଆ- ଅଜୟ ଗାଡ଼ିଭିତରୁ 'ବାଏ' କହିଲା ।

ଏମିତି ହେଇଥିବ ସେଦିନର ସକାଳ । ଚାରି ବର୍ଷର ଶିଶୁ ସ୍କୁଲ ଯାଇଥିବ । କେହି କେବେ ଭାବିଥିବ ଯେ ଏଇ ଶିଶୁକୁ ସାରା ଭାରତର ସମସ୍ତେ ଜାଣିବେ, ତାର ଫଟୋ ଦେଖିବେ- ଦେଖିବେ ମଧ ତାର ଡ୍ରାଇଭର ମାର୍ଟିନକୁ । ସ୍କୁଲ ଛୁଟି ହେଇଥିବ ଘରକୁ ଫେରି ନଥିବ ଅଜୟ । ଡ୍ରାଇଭର ବି ଗାଡ଼ି ସହିତ ଫେରାର୍ । ବାପ ମା ବ୍ୟସ୍ତ ହେଇପଡ଼ିଥିବେ- ପୁଅକୁ କେହି ପଣବନ୍ଦୀ କରିନେଲା ନାହିଁ ତ ? ବ୍ୟବସାୟୀ ବାପା ମା' ଭୟରେ କାକୁସ୍ଥ ହୋଇଥିବେ । ପଣ ସଜାଡ଼ିବାକୁ ପ୍ରସ୍ତୁତ ହଉଥିବେ । ପାଇବେ ଫୋନ୍- ''ଚାରି ଲକ୍ଷ ଟଙ୍କା ଦିଅ- ପୁଅକୁ ପାଇବ । ନଚେତ୍ ପୁଲିସକୁ ଜଣାଇଲେ ପୁଅର ଲାସ୍ ଦେଖିବ ।

ଅଜୟର ବାପା ପୁଲିସକୁ ଜଣାଇଲେ- ଖୋଜା ଚାଲିଲା । ମାରୁତିକାର୍‌ଟି ପରିତ୍ୟକ୍ତ ଅବସ୍ଥାରେ ମିଳିଲା । ଅଜୟ କି ଡ୍ରାଇଭର ମିଳିଲେ ନାହିଁ । ଡ୍ରାଇଭର ମାର୍ଟିନ କ'ଣ ଆଉ ପଣବନ୍ଦୀ ନେବାରେ ସାହାଯ୍ୟ କଲା ? ମାର୍ଟିନ୍‌ର ଯେ ପତ୍ତା ନାହିଁ । ଅଜୟର ମାଆ ନଖାଇ ନପିଇ ମୁଣ୍ଡପିଟି ଠାକୁରଙ୍କୁ ଡାକୁଥାଆନ୍ତି- ଘରେ ସମସ୍ତେ ହାହାକାର କରୁଥାନ୍ତି- ଏଡ଼ିକିଟିକେ ପିଲା କ'ଣ ଖାଉଥିବ, କୋଉଠି ରହିଥିବ, କ'ଣ କରୁଥିବ ଏଇନା !

ଅଥଚ ଅଜୟ ଏଇନା କିଛି କରୁ ନଥିବ । ତାର କୁନିଦେହଟି ପଚିସଢ଼ି କ୍ଷୟପାଇ ଯାଇଥିବ । ବାପାମାଆଙ୍କ ଆଶା ବଢ଼ି ବଢ଼ି ଚାଲିଥିବ- ଯାହା ବି ଟଙ୍କା ଖର୍ଚ୍ଚ ହେଉ, ପିଲାଟି ଜୀଇଁବଞ୍ଚି ନିରାପଦରେ ଫେରିଆସୁ !

ସେଦିନ ସ୍କୁଲଯିବା ବାଟରେ କିନ୍ତୁ ଗେଟ୍ ବାହାରକୁ ଗାଡ଼ିଆସିଲା ବେଳକୁ ଖଣ୍ଡେ ଦୂରରେ ଠିଆ ହେଇଥାଏ ଖଲିଲ୍- ମାର୍ଟିନ୍‌କୁ ଦେଖି ଗାଡ଼ି ସାମ୍ନାକୁ ଆସିଗଲା- ''କ'ଣ ଭାଇ, ତୁମେ ତ ସିଆଡ଼େ ଯାଉଚ- ମତେ ଟିକେ ଘରପାଖେ ଛାଡ଼ିଦିଅ ।'' ମାର୍ଟିନ ସୁଦର୍ଶନ ଯୁବକ- ଖଲିଲକୁ ସେ ଚିହ୍ନେ । ମାଲିକ ମିଃଗୁପ୍ତାଙ୍କ ଘର ତିଆରି କାମରେ ସେ ମୂଲ ଲାଗେ । ମାର୍ଟିନ ଖଲିଲକୁ ଗାଡ଼ିରେ ଉଠାଇଲା । ବାଟସାରା ଅତି ନମ୍ରତାର ସହିତ କ'ଣ କ'ଣ ଗପୁଥିଲା । ପଛସିଟ୍‌ରେ ଅଜୟ । ମାଆକୁ ଛାଡ଼ି, ଖେଳଛାଡ଼ି ସ୍କୁଲଯିବାକୁ ତାକୁ ସେମିତି ଭଲଲାଗେ ନାହିଁ । ଖାଲି ଯାହା ମିସ୍ ରୀତା ଭାରି ଭଲ ଲାଗନ୍ତି । ସେ ଗେହ୍ଲାକରନ୍ତି- ''ଜାକ୍ ଆଣ୍ଡ ଜିଲ୍'' ଗାଇବାକୁ ବରାଦ କରନ୍ତି । ଅଜୟ ଅଭିନୟ କରି ଗୀତଟି ଗାଏ । ସେ କହନ୍ତି 'ଗୁଡ୍ ବୟ' । ଅଜୟ ରୀତା ମିସ୍‌ଙ୍କ କଥା ଭାବୁଥିଲା । ଗାଡ଼ି ରହିଲା । ଖଲିଲ ଅନୁରୋଧ କଲା- ''ମାର୍ଟିନ ଭାଇ ! ଟିକେ ଚା ଖାଇବ ଆସନା- ସ୍କୁଲ ଫେରିଲା ବେଳ ତ ଡେରି ହେଇନି । ଆଜି ତୁମେ ଶୀଘ୍ର ଫେରୁଚ ।'' ଚା ପିଇବାକୁ ମାର୍ଟିନର ଇଚ୍ଛାନଥିଲା । ସକାଳ ୯ଟା, କୁନ୍‌ମାସ ଗରମ- ସେଥିରେ ଚା, ହେଲେ ଖଲିଲ୍‌ର ବିନୟ-ଖଲିଲ ଭାବିବ କି ମୁଁ ଗରିବ ବୋଲି ଦିନ ମଜୁରିଆ ବୋଲି ମୋର ଭଙ୍ଗା ଘରକୁ ବୋଧେ.....ନା-ନା-ମାର୍ଟିନର ମନ ତରଳିଲା । ସବୁଦିନେ ଖଲିଲ୍ ସାଙ୍ଗେ ତାର ସାକ୍ଷାତ ହୁଏ । ମାଲିକଙ୍କ ଘର ତିଆରି କାମ ଉପରକୁ ତ ବେଳେ ବେଳେ ମାର୍ଟିନକୁ ଯିବାକୁ ହେଇଥାଏ ।

ଅଗତ୍ୟା ମାର୍ଟିନ ଓହ୍ଲାଇବାରୁ ଅଜୟ ତ ଆଉ ରାସ୍ତା କଡ଼ରେ ଏକା ଗାଡ଼ିରେ ବସି ରହିବ ନାହିଁ । ଅତଏବ ମାର୍ଟିନ, ଅଜୟର ଡେଣା ଧରି ଓହ୍ଲାଇନେଇଥିବ । ଅଜୟ ପଚାରିଥିବ ''ମାର୍ଟିନ୍, ଯେ ତ ସ୍କୁଲ ନୁହେଁ- ଆମେ କୁଆଡ଼େ ଯାଉଚେ ?'' ମାର୍ଟିନ୍ ତାକୁ ବୁଝାଇ କି ସେଇ ଝୁପୁଡ଼ିଘରକୁ ନେଇଯାଇଥିବ । ସେଠାରେ ପୂର୍ବରୁ ଥିବେ ତିନି ଜଣ- ଜଣେ ମି.ଗୁପ୍ତାଙ୍କ ଘର ହତାର ଦରଓ୍ୱାନ, ଆଉ ୨ ଜଣ ଦିନ ମଜୁରିଆ । ଚା' ଦିଆଯିବ- ମାର୍ଟିନ ବସିଥିବ ଗୋଟେ ପୁରୁଣା ଚୌକିରେ । ତାକୁ ଲାଗି ଠିଆ ହୋଇଥିବ ଅଜୟ । ଅନ୍ୟଚାରିଜଣ ପରସ୍ପର ଚାହାଁ ଚାହିଁ ହେଉଥିବେ । ନାରକୀୟ ଘଟଣା ପବନରେ ଉଡ଼ିବୁଲୁଥିବ ନିତାନ୍ତ ଅପ୍ରତ୍ୟାଶିତ ଭାବରେ ଓ ଧସେଇ ପଶିଯିବ ସେ କୋଠରି ଭିତରେ । ମାର୍ଟିନ ଚା ପିଇ ସାରି ଉଠି ଠିଆ ହେବ । ଏଥର ସେ ଯିବ- ଅଜୟର ହାତ ଧରିବାକୁ ଲମ୍ବିଯିବ ତା'ର ହାତ । ତତ୍‌କ୍ଷଣାତ ତା ବେକରେ ଶକ୍ତ ଫାଶ ପଡ଼ିଯିବ ଗାମୁଛା ଦ୍ୱାରା । ବେକ କଟା କୁକୁଡ଼ା ପରି ଛଟ ପଟ ହେବ, ଧସ୍ତା ଧସ୍ତି ଲଗାଇବ ମାର୍ଟିନ- ଅଳ୍ପ ସମୟ ପରେ ଜିଭ କାମୁଡ଼ି ନିସାଡ଼ ହେଇ ପଡ଼ିଯିବ । ଅଜୟ ଏଥର ଥରି ଉଠିବ । ଗାଲୁରୁ ଗାଲୁରୁ ହେଇ କ'ଣ କହୁ କହୁ କଥା ଅଟକି ଯିବ ତା'ର । ତାପରେ ପ୍ରାଣାନ୍ତକ ସ୍ୱରରେ ଚିତ୍କାର କରିବ- ଏ ଆତତାୟୀମାନେ ସେମାନଙ୍କ ପୂର୍ବ ସଂକଳ୍ପ ଭୁଲି ଯିବେ । ଶିଶୁକୁ ପଣବନ୍ଦୀ ରଖି ଅର୍ଥ ଆଦାୟ ଯୋଜନାଟି ଏଇଲେ ଆଉ ସମ୍ଭବ ହେବ ନାହିଁ । ଅଜୟର ପାଟିକୁ ବନ୍ଦ କରିବାକୁ ହେବ । ସେମାନଙ୍କ ପୈଶାଚିକ କାଣ୍ଡର ସାକ୍ଷୀ ଏଇ ଶିଶୁଟି । ଅତଏବ ତାକୁ ଶେଷ କରିବାକୁ ହେବ । ଗାମୁଛାରେ ଭିଡ଼ା ହବ ତା'ର ବେକ । ଶିଶିର ଫୁଲ ଉପରେ ବଜ୍ରପାତ ଭଳି ଅଜୟର ଆଖି ଲେଉଟିଯିବ-

ଜିଭ ବାହାରି ଆସିବ । କୁନି ଦେହଟି ଅସାଡ଼ ହେଇ ପଡ଼ିରହିବ ।

ତା'ପରେ ସେଇ କୁନିଦେହଟି ମାର୍ଟିନର ଦେହ ସହିତ ଗୋଟେ ଅଖା ଭିତରେ ସଢ଼ିବାରେ ଲାଗିବ । ଚକ୍ରାନ୍ତକାରୀ ଧରା ପଡ଼ିବେ । ଗୋଟିଏ ପରେ ଗୋଟିଏ ଶିଶୁ ନିଖୋଜ ହେବେ ପଣବନ୍ଦୀ ହେବେ- ଲାସ୍ ମିଳିବ, କାହାର ପାଣିରୁ, କାହାର ବୁଦାମୂଳୁ, କାହାରବା ବସ୍ତା ଭିତରୁ । ଶିଶୁଙ୍କୁ ଧରିନେଇ ଯିବାଠାରୁ ଆଉ ସହଜ ଉପାୟ କ'ଣ ଅଛି ? ମାତ୍ର ଉପରୋକ୍ତ ପଣବନ୍ଦୀ କର୍ମଟିକୁ ଯିଏ ଯୋଜନାବଦ୍ଧ ଭାବେ ସଫଳ କରି ନପାରିଲା, ସେ ''ମୂଳୁ ମାଇଲେ ଯିବ ସରି...'' ନ୍ୟାୟରେ ଶିଶୁଟିକୁ ହତ୍ୟା କଲା ।

ଅଜୟ ଓ ଡ୍ରାଇଭର ମାର୍ଟିନ ଏହିଭଳି ମୃତ୍ୟୁବରଣ କଲେ । ଭାରତର ରାଜଧାନୀ ମହାନଗରୀ ଦିଲ୍ଲୀରେ ଘରେ ଘରେ ବାପମା' ଭୟତ୍ରସ୍ତ । ଶିଶୁଟିର ସଂସାର ବିଷୟରେ ହେତୁ ହବା ଆଗରୁ ବନ୍ଧୁ ପରିଜନଙ୍କୁ ସେ ଚିହ୍ନିବା ଆଗରୁ ତାକୁ ସତର୍କ କରି ଦିଆଯାଉଛି- ତାକୁ ଭୁଲେଇ ନିଆଯିବ... ମାରି ଦିଆଯିବ... ବାପମା ଜାଣି ପାରିବେ ନାହିଁ । ସୁତରାଂ ସେ ଅଚିହ୍ନା ଲୋକଙ୍କୁ ବାଘପରି ଡରିବ ।

ରୁନୁ ଓ ମୁଁ କଥାବାର୍ତ୍ତା ହଉ । ହାୟରେ ଶିଶୁକୁଳ- ସେମାନଙ୍କ କୋମଳ ସ୍ୱର ମନଉପରେ ଏଇ ବିକୃତ ରକ୍ତାକ୍ତ ଛାୟାକୁ ସେମାନେ କିପରି ବୋହି ଚାଲିବେ ? ତାଙ୍କ ମନ ଓ ଚେତନା ବିକାଶ ଲାଭ କରିବ କେମିତି ? ସେ ଯଦି ପ୍ରତି ମୁହୂର୍ତ୍ତରେ ଭୟରେ ଥରହର ହୋଇ ଆଶଙ୍କିତ ହୋଇ ଅନାନ୍ତି, ତାଙ୍କର ଉନ୍ମୋଚନ ହିଁ ହେବ କେଉଁପରି ? ପ୍ରଜାପତିଟି ପଛରେ ଦୌଡ଼ିବା ଦୂରର କଥା, ଚଢ଼େଇଟିକୁ କି ଆକାଶକୁ ଅନାଇଁ ଘଡ଼ିଏ ନିଜକୁ ଭୁଲିଯାଇ ପାରିବେ ନାହିଁ । ସେମାନେ ବଡ଼ ହେଲେ କିଭଳି ମଣିଷଟିମାନ ହେବେ ? ବାପମା' ବି ଏପରି ଭୟ କାକୁସ୍ଥ ହେଲେ ଦୈନନ୍ଦିନ ଜୀବନରେ ଚଳିବେ କେମିତି ? ନିତିଦିନ କାମସବୁ କରିବେ ବା କିପରି ? ଆଶଙ୍କା ଗ୍ରସ୍ତ ମନନେଇ ସେମାନେ କ୍ଷୁବ୍ଧ, ବିଚଳିତ, କ୍ଲାନ୍ତ ହୋଇ ପଡ଼ିବେ ନାହିଁ କି ?

ଶିଶୁଟି ପାଇଁ ଗୋଟିଏ ସ୍କୁଲ ଯେପରି ଉପାଦେୟ, ସ୍କୁଲଜୀବନ ମଧ୍ୟ ସେହିପରି ଗୁରୁତ୍ୱପୂର୍ଣ୍ଣ ତଥା ଆକର୍ଷଣୀୟ । ଏ ପ୍ରକାର ଭୟଭୀତ ଶିଶୁଟି କେମିତି ବଞ୍ଚିବ- ହସିବ, ଖେଳିବ, ଖାଇବ, ଶୋଇବ, ସର୍ବୋପରି କାହାକୁ ସେ ଭଲପାଇବ ? ବାପମା' ଶିକ୍ଷକ, ପଢ଼ାସାଥି ଓ ନିଜର ଚାରିପାଖର ଲୋକଙ୍କୁ ଆପଣାର ଭାବିବ କେଉଁପରି ? ଏକ ବିଂଶ ଶତାବ୍ଦୀର ଶିଶୁ ଚିଡ଼ିଆଖାନାରେ ଜନ୍ତୁଟିଏ ତ ନୁହେଁ- ସବୁବେଳେ କଡ଼ାପହରା ଭିତରେ ରହିଲେ, ଆଶଙ୍କାରେ ଉବୁଟୁବୁ ହେଲେ ତାର ସବୁ କୋମଳତା ନଷ୍ଟ ହୋଇଯିବ ନାହିଁକି ? ରୁନୁ କହେ'ଏଥିକି ପ୍ରତିକାର କ'ଣ ? ଅର୍ଥଲୋଭୀ, ମୂର୍ଖ, ହିଂସ୍ରଲୋକେ ଯେଉଁ ଅସୁର-କାର୍ଯ୍ୟରେ ଲିପ୍ତ, ସେମାନେ କଠୋରଦଣ୍ଡରେ ମୃତ୍ୟୁ ଦଣ୍ଡରେ ଦଣ୍ଡିତ ହେଲେ ହିଁ କୁକାର୍ଯ୍ୟ କରିବା ପାଇଁ ଦ୍ୱିଧାବୋଧ କରିବେ । ପୁଣି ସବୁ ସ୍ତରରେ; ସବୁକ୍ଷେତ୍ରରେ ଏହି ଘଟଣା ନିମିତ୍ତ ଦଣ୍ଡବ୍ୟବସ୍ଥା ତ୍ୱରାନ୍ୱିତ ହେବା ଆବଶ୍ୟକ । ଦୋଷୀକୁ ତତ୍‌କ୍ଷଣାତ୍ ଦଣ୍ଡ ମିଳିବ ।



# ପ୍ରାତଃ ପ୍ରତୀକ୍ଷା

''କେହି କାହାକୁ ପ୍ରତାରିତ ନକରୁ- କେହି ଅନ୍ୟକୁ ନିନ୍ଦା ନ କରୁ, କ୍ରୋଧ ବା ପ୍ରତିବାଦରେ କେହି ଅନ୍ୟର ଅମଙ୍ଗଳ ବାଞ୍ଛା ନ କରୁ''- ସେଦିନ ଗୌତମବୁଦ୍ଧ ଏହି ଅଭିଳାଷ ପ୍ରକଟ କରିଥିଲେ । ମାନବ ସମାଜକୁ ଅହିଂସା ମନ୍ତ୍ରରେ ଦୀକ୍ଷିତ କରିବା ପାଇଁ ଜୀବନବ୍ୟାପୀ ସାଧନା କରିଥିବା ବୁଦ୍ଧଦେବଙ୍କର ଉପରୋକ୍ତ ଉକ୍ତି ଥିଲା ମୂଳମନ୍ତ୍ର । ଆଜି, ବୁଦ୍ଧତ୍ୱର ଜନ୍ମଭୂମିରେ ହିଂସା, କ୍ରୋଧର ତାଣ୍ଡବ ଦେଖିଲେ କିଏ ବିଶ୍ୱାସ କରିବ ଯେ ଏହିଭଳି ବାଞ୍ଛାଟିଏ ଦିନେ ସମ୍ଭାବନାରୁ ସତ୍ୟ ଆଡ଼କୁ ମୁହାଁଇଥିଲା ।

ଖବରକାଗଜ ଖୋଲିଲେ ଛୁରାମାଡ଼, ହତ୍ୟା, ସନ୍ତ୍ରାସ, ବୋମାବାରୁଦର ଗନ୍ଧ, ରକ୍ତର ଲେଲିହାନ ରଙ୍ଗ କେମିତି ଆଖିକାନକୁ ଆକ୍ରାନ୍ତ କରି ପକାଉଛି । ଟି.ଭି. ଖୋଲିଲେ ଠିକ୍ ସେମିତି ଧସ୍ତାଧସ୍ତି, ଛୁରାମାଡ଼, ଧର୍ଷଣ-କଳା-ବଜାର, ଚୋରାବେପାରୀଙ୍କ କାରସାଦି- ନିଷ୍ଠୁର ହସ, ଆଚରଣ ଓ କୁତ୍ସିତ ଇଂଗିତର ଦୃଶ୍ୟ । ଭଲ ସିନେମାଟିଏ ଦେଖିବାର ଉପାୟ ନାହିଁ । ଯଦିଓ ହିଂସା କ୍ରୋଧ, ହତ୍ୟା ଓ ଧ୍ୱଂସ ହେଉଛି ଆଜିର ବାସ୍ତବତା, ତଥାପି ନୂଆ ନୂଆ ଭାବରେ ଅଧିକ କ୍ରୁର ଭାବରେ ଏହି ଦୃଶ୍ୟ ଗୁଡ଼ିକ ସିନେମାର ମୁଖ୍ୟ ଓ ବୃହତ୍ ଅଂଶ ହୋଇପଡ଼ିଛି । ମଣିଷର ଗୋଟାଏ ପ୍ରବୃତ୍ତି ଯେ ଭଲଅପେକ୍ଷା ମନ୍ଦପ୍ରତି ତା'ର ଅଧିକ ଆକର୍ଷଣ । ମନ୍ଦକୁ ଅନୁକରଣ କରିବା ତା'ପକ୍ଷରେ ସହଜ । ଛୁରା, ରକ୍ତ, ବାରୁଦ, ପୋଡ଼ାଜଳା ଓ ତାହାରି ନିର୍ମମ ଆଚରଣବିଧି ଆମଦେଶର ମୂର୍ଖ, ହିତାହିତ ଜ୍ଞାନଶୂନ୍ୟ ଜନତାକୁ ଉଦ୍‌ବୁଦ୍ଧ କରିବାକୁ ଯଥେଷ୍ଟ ।

ମଣିଷର ପ୍ରବୃତ୍ତି ଉପରେ ଶାରୀରିକ ନିଷ୍ଠୁରତା, ହିଂସା, ହତ୍ୟା, ଯନ୍ତ୍ରଣା, ରକ୍ତପାତ ଇତ୍ୟାଦି ପ୍ରଭାବ ପକାଏ, ଆବେଗକୁ ପ୍ରଭାବିତ କରି ଭୟଉଦ୍ରେକ କରାଏ- ସହଜରେ ମଣିଷ ହୃଦୟକୁ କବଳିତ କରିପକାଏ- ଏପରିକି ମନେହୁଏ । ଏ ଯେ ନିଷ୍ଠୁରତା, ମନ୍ଦପ୍ରବୃତ୍ତି ମଣିଷ ଭିତରେ ଜନ୍ମଗତ । କିନ୍ତୁ ଆତତାୟୀ କାର୍ଯ୍ୟ କଳାପ ଓ ପାଗଳାମିର ଚିତ୍ର ବ୍ୟତୀତ ଅନ୍ୟପ୍ରକାରେ ମଧ ମଣିଷ ଆକୃଷ୍ଟ ହୋଇପାରେ । ମାନବିକତାର ପରିପ୍ରକାଶରେ ମଧ ଅନ୍ତରାତ୍ମା ଆନ୍ଦୋଳିତ ଓ ପ୍ରଭାବିତ ହୋଇପାରେ । ଏକଥା ନିତାନ୍ତ ସତ୍ୟ ହେଲେହେଁ ସେ ଦିଗକୁ ଧ୍ୟାନ ଦେବାରେ କେହି ନିବିଷ୍ଟ ନୁହନ୍ତି ।

ଅବସର ବିନୋଦନ ନିମନ୍ତେ ଘରେ ଘରେ ଟି.ଭି. ଖୋଲି ବାପମା'ଙ୍କ ସହିତ ପିଲାଏ ମଧ୍ୟ ଅନାଇଁ ରହିଲେ। ଫଳରେ ୨/୩ ବର୍ଷର ପିଲାବି ଏଇ ଛୁରୀମରା, ଗୁଳିଫୁଟା ଓ ଧର୍ଷଣର ଦୃଶ୍ୟ ଦେଖିଲା। ୫ ବର୍ଷର ହେଲାବେଳକୁ ଶିଶୁଟି ଶତାଧିକ ଭୟଙ୍କର ଦୃଶ୍ୟ କ୍ରୋଧ, ଘୃଣା, ହତ୍ୟା, ଅତ୍ୟାଚାର ଦେଖିସାରିଥିବ। ଅତଏବ ତାର କୋମଳ ମନ ଆହତ ତ୍ରସ୍ତ ହୋଇ ଯାଇଥିବ। ନିତ୍ୟନୈମିତ୍ତିକ ଭାବେ ଏସବୁ ଘଟଣାକୁ ସେ ଜୀବନର ଅଂଶଭବେ ଗ୍ରହଣ କରିନେବ। ଏହା ଜବନର ଅଂଶ ନିଶ୍ଚୟ, ମାତ୍ର ଅପରିହାର୍ଯ୍ୟ ଅଂଶ ନୁହେଁ। ତା'ପରେ ବି ଭଲମନ୍ଦକୁ ଚିହ୍ନିପାରିବା ଶକ୍ତି ହେବା ପୂର୍ବରୁ ଶିଶୁଟି ଉପରେ ଏହା ପ୍ରାୟତଃ ଲଦି ଦିଆଯିବାରୁ ତା'ର ଅନ୍ତର ଭାଙ୍ଗିପଡୁଥିବ।

ଆମେଦିନେ କଲେଜରେ କଥା ହେଉଥିଲୁ। ସିନେମାଟିଏ ଦେଖିବାକୁ ଆଜିକାଲି ଧୈର୍ଯ୍ୟରହୁନି। ଯେ କୌଣସି ପିକ୍‌ଚର୍‌ରେ ଏତେ ବେଶି ହିଂସାର ପ୍ରାଧାନ୍ୟ ଯେ, ମନ ତିକ୍ତ ହୋଇ ଉଠୁଚି-ବିକାର ଆସୁଛି। କେବେ କେମିତି ଗୋଟାଏ ଅଧେ ଭଲ ଛବି ଆସେ। ଯେଉଁଥିରେ ହିଂସାକାଣ୍ଡ, ଅତ୍ୟାଚାରର ଚିତ୍ର କମ୍ ଥାଏ। ହିଂସା, ଅତ୍ୟାଚାର ଜୀବନର ଅଂଶ ହେଲେ ବି ତାହାର ସୀମା ନିର୍ଦ୍ଦିଷ୍ଟ ହେବା ବାଞ୍ଛନୀୟ। ମଣିଷ ଭିତରେ ଏପରି କିଛି ଭାବ ଓ ଆବେଗ ରହିଛି- ଯାହା ସମସ୍ତ ପ୍ରତିକୂଳତା ସତ୍ତ୍ୱେ ମଣିଷକୁ ବଞ୍ଚିବାକୁ ଉଦ୍‌ବୁଦ୍ଧ କରୁଛି। ସେ ସବୁକୁ ଗୁରୁତ୍ୱ ଦିଆଯାଇ ମଧ୍ୟ ଛବିଟିଏ ପ୍ରସ୍ତୁତ ହୋଇପାରନ୍ତା- ଅନ୍ୟ ପ୍ରକାର ଭଲ ଛବିର ପ୍ରସାର ଘଟାଯାଇପାରନ୍ତା। ମାତ୍ର ଉତ୍ତେଜନା ଓ ନିଷ୍ଠୁର ପ୍ରବୃତ୍ତିକୁ ଉଦ୍ରେକ କଲାଭଳି ସହଜ ଧସ୍ତାଧସ୍ତି ଓ ନିଷ୍ଠୁରତମ ହିଂସାର ପରିବେଷଣ ଖୁବ୍ ଉତ୍ସାହର ସହିତ ଚାଲିଛି। ଏବେ ଦୁଇ ଦିନ ତଳେ ଆମର ପ୍ରଧାନମନ୍ତ୍ରୀ କହିଛନ୍ତି ଯେ, ଆମ mass media ରେ ହିଂସା ଓ ରକ୍ତପାତର ଯେଉଁ ପ୍ରାବଲ୍ୟ ପରିଦୃଷ୍ଟ ହେଉଛି, ତାହାକୁ ବନ୍ଦ କରିବାକୁ ହେବ। ଡେରିରେ ହେଉପଛେ, ଦେଶ ମୁଖ୍ୟଙ୍କର ଏ ଭଳି ଏକ ଦୂରଦୃଷ୍ଟି ଓ ବିଚାର ସ୍ୱାଗତ ଯୋଗ୍ୟ। ଏହା ମଙ୍ଗଳକର ତ ନିଶ୍ଚୟ। ଭାରତ ପରି ଶାନ୍ତି କାମୀ ଦେଶରେ ଆଜି ସନ୍ତ୍ରାସ ଓ ହିଂସାର ଯେଉଁ ଧୂମକେତୁ ଲହଲହ ଲାଞ୍ଜପିଟି ଘୂର୍ଣ୍ଣୀଗତିରେ ଘୂରି ଲାଗିଛି- ତାକୁ ପ୍ରତିହତ କରିବାପାଇଁ ଜାତୀୟ ସ୍ତରରେ ନିଷ୍ଠାପର ଉଦ୍ୟମ ଜାରି ରହିବା ଆବଶ୍ୟକ। ଜନମାନସ ଓ ଜନରୁଚିକୁ ଏକ ଦିଗରେ ଉତ୍ତେଜିତ ଓ ଅପର ଦିଗରେ ଭାରାକ୍ରାନ୍ତ କଲାଭଳି ସୁଯୋଗ ମନୋରଞ୍ଜନ ଛଳରେ ଗଣମାଧ୍ୟମକୁ ଦିଆ ନ ଯାଉ। କଳା ନାମରେ ବୀଭତ୍ସତା ପରିବେଷଣ କରିବା, ସାମାଜିକ ବାସ୍ତବତା ନାମରେ ହିଂସା ଓ ନିଷ୍ଠୁରତାକୁ ସମ୍ମାନ ପ୍ରଦର୍ଶନ କରାଇବା ବିବେକଶୂନ୍ୟ ବଣିକସଭ୍ୟତାର ଚାଲାକି ଛଡ଼ା ଅନ୍ୟ କିଛି ନୁହେଁ। ଯଦି ଶାସନ ସ୍ତରରେ ଏହାର ପ୍ରତିରୋଧ କରାଯିବ, ତେବେ ହୁଏତ କିଛିଟା ରୁଚିଗତ ପରିବର୍ତ୍ତନ ବାଧ୍ୟତଃ ସମ୍ଭବ ହେବ। ସୌଦାଗରମାନେ ମଣିଷକୁ ପଣ୍ୟ ମନେକରିବା ଠିକ୍ ନୁହେଁ। ଖାଦ୍ୟରେ ଅପମିଶ୍ରଣ ଭଳି ଏହାର ପରିଣତି ମଧ୍ୟ ମାନସିକ ଅବସ୍ଥାକୁ ପଙ୍ଗୁ ଓ ବିକୃତ କରିବା ପାଇଁ ଅଭିପ୍ରେତ। ଏକ ଭେଜାଲ ଧାରାର ପ୍ରସାରଣ

ଦ୍ୱାରା ମଣିଷର ରୁଚି, ନୀତିବୋଧ, ବିଚାର ଓ ସହନଶୀଳତାକୁ ନଷ୍ଟକରି ଦିଆଯାଉଛି । ଏହାର ସମୁଦାୟ ପ୍ରଭାବ ଖୁବ୍‌ଶୀଘ୍ର ଅନୁଭୂତ ନ ହେଲେ ହେଁ ଏହାର ଏକ ଭୟାନକ ସୁଦୂରପ୍ରସାରୀ ପ୍ରଭାବ ରହିଛି ।

ଆଜିଠାରୁ ସତଚାଳିଶବର୍ଷତଳେ ଆମଦେଶ ଅହିଂସା ମାର୍ଗରେ ସ୍ୱାଧୀନତା ପ୍ରାପ୍ତ ହୋଇଥିଲା । ପ୍ରବଳ ସାମ୍ରାଜ୍ୟବାଦୀ ଶକ୍ତିକୁ ପ୍ରତିହତ କରିପାରିଥିଲା । ସେହି ଭାରତଭୂମି ଆଜି କ'ଣ ପାଇଁ କେଜାଣି ହତ୍ୟାଭିନ୍ନ ଅନ୍ୟ କୌଣସି ପ୍ରକାରେ ନିଜ ମତ ପ୍ରତିଷ୍ଠା କରିବା ଓ ଉଦ୍ଦେଶ୍ୟ ପୂରଣ କରିବାର ଉପାୟ ଦେଖୁନାହିଁ ।

ତେବେ, କ'ଣ ଅହିଂସା ମନ୍ତ୍ରରେ ଦୀକ୍ଷିତ ଭାରତୀୟଙ୍କ ହୃଦୟ କନ୍ଦରରେ କେଉଁଠି ସର୍ବଗ୍ରାସୀ ହିଂସାର ଡହକ ତଥାପି ଛପି ରହିଥିଲା ? ହଠାତ୍ ଶତଗୁଣରେ ପ୍ରଜ୍ୱଳିତ ହୋଇଉଠିଲା !? ଅହିଂସା ମନ୍ତ୍ରରେ ଭାରତୀୟମାନେ ମୁଗ୍ଧ ହୋଇଥିଲେ କେବଳ କ୍ଷଣକାଳ ପାଇଁ ? ହିଂସା ପ୍ରବୃତ୍ତି ବର୍ତ୍ତମାନ ନିଜର ପରିତୃପ୍ତି ପାଇଁ ସହସ୍ରଗୁଣିତ ହୋଇଉଠିଛି ? ତେବେ, ଅହିଂସା କ'ଣ ଆଦର୍ଶ କେବଳ ? ବାସ୍ତବ ନୁହେଁ ? ଯଜ୍ଞ କୁଣ୍ଡରେ ପଶୁବଳି ଦେଖି, ପଶୁର ରକ୍ତ ଓ କବନ୍ଧର ନାଚ ଦେଖି ବିଷଣ୍ଣ ଗୌତମ ସେ ଦିନ ଜୀବନର ଅଳୀକତା ହୃଦୟଙ୍ଗମ କରିଥିଲେ । ଅଥଚ, ସେଇ ଭୂମିରେ ଆଜି ଘରେ ଘରେ ହିଂସାର ରାଜତ୍ୱ ।

ଯୁବକଟିଏ ଠାରୁ ତାର ପ୍ରେମିକା ମୁହଁ ଫେରାଇନେଲା । ପାରିବାରିକ ତାଡ଼ନାରୁ ହେଉ ବା ନିଜର ମୋହ ହେତୁ ହେଉ, ତା'ହେଲେ ଯୁବକଟି ତାକୁ ହତ୍ୟାକରିବ । ସେ ହତ୍ୟା ପୁଣି ଅଥେଲୋରପତ୍ନୀ ଡ଼ିସ୍‌ଡେମୋନାକୁ ହତ୍ୟା କରିବା ପରି ନୁହେଁ । ଓଥେଲୋ ମାନସିକ ସଂଘର୍ଷରେ ପ୍ରବଳ ହତାଶା ଓ ଉତ୍ତେଜନାରେ ପତ୍ନୀକୁ ଭୁଲବୁଝି ହତ୍ୟାକଲା । "I kiss thee, before I kill thee" କହି ଅତି କରୁଣ ପରିସ୍ଥିତିରେ ହତ୍ୟାକରିଥିଲା । କିନ୍ତୁ ଆଜିର ନାୟକ ବିଚ୍‌ରାସ୍ତାରେ ଛୁରାଭୁଷି, ନହେଲେ ପେଟ୍ରୋଲ ଢ଼ାଳି, ନିଆଁ ଲଗାଇ ହତ୍ୟା କରୁଛି । ଭାଇ ଭାଇ ମଧ୍ୟରେ ମନାନ୍ତର ହେଲା, ଗଣ୍ଡଗୋଳ ହେଲା, ପରିଣତି ହତ୍ୟା । ପତିପତ୍ନୀ ମଧ୍ୟରେ ସାଧାରଣ ବିବାଦରୁ ପତି ଉତ୍ତ୍ୟକ୍ତ ହୋଇ ପତ୍ନୀହତ୍ୟା କଲା । ନହେଲେ ବା ଯୁବକଟି ସ୍କୁଲ ଫାଟକ ପାଖେ ଛକି ରହିଲା । ଝିଅଟି ସ୍କୁଲ ଆସିଲାବେଳେ ସିନେମାରୀତିରେ ତା'ସାମ୍ନାକୁ ଯାଇ ତାର କୁଞ୍ଚିତ କେଶରାଶିକୁ ଭିଡ଼ି ଧରିଲା ଓ ଗଳାରେ ଛୁରୀ ଗଳାଇଦେଲା । ନିରପରାଧ ନରମ ମାଂସରେ ଗଳିଯିବାକୁ ଛୁରୀକୁ ହୁଏତ ବାଧା ହେଉ ଥିଲା, ମାତ୍ର ପ୍ରେମିକ ପ୍ରବରକୁ ପରିତୃପ୍ତି ଆସିଲା । ନଚେତ୍ ଝିଅଟି ହୁଏତ ସନ୍ଧ୍ୟାରେ ସଂଗିନୀ ସହ ଗାଁ ଗୋହିରୀକୁ ଯାଇଥିଲା, ଯୁବକଟି ପଛ ଆଡୁ ଯାଇ ତା'ମୁଣ୍ଡ ଓ ଛାତିକୁ କଟୁରୀରେ ହାଣିଦେଲା । ଏହି ଆଜିର ବିୟୋଗାନ୍ତକ ପ୍ରେମର ସ୍ୱରୂପ । ଏହା କେତେ ସ୍ୱାଭାବିକ ସହଜଭାବେ ଘଟିଯାଉଛି ! ମା'ବାପ, ପୁଅଝିଅ ପରସ୍ପରକୁ ସାମାନ୍ୟ ଅସନ୍ତୋଷରେ, କ୍ରୋଧରେ କୁରାଢ଼ୀ, କଟୁରୀ, ଟାଙ୍ଗିଆ, ଶାବଳ ଯାହା ହାତରେ ପଡ଼ିଲା-

ହାଣିପକାଉଛନ୍ତି । ମଣିଷକୁ ହାଣିବା ଗଛଟିଏ ହାଣିବାଠାରୁ, ପିମ୍ପୁଡ଼ିଟିଏ ଦଳିଦେବାଠାରୁ ସହଜ ହୋଇଯାଉଛି । ତେବେ ମଣିଷ କ'ଣ ହିଂସ୍ରଜନ୍ତୁଠାରୁ ଆହୁରି ହିଂସ୍ର ? ବିବେକ ରହିତ, ସହାନୁଭୂତିଶୂନ୍ୟ ? ମଣିଷ କ'ଣ ମାନବିକତାର ଧାର୍ ଧରେନା ?

ଅଧିକାଂଶ ହିଂସା, ସଂତ୍ରାସ ଓ ଅତ୍ୟାଚାର ଘଟଣାର ପୃଷ୍ଠପଟ ଉନ୍ମୋଚନ କଲେ ସବୁର ମୂଳରେ ରହିଛି କ୍ରୁର ରାଜନୀତିର ଖେଳ । କ୍ଷମତା ପନ୍ନ ଗୋଷ୍ଠୀ ବା ବ୍ୟକ୍ତିର ଛତ୍ରଛାୟାର ଆଶ୍ରୟ ଗୌତମ ଥିଲେ ରାଜପୁତ୍ର । ଗାନ୍ଧିଜୀ ଥିଲେ ମହାନ୍ ରାଷ୍ଟ୍ରନୀତିଜ୍ଞ ନେତା, ଅଥଚ ସେହି ରାଜନୀତିର ତୁମୁଳ ଅଧଃପତନ ଘଟିଯାଇଛି ଆଜି । ସତେ କ'ଣ ଭାରତର ରାଜନୀତି ପୂର୍ବଭଳି ଆଦର୍ଶ ପୁରୁଷକୁ, ଶ୍ଳାଘ୍ୟ ଚିନ୍ତାଧାରାକୁ, ମଙ୍ଗଳକର ଦୃଷ୍ଟିକୁ ଜନ୍ମଦେଇ, ତାକୁ ଲାଳନ କରି ପାରିବ ନାହିଁ ? ଯୁଦ୍ଧତ୍ରସ୍ତ ପୃଥିବୀରେ ହିଂସା ରକ୍ତପାତ ଓ ଧ୍ୱଂସର ମହା ମହା ନିପୁଣତର ଅସ୍ତ୍ର ନିର୍ମାଣ ଓ ପ୍ରୟୋଗ ଚାଲିଥିଲାବେଳେ ଏହି ଶାନ୍ତିପ୍ରିୟ ପୁରାଣ ଭୂମି କ'ଣ ଏକ ମହତ୍ତର ଦିଗର ସନ୍ଧାନରେ ବ୍ୟାପୃତ ରହିପାରିବ ନାହିଁ ? ନିଜର ଇତିହାସର ଉଦ୍‌ବୋଧନରେ ଜାଗିଉଠିବ ନାହିଁ ?

ଏହି ଭୂମିରେ ରାଜାଗଣ ଯୋଗୀ ଋଷିଗଣଙ୍କ ପାଦତଳେ ମଥା ଅବନତ କରୁଥିଲେ । ସେଠାରେ କ୍ଷମତା ଓ ଅର୍ଥ ଅପେକ୍ଷା ଜ୍ଞାନ ଓ ବିଚାର ବୁଦ୍ଧିକୁ ଯେ ସର୍ବଦା ପ୍ରାଧାନ୍ୟ ଦିଆଯାଉଥିଲା, ଏହା କହିବା ବାହୁଲ୍ୟ । ମାତ୍ର ଆଜି କାହିଁକି କ୍ଷମତା ଓ ପ୍ରଭୁତ୍ୱ, ଶଠତା, ମୂର୍ଖତା ଓ ଔଦ୍ଧତ୍ୟର ଜାଲରେ ଛନ୍ଦି ହୋଇ ପଡୁଛି- କାହିଁକି ପ୍ରଭୁତ୍ୱ ତା'ର ନିଜ ସାଧନ ଓ ଲକ୍ଷ୍ୟକୁ ସ୍ଥିର ରଖି ପାରୁନାହିଁ ? ସତେ କ'ଣ ଏଭଳି ସମୟ ଆସିବ, ମଣିଷ କ୍ରୋଧ ଓ ହିଂସାର ଦାସତ୍ୱରୁ ମୁକୁଳିଯିବ ? ଏହି ଭୟଙ୍କର ଲେଲିହାନ, ହିଂସ୍ରତାଣ୍ଡବର ଭୂମିଉପରେ ଠିଆହୋଇ ଏହା କଳ୍ପନା କରିବା କଷ୍ଟକର ହେଲେହେଁ ଅସମ୍ଭବ ତ ନୁହେଁ ! ଏକ ସୁସ୍ଥ, ଶ୍ରଦ୍ଧାଳୁ, ବୁଝାମଣାର ପ୍ରାତଃକାଳ ଆସିବା ପୂର୍ବରୁ ଯେ କ'ଣ ସେଇ ଘନଘୋର ନିରନ୍ଧ୍ର ହିଂସ୍ର ଅନ୍ଧାର ? ଯା' ପରେ ଆତ୍ମୀୟତାରେ ସ୍ନାତ ସକାଳ ଆସିଯିବ ?

ହେ ବିଶ୍ୱନିୟନ୍ତା, ତାହା ହିଁ ହେଉ । ଏ ପୃଥିବୀର କୌଣସି ରାସ୍ତା, କୌଣସି ଘର, କୌଣସି ଅନ୍ତୁଡ଼ିଶାଳ ରକ୍ତରେ ଧୁଆ ନ ହେଉ । ପକ୍ଷୀର କୁଳାୟ ନିଆଁରେ ପୋଡ଼ି ନଯାଉ । ମଣିଷ ବିଚାରଶୀଳ ହେଉ । ସ୍ୱସ୍ତ୍ୟୟନର ମନ୍ତ୍ରଗାନ କରୁ ।



# ଶୋଷ...ଶୋଷ...

ଆମେ ହତଭମ୍ବ ହୋଇଗଲୁ । ପଡ଼ୋଶୀ ଅଜିତ୍‌ବାବୁଙ୍କ ଝିଅ ଦିଲ୍ଲୀରୁ ଫୋନ କରିଛି । 'ସେ ଭଲରେ ପହଞ୍ଚିଛି- ତା' ପାଇଁ ବ୍ୟସ୍ତ ହବନି' । ଜାଣିଚ- ବିରାଟ ଆକ୍‌ସିଡେଣ୍ଟ ହୋଇଛି । ପୁରୁଷୋତ୍ତମ ଏକ୍ସପ୍ରେସ କାଳିନ୍ଦୀ ଏକ୍ସପ୍ରେସ ଉପରେ ଚଢ଼ିଯାଇଛି । ଶହ ଶହ ଲୋକ ମରିଛନ୍ତି, ଡବା ଗୁଡ଼ାକ ଲାଇନ୍‌ରୁ ଖସିପଡ଼ିଛି, ଭାଙ୍ଗିରୁଜି ଯାଇଛି ।

ମିତୁ କ'ଣ କହିଲା ? ମିତୁ ଫୋର୍ ସ୍କୁଲ ଅଫ୍ ମ୍ୟାନେଜ୍‌ମେଣ୍ଟରେ ପଢ଼େ । ସେ ପୁରୁଷୋତ୍ତମର S/7 କୋଚ୍‌ରେ ଉଠିଥିଲା । ଦୁର୍ଘଟଣା ପରେ ସେ ଗାଡ଼ିରୁ ଓହ୍ଲାଇ ଟାକ୍ସି କରି ପହଞ୍ଚି ଯାଇଚି ଦିଲ୍ଲୀରେ, ଅନ୍ୟ କେତେକ ଯାତ୍ରୀଙ୍କ ସହିତ । ତାଙ୍କ ବଗିର ବେଶି କିଛି କ୍ଷତି ହେଇନି- ଏତେ ଦୂରରୁ ଫୋନ୍‌ରେ ବା କ'ଣ ଆଉ କହିପାରନ୍ତା ମିତୁ ? ତା ସ୍ୱର ବି କେମିତି ଭାଙ୍ଗି ଭାଙ୍ଗି ଯାଉଛି । ତା'ଠାରୁ ଶୁଣିବା ପରେ ଆମେ ସାଙ୍ଗେ ସାଙ୍ଗେ ଟି.ଭି. ଖୋଲିଲୁ । ମଧ୍ୟାହ୍ନ ସମ୍ବାଦରେ ବି ଖବର ମିଳିଲା । ଘଟଣା ଅତ୍ୟନ୍ତ ଭୟାବହ । ଏଭଳି ମର୍ମନ୍ତୁଦ ରେଳଦୁର୍ଘଟଣା ଗୋଟିଏ ଶତାବ୍ଦୀରେ ବିରଳ । ତା'ପୁଣି ଥିଲା ଆମରିପାଇଁ, ଓଡ଼ିଶାର ପ୍ରମୁଖ ରେଳଗାଡ଼ି, ସବୁଠାରୁ ବିଶ୍ୱସ୍ତ । ପୁରୁଷୋତ୍ତମ ଏକ୍ସପ୍ରେସ- ପୁରୀରୁ ପୁଣି ଛାଡୁଚି, ଜଗନ୍ନାଥଙ୍କ ନାମ ନେଇ ! ହାୟରେ କପାଳ !

ଦିନ ଦିନ ଧରି ଖବରକାଗଜ ଓ ଟି.ଭି.ରେ ସେଇ ସମ୍ବାଦ, କେତେ ଲୋମହର୍ଷକ ! ମଣିଷ ହେଇ ଦେହଧରି ଯା' ସହିବ ! ଚଳନ୍ତାଟ୍ରେନ୍‌ରେ ଥରେ ଅଧେ ବାଥ୍‌ରୁମ୍ ଗଲାବେଳକୁ ହାତ କି ମୁଣ୍ଡ ଯଦି କୋଉଠି ପିଟିହେଇ ଯାଏ, କି' ଯେ କାଟେ ! ଲୁହା ରଡ୍ ଗୁଡ଼ାକ ଚାରିଆଡ଼େ- ସେଥିରେ ପୁଣି ଘଣ୍ଟାକୁ ୧୦୫ କି.ମି. ବେଗ ଥିଲା ପୁରୁଷୋତ୍ତମ ଏକ୍ସପ୍ରେସର । ଆଗରୁ ଠିଆହୋଇଛି କାଳିନ୍ଦୀ ଏକ୍ସପ୍ରେସ- ଠିକ୍ ଷ୍ଟେସନ ବାହାରେ । କିନ୍ତୁ ଗ୍ରିନ୍ ସିଗ୍‌ନାଲ ଅଛି- ପୁରୁଷୋତ୍ତମ ମାଡ଼ିଚାଲିଛି- ଆଉ ଦୁଇ ଘଣ୍ଟା ପରେ ସେ ଠିଆ ହୋଇଯିବ ଦିଲ୍ଲୀ ଷ୍ଟେସନ୍‌ରେ, ସେଇଠି ଦମ୍ ନେବ । ଅଳ୍ପ ଦୂରରୁ ଡ୍ରାଇଭର୍ ଦେଖି ଦେଇଛି କାଳିନ୍ଦୀ ଏକ୍ସପ୍ରେସ୍‌ର ବ୍ୟାକ୍ ରୋଡ୍ ଲାଇଟ୍ । କ'ଣ କରିଥିବ ସେ ! ନିଶ୍ଚିତ ମୃତ୍ୟୁକୁ ଆଖି ଆଗରେ ଦେଖିଲେ ମଣିଷ କରେ କ'ଣ ? ଯେ ମୃତ୍ୟୁ ପୁଣି କେବଳ ନିଜର ନୁହେଁ, ନିଜ ସମେତ ହଜାରହଜାର ଲୋକଙ୍କର ! ପ୍ରାଣ ପଣେ ବ୍ରେକ୍ କଷିଛି ଡ୍ରାଇଭର, ଥରେ ନୁହେଁ

ତିନି ଥର- ଆଖିପିଛୁଳାକେ କାଳିନ୍ଦୀ ଏକ୍ସପ୍ରେସ ଉପରେ ଚଢ଼ିଯାଇ ଛିନ୍ନଛତ୍ର ହୋଇଯାଇଚି ଇଞ୍ଜିନ୍। ଲୁହାର ବଗିଗୁଡ଼ାକ ଯେତେବେଳେ ଖିନ୍‌ଭିନ୍ ହେଇଚି, ରକ୍ତମାଂସର ଦେହଧାରୀ ମଣିଷର ଅବସ୍ଥା କ'ଣ ହେଇ ନଥିବ- କାଦୁଅ ପରି ଚକଟି ହୋଇ ଯାଇଥିବ ସେ, ପତ୍ତା ସତ୍ତା ନଥିବ ତାର !

ଜାମସେଦ୍‌ପୁରଠାରୁ ଟ୍ରେନ୍‌ରେ ଉଠିଥିବା ତାଜା ଯୁବ ଖେଳାଳୀ ପୁଅଝିଅମାନେ- କେତେ ଚିହ୍ନା ଅଚିହ୍ନା ଓଡ଼ିଶାର ଲୋକେ, ତାଙ୍କ ମୃତ୍ୟୁ ଖବର ତାଙ୍କ ଘରଲୋକେ ବି ଜାଣିପାରିଲେ ନାହିଁ। ରେଳବାଇ କର୍ତ୍ତୃପକ୍ଷ କ'ଣ ସାହାଯ୍ୟ ଦେଲେ ନଦେଲେ ତା' ଭିନ୍ନ କଥା। କିନ୍ତୁ, ପ୍ରଥମେ ଦୁର୍ଘଟଣା ସ୍ଥଳକୁ ଆସିଲେ ସ୍ଥାନୀୟ ଲୋକେ- ପାଖରେ ଶାବଳ, କୁରାଢ଼ୀ, ଟର୍ଚ୍ଚ, ଲଣ୍ଠନ ଯାହାଥିଲା ଧରିକି ଆସିଲେ। ଶକ୍ତି ମୁତାବକ ଆହତଙ୍କୁ ସାହାଯ୍ୟ କରିବାକୁ ଚେଷ୍ଟା କଲେ। ରକ୍ତମାଂସର କର୍ଦ୍ଦମ ସାଙ୍ଗକୁ ମରଣାନ୍ତକ ଚିତ୍କାର, ତା'ସହିତ ଅନ୍ଧାର ଓ ଧ୍ୱସ୍ତବିଧ୍ୱସ୍ତ ରେଳଗାଡ଼ି- ସବୁ ମିଶି କିପରି ଏକ ପୈଶାଚିକ ପରିବେଶ ! କ'ଣ କରିବେ ଏଇ ସାଧାରଣ ଲୋକମାନେ ? ତାଙ୍କ ସାହାଯ୍ୟ ତ ସମୁଦ୍ରକୁ ଶଙ୍ଖେ ପରି ! ଯା'ହଉ, ତଥାପି ମଣିଷ ହୃଦୟରେ ଅପର ପାଇଁ ଯେଉଁ ସହାନୁଭୂତି ଥାଏ, ସେଥିରେ ପରିଚାଳିତ ହୋଇ ସେମାନେ ଯାହା କିଛି କଲେ। ହୁଏତ ଆଉ ଘଣ୍ଟାକ ପରେ ତଣ୍ଟିଶୁଖି ମରିଯାଇଥାନ୍ତା ଯେଉଁ ହତଭାଗ୍ୟ ଯାତ୍ରୀଟି ତାକୁ ପାଣି ମୁନ୍ଦାଏ ଦେଇ ତା'ଜୀବନ ରକ୍ଷାକଲେ ତଥାପି ରକ୍ଷକ କିପରି ଭକ୍ଷକ ହୁଏ, ମଣିଷର ଲୋଭ କିପରି ହିଂସ୍ର ପଶୁ, ତାର ଗୋଟିଏ ଦୃଷ୍ଟାନ୍ତ ଆମେ ଜାଣିବାକୁ ପାଇଲୁ। ''ମଣିଷ ଏପରି ରାକ୍ଷସ ହୋଇପାରେ'', ରୁନୁ ମତେ ହତାଶ ହୋଇ କହିଲା। ମୁଁ କହିଲି, 'ଜାଣିନୁ କି, ମଣିଷ ହୃଦୟରେ ଯେ ଦେବତା ଆଉ ରାକ୍ଷସ ଉଭୟେ ଅଛନ୍ତି। ଅଧିକାଂଶ ବେଳେ ଉଭୟ ଦ୍ୱନ୍ଦ୍ୱଯୁଦ୍ଧରେ ମାତିଥାନ୍ତି, ଏକଥା ଆମେ ଜାଣୁ, ତଥାପି ବିଶ୍ୱାସ ହୁଏ ନାହିଁ।''

ଅନ୍ଧାର ତଥାପି କଟିଯାଇ ନଥାଏ। ସକାଳ ହୋଇ ଆସୁଥାଏ। ସତେ କି ଗଛବୃଛ ନିସ୍ତବ୍ଧ ଓ ପକ୍ଷୀମାନେ ହାହାକାର କରୁଥାନ୍ତି, ମଣିଷ ସହିତ ସେମାନଙ୍କ ହାହାକାର ଏକାଠି ମିଶିଯାଉଥାଏ। ପ୍ରଭୁଦାସଙ୍କ ଚେତା ଫେରି ଆସୁଥାଏ। କୋଉଠି ସେ ? କ'ଣ ଘଟିଛି, ମନେ ପକାଇବାକୁ ଚେଷ୍ଟାକରୁଥାନ୍ତି- ମୁଣ୍ଡଟା ଖୁବ୍ ଓଜନ, ଗୋଡ଼ହାତ ଚଳୁନାହିଁ- ସେ କ'ଣ ଆଉ ଉଠିପାରିବେ ନାହିଁ କି ? ନିକଟରେ ଜୋତାଶବ୍ଦ ଓ ଚାପା କଥାବାର୍ତ୍ତା ଶୁଭୁଛି, ସେ ଯେ ମୁଣ୍ଡ ଟେକି ପାରୁନାହାନ୍ତି ! ପ୍ରଭୁଦାସ ଅନୁଭବ କରୁଥିଲେ ଫର୍ଚ୍ଚା ହୋଇ ଆସୁଛି, ପବନ ଯେମିତି ଦୀର୍ଘଶ୍ୱାସଟିଏ ହୋଇ ଖସିପଡ଼ୁଛି ତାଙ୍କ ଉପରେ। ହଠାତ୍ ତାଙ୍କର ମନେପଡ଼ିଲା- ଭାଇ କାହାନ୍ତି ? ଗତକାଲି ସେମାନେ କାଳିନ୍ଦୀ ଏକ୍ସପ୍ରେସ୍‌ରେ ଚଢ଼ିଥିଲେ। ଭାଇ ରୋଗୀ ଲୋକ। ସେ ତଳ ବର୍ଥରେ ଶୋଇଲେ, ପ୍ରଭୁଦାସ ଉପରବର୍ଥକୁ ଉଠିଗଲେ। ଘୋର ନିଦରେ କ'ଣ ଗୋଟେ ପ୍ରଚଣ୍ଡ ଶବ୍ଦ ଶୁଣୁନ ଶୁଣୁ ସେ ତଳେ ପଡ଼ିଯାଇଥିଲେ। ଏଇଲେ, ତାଙ୍କ ଚାରିପାଖ ଏମିତି ଖଣ୍ଡ ବିଖଣ୍ଡିତ ଯେ, ଏଇଟା ରେଳଡବା ପରି ଆଦୌ

ଲାଗୁନାହିଁ । ଯୁଦ୍ଧ ଭୂଇଁର ଯେଉଁ ଚିତ୍ର ସେ ଟି.ଭି.ରେ ଦେଖିଥିଲେ, ଚାରିପାଖ ତା'ଠୁଁବି ନିଷ୍କରୁଣ ଦିଶୁଚି । ଭାଇ କେଉଁଠି ରହିଲେ ? ସେ ଚାରିଆଡ଼କୁ ଚାହିଁଲେ ।

ବଡ଼ଭାଇ ଅନେକଦିନ ହେଲାଣି ପେଟରୋଗ ଭୋଗୁଥିଲେ । ଗତମାସରେ ଆସି ଆଗ୍ରା ହସ୍‌ପିଟାଲରେ ଚେକ୍ ଅପ୍ କରି ଭାଇଙ୍କୁ ନେଇ ଫେରିଯାଇଥିଲେ ପ୍ରଭୁଦାସ । ଭାଇଙ୍କ ପେଟରେ ଅଲ୍‌ସର୍ । ଅପରେସନ୍ ହୋଇଥାନ୍ତା । ବାୟୋପ୍‌ସି ହୋଇଥାନ୍ତା, ଆଉ ଦୁଇ ଦିନ ପରେ । ଆଜି ସକାଳ ବେଳା ଆଗ୍ରା ହସ୍‌ପିଟାଲ୍‌ରେ ଡାକ୍ତରଙ୍କ ସହ ସାକ୍ଷାତକରି ସବୁ ପ୍ରସ୍ତୁତ କରାଯିବାର କଥା ଥିଲା । ଭାଇ ବିଚରା ବଡ଼ ବିମର୍ଷ ହୋଇ ପଡ଼ିଥିଲେ । କିଏ ଜାଣେ, ରୋଗର ଗତି କୁଆଡ଼େ ଯିବ ! କ୍ୟାନ୍‌ସର୍ ମୃତ୍ୟୁର ଅନ୍ୟନାମ । କିଏ ଭଲା ତାକୁ ଭୟ ନ କରେ ? ତଥାପି, ମଧ୍ୟ ବୟସରେ ଭାଇ ଖୁବ୍ ସାହସ ଧରିଛନ୍ତି । ପୁଅଝିଅ ତିନିଟାଙ୍କର ଏଯାଏଁ କିଛି କୂଳ କିନାରା ହୋଇନାହିଁ । ଭାଉଜ କାନ୍ଦିକାଟି ଅଥୟ । ସାଥୀରେ ପ୍ରଭୁଦାସଙ୍କୁ ଧରି ଭାଇ ବାହାରିଥିଲେ । କିନ୍ତୁ ସେ ତ କୋଉଠି ଦେଖାଯାଉନାହାନ୍ତି ?

ପ୍ରଭୁଦାସଙ୍କ ଆଖି ବୁଜିହେଇ ଆସୁଛି, ଶୋଷ ଲାଗୁଚି ତାଙ୍କୁ, ଶୀତଳପବନର ଏକ ଅଦ୍ଭୁତ ଆତ୍ମୀୟ-ଆଉଁସାରେ ସେ ଉଠି ବସିଲେ । ଭାଇଙ୍କୁ ଖୋଜିବାକୁ ହବ । ଦୁଇ ପାଦ ଆଗେଇଗଲେ ପ୍ରଭୁଦାସ । ସିଟ୍‌ତଳେ ଚାପିହେଇ ଭାଇଙ୍କ ଦେହ- ବିରାଟ ଆଁ, ଆଖି ବାହାରି ପଡ଼ିଚି- କାନମୂଳେ ରକ୍ତ । କାନ୍ଦିବାକୁ ଅବସର ନାହିଁ । ଭାଇଙ୍କୁ ଉଠାଇବାକୁ ହବ । ଆଖିରୁ ଠକ୍ ଠକ୍ ଗଡ଼ିପଡୁଚି ଲୁହ । ଠିକ୍ ଭାଇଙ୍କ ସାମ୍ନାରେ ଆଉ ଜଣେ- ଖପୁରି ନାହିଁ ତାଙ୍କର- ବିଶାଳ ଆଁ, ବିକୃତ, ବୀଭତ୍ସ-ଦାନ୍ତ ସବୁ ବାହାରି ପଡ଼ିଛି । ସେ ଚାହିଁପାରିଲେ ନାହିଁ- ରକ୍ତ...ରକ୍ତ..ସେ ଜାଣିପାରିଲେ ତାଙ୍କ ଗୋଟାଏ ଗୋଡ଼ରେ ଚପଲ ନାହିଁ, ପାଦତଳ ସିରିସିରି ଥଠା ଥଠା ଲାଗୁଚି, କୋଉଠୁ କୁନ୍ଥାଣ ବି ଶୁଭୁଛି । ବାହାରି ଭାସି ଆସୁଛି ଚିତ୍କାର- କେତେ କଥାବାର୍ତ୍ତା...ହାୟ....ହାୟ....

ସୂର୍ଯ୍ୟୋଦୟ କାଳ ବୋଧେ । ପ୍ରଭୁଦାସ ଛାତିକୁ ପଥର କରି ଭାଇଙ୍କୁ ଭଙ୍ଗାସିଟ୍ ଚାପରୁ କାଢ଼ିବାକୁ ବସିଲେ । ମୁଣ୍ଡ ଓ ନାକରେ ହାତ ଦେଇ ବାରିଲେ, ନିଃଶ୍ୱାସ ଚାଲୁ ନାହିଁ- ବରଫ ପରି ଥଣ୍ଡା- ଭାଇ ତେବେ ଏମିତି.. କ'ଣ କରିବେ ? ଭାଉଜ ଓ ପିଲାଙ୍କ ମୁହଁ ବି ଠିକ୍ ଭାବେ ମନେ ପଡୁନାହିଁ । ପ୍ରଭୁଦାସ ଥର ଥର ଛାତିରେ ଭାଇଙ୍କୁ ଟଣାଘୋଷରାରେ ଲାଗିଲେ । ସିଟ୍ ତଳୁ ଶରୀର ବାହାରି ଆସିଲା, ପ୍ରାଣ ନାହିଁ । ପ୍ରଭୁଦାସଙ୍କ ଅନୁଭବ ଶକ୍ତି ଲିଭିଗଲାଣି । ଯା'ହେଲେ ବି ଏଇ ଲୁହ ଆଉ ରକ୍ତ ମାଂସ ଚକଟା ହୋଇଥିବା ଶ୍ମଶାନ ଭିତରୁ ଭାଇଙ୍କ ଶବକୁ ତ କାଢ଼ିନବାକୁ ହବ । ସମସ୍ତ ଜୋର୍ ଲଗାଇ ଭାଇଙ୍କୁ ଘୋଷାରି ଲାଗିଲେ । ଅଧା ଭଙ୍ଗା ବଗି, ଗୋଟେ ଦ୍ୱାର ମାଟିରେ ପୋତି ହେଇଚି-ଆଉ ଗୋଟେ ଦ୍ୱାର ମୁଣ୍ଡ ଉପରେ, ବାଟ ଘାଟ ନାହିଁ । ତାଙ୍କ ମୁଣ୍ଡ ଆଉ ଦେହରେ ଅଜସ୍ର ପୀଡ଼ା । କ'ଣ ଯେ ଘଟିଗଲା, କିଛି ଭାବିବାକୁ ଶକ୍ତି ଆସୁନି । ଚାରିଦିଗ ଚକାଭଉଁରୀ ଖେଳୁଚି । କେମିତି ଏଠୁ ବାହାରି ଭାଇଙ୍କ ଶବ ଧରି ସେ ଫେରିଯିବେ । ହଠାତ୍

ମନେ ପଡ଼ିଲା, ଅପରେସନ୍ ପାଇଁ ଯୋଗାଡ଼ ହୋଇଥିବା କୋଡ଼ିଏ ହଜାର ଟଙ୍କାରେ ଟିପ ବି ବାଜିନି । ଭାଇଙ୍କର ସ୍କୁଲ କଲେଜରେ ପଢୁଥିବା ପୁଅ ଝିଅ । କ'ଣ କହିବେ ସେ ସେମାନଙ୍କୁ ? ରେଳ ଦୁର୍ଘଟଣା । କଳନା କରୁଥିଲେ ସେ । ତାଙ୍କ ବଗିଟି ରେଳଗାଡ଼ିର ମଝାମଝି ଥିଲା । ସାରାବଗିରେ ତଥାପି ଚିତ୍କାର କରୁଥିବା ଲୋକ ଅଛନ୍ତି । ମୃତମାନେ ତ ଅଳ୍ପ ସଂଖ୍ୟକ ପଡ଼ିରହିଛନ୍ତି । ଜୀବିତମାନେ ତାଙ୍କ ଆଖି ଆଗରେ ବଗିରୁ ଡିଆଁ ଡେଇଁ କରି ବାହାରି ଯାଉଛନ୍ତି । କେଜାଣି ବାହାରଟା କିଭଳି ହୃଦୟ ବିଦାରକ ହେଇଥିବ ! ହେଲେ, ଭାଇଙ୍କୁ ଛାଡ଼ି ସେ ଯିବେ କେମିତି ? ଏଠୁ ଥରେ ବାହାରିଗଲେ ଭାଇଙ୍କ ଶବକୁ ଆଉ ପାଇ ପାରିବେ ?

ଏତିକିବେଳେ ଜୋତାଶବ୍ଦ ଶୁଭିଲା- ଜଣେ ଲୋକ ବେଶ୍ ଗୋଟେ ଠେଙ୍ଗାଧରି ଆସୁଚି- ସତେ କି ସେ ବହୁତ ଲୋକଙ୍କୁ ସାହାଯ୍ୟ କରି ସାରିଲାଣି ଓ ପୁଣି କାହାର ଯନ୍ତ୍ରଣାକୁ ଲାଘବ କରିବ ! ପ୍ରଭୁଦାସଙ୍କୁ ଆଶ୍ୱସ୍ତ ଲାଗିଲା । ହୁଏତ ଦୁହେଁ ମିଶି ଭାଇଙ୍କୁ ଟେକି ନେଇ ବାହାରି ଯାଇ ପାରିବେ । ଲୋକଟା ପ୍ରଭୁଦାସଙ୍କ ପାଖକୁ ଅଗେଇ ଆସି ଧମକ୍ ଦେଲା- ''ଏୟ, ସେଇଟା ମରିଯାଇଚି, ତାକୁ ଛାଡ଼ିଦେ'' ପ୍ରଭୁଦାସ ନଛୋଡ଼ବନ୍ଧା-କେବଳ 'ଭାଇ, ଭାଇ' କହୁଥାନ୍ତି- ଆଉ କିଛି ବି ତାଙ୍କ ପାଟିରୁ ବାହାରୁ ନଥାଏ । ହାତଗୋଡ଼ ଠକ୍ ଠକ୍ ଥରୁଥାଏ । ଲୋକଟି ଏଥର ଜୋର୍ ଧକ୍କା ଦେଲା- ପ୍ରଭୁଦାସ ପଡ଼ିଗଲେ ଓ ତତ୍‌କ୍ଷଣାତ୍ ''ଭାଇ ଭାଇ'' ପାଟି କରି ଉଠିବାକୁ ଚେଷ୍ଟା କଲେ । ଲୋକଟା ତାର ଠେଙ୍ଗାରେ ଏକ ଶକ୍ତ ପାହାର କଷିଦେଲା ପ୍ରଭୁଦାସଙ୍କ ମୁଣ୍ଡରେ । ଭାଇଙ୍କ ଶବକୁ ଘୋଷାରିନେଲା, ଜାମାପ୍ୟାଣ୍ଟ ଅଣ୍ଡାଳି ପକାଇଲା । ଭାଇଙ୍କ ଛାତିର ଚୋରାପକେଟ୍‌ରେ ନୋଟବିଡ଼ାକ ଥିଲା- ଜାମାଟାକୁ ଭିଡ଼ି ଛିଣ୍ଡେଇ ପକେଇ ନୋଟ ବିଡ଼ାଟା ପକେଟ୍‌ରେ ପକେଇ ଦେଲା ସେ ଲୋକଟା । ଥରେ ବି ଅନେଇଁଲା ନାହିଁ ପ୍ରଭୁଦାସଙ୍କ ଆଡ଼କୁ, ପ୍ରଭୁଦାସ ମଲାମାଛର ଆଖିପରି ଆଖି ମେଲି ଦେଖୁଥିଲେ ସମୁଦାୟ ଘଟଣା । କାହାକୁ ଡାକିବେ, ଚିତ୍କାର କରିବେ ''ଧାଇଁପଡ଼ ହୋ...ଚୋର-ଚୋର'' ଯା'ବି ପାଟିରୁ ସ୍ଫୁରିଲା ନାହିଁ । ଚାରିଆଡ଼ ଅନ୍ଧାର ଅନ୍ଧାର ଲାଗୁଥିଲା । ସେହି ଅନ୍ଧାର ଭିତରେ ପଥରର ଆଖିମେଲି ଅନାଇଁ ଥିଲେ ପ୍ରଭୁଦାସ । ଲୋକଟା ଚାଲିଯାଉଥିଲା । ହଁ, ସେ ସ୍ପଷ୍ଟ ଦେଖିପାରୁଥିଲେ ଲୋକଟା ପୋଲିସ୍ ଲୋକ- ତା' ଦେହରେ ଖାକି ୟୁନିଫର୍ମ...

ପ୍ରଭୁଦାସଙ୍କ ଛାତି ଧାଉଁକିନା ହେଲା । ପୁଣି ଆଖି ମୁଦି ହେଇ ଆସିଲା- ଶୋଷ- ପ୍ରବଳ ଶୋଷ-



# ଜଳଛତ୍ରର ପରମ୍ପରା

''ଜହ୍ନିଫୁଲ ଠୋ ଠା, କାକୁଡ଼ି ଫୁଲ ଠୋ ଠା, ଚୁଟିଆମୂଷା କହିଯାଇଚି/ନେଉଳଭାଇ କହିଯାଇଚି ଚାଉଳ ମୁଠେ ଥୋଇଥା ।'' ଚୁଟିଆମୂଷା ଆଉ ନେଉଳଭାଇଙ୍କ ପାଇଁ ଚାଉଳ ମୁଠେ ଥୁଆହବ । ଆଉ କୁଆ ପାଇଁ ?

କୁଆ ପାଇଁ ଚାଉଳ ବଢ଼ାଯିବ ୩ଟି ଠାଆରେ । କୁଆ ରା ରା କଲେ ବୋଉ ମୋ ହାତରେ ଏତକ କରାଏ ବା ନିଜେ କରେ । ବାପା ବିଦେଶରେ ଥାଆନ୍ତି । ଚିଠି ନ ହେଲେ ଟଙ୍କା ମଝିରେ ମଝିରେ ଆସେ । ବୋଉ କହେ ''ଚିଠି ଆସୁଚି କି ଟଙ୍କା ଆସୁଚି କି ଆସୁଚି କିଏ, ଶୁଭ କାଉରେ, ଶୁଭେ ରଡ଼, ଶୁଭବାର୍ତ୍ତା କର, କିଏ ଆସୁଚି, ଉଡ଼ିଗଲୁ...'' କୁଆ ଚାଳ ଉପରୁ ଓହ୍ଲାଏ । ସନ୍ତର୍ପଣରେ ତର ତର ଚାଉଳ ଖୁମ୍ପେ, ଏଣିକି ତେଣିକି ସତର୍କ ଛନ ଛନ ଚାହାଣି..

ଓଷା, ପୂଜା, ପର୍ବପର୍ବାଣିରେ ଠାକୁରଙ୍କ ସହ ପିଠା ଉଜୁଆଁ ହବ ପାଣିରେ, ନଈ, ପୋଖରୀ, ନାଳ, ଝିଲ୍ ଯୋଉଠି ହଉ । ଠାକୁର ଗଢ଼ା ହେଇଥିବେ କେବେ ମାଟିରେ, କେବେ ସାରୁପତ୍ରରେ(ଭାଲୁକୁଣୀ) କେବେ ବା ଗୋବର ନ ହେଲେ ବଟାହଳଦୀରେ (ଯେମିତି ପ୍ରଥମାଷ୍ଟମୀ, ଷଠୀ ଠାକୁରାଣୀ) । ଦୁତିଆଓଷା, ଆଉ ଆଉ ଓଷାବାରରେ ବିଲ ଶିଆଳଙ୍କ ପାଇଁ ପିଠା ଦିଆଯିବ । ବାଟମଙ୍ଗଳା ଓଷାରେ ପଛେଇ ପୂଜା ହବ- ରାସ୍ତାରେ ଛୋଟ ଗାତଟେ ଖୋଳି, ତହିଁରେ ଗୋବର ଲିପି ଫୁଲ ଚନ୍ଦନ, ସିନ୍ଦୂରରେ ପୂଜା କରାଯିବ । ଛେନା କଦଳୀ ନଡ଼ିଆ ଗୁଡ଼ ପଣା ହେଇ ଢ଼ଳାଯିବ । ଭଲମନ୍ଦ ଦିନରେ, ଶ୍ରାଦ୍ଧମଉଳାରେ କଦଳୀପତ୍ର ଖଣ୍ଡକରେ ଭାତ ଡାଲି ତିଅଣ ବାଢ଼ିଆଡ଼େ ରଖାହେବ । ବୁଲା କୁକୁରକୁ, ବିରାଡ଼ିକୁ ଭାତ ମୁଠିଏ ଦିଆଯିବ । ଯେ ସବୁ ହେଲା ଓଡ଼ିଶାର ଗ୍ରାମ୍ୟଜୀବନର, ସଂସ୍କୃତିର ଏକ ଅପରିହାର୍ଯ୍ୟ ଅଙ୍ଗ ।

ଭିକାରିଟିଏ, ବାୟା କି ବାୟାଣୀଟିଏ ଦ୍ୱାର ଦ୍ୱାର ବୁଲି ଖାଇବାକୁ ମାଗିଲେ ବୋଉ କଦଳୀପତ୍ରରେ ତବତ ଭାତ ନ ହେଲେ ମାଟି ଛେଲୁଆ (ଭଙ୍ଗାହାଣ୍ଡି)ରେ ବା ସେମାନଙ୍କ ସିଲଭର କଂସାରେ ପଖାଳ ଅଜାଡୁଥିଲା । ନ ହେଲେ କାନିରେ ମୁଢ଼ି ଗଣ୍ଡାଏ ଦେଉଥିଲା ।

ଏମିତି ଦିନ ନାହିଁ, ଯେଉଁଦିନ କିଏ ଖାଇବାକୁ ମାଗି ଫେରିଯାଇଚି। ହାଣ୍ଡିରେ ପଖାଳ ଗଡୁଥିବ। ବାସି ଆମ୍ବିଳା ହେଇଗଲା-ଗୋରୁହାଣ୍ଡିରେ ପଶିବ। କାହିଁ, ମୁଁ ତ କାହାକୁ ଖାଇବାକୁ ବାଢୁନି ? ଭିକାରି ଭାଟ ଫାଟକ ଡେଇଁ ଆସୁଚି ବା କିଏ ? ବାଟଘାଟରେ କେତେବେଳେ କିଏ ମାଗିଲା ତ ୪/୮ଅଣା ବା ଟଙ୍କାଏ ପକେଇ ଦଉଚି। ସେଇଥିରେ ଭାତ କଂସାଏ କ'ଣ ମିଳିପାରିବ ?

କ୍ରମଶଃ ମଣିଷ ନିଜକୁ ଘେରି ବଞ୍ଚି ରହୁଚି। ରୋଷେଇ ମପାଚୁପା। ଦିନସାରା ଫାଟକ ବନ୍ଦ। ଘରେ ବି ତାଲା। କୋଉଠି କୋଉଠି କୁକୁରର ଗର୍ଜନ। ହୁଏ ତ ଗୃହସ୍ଥ ଗୃହିଣୀ ଦୁହେଁ ଯାକ କର୍ମାଙ୍ଗନରେ, ନହେଲେ ବି ଫ୍ଲାଟ ଘର। କୁଆଟିଏ ଅଧାରଖାଇବାକୁ ବି ଯୋଗ ନାହିଁ। ବୁଲା କୁକର ଓ ବିରାଡ଼ିଙ୍କ ହିନସ୍ତା କହିଲେ ନ ସରେ। ମଣିଷ ପିଲା ତ ଖାଁ ଖାଁ ଲଙ୍ଗଳା ପେଟରେ ଘୂରିବୁଲୁଛନ୍ତି-ଆଉ କୁକୁର, ବିରାଡ଼ି ପିଲାଙ୍କୁ କିଏ ପଚାରୁଛି, ଆଜିକାଲି ବାଟଘାଟରେ ପଥଚାରୀଟିଏ ପାଇଁ ପାଣି ମୁନ୍ଦିଏ ବ୍ୟବସ୍ଥା କାହିଁ ? ସହରରେ କୋଉଠି କେମିତି ରାସ୍ତାକଡ଼ରେ ପାଣିକଳଟିଏ ଅଛି ତ ସର୍ବସାଧାରଣ ସେଠାରୁ ପିଇଲେ। ଗାଆଁରେ କାହା ଦୁଆରେ ମାଗିଲେ ପାଣି ମୁନ୍ଦାଏ ମିଳିବ। ସହରରେ କାହା ଦୁଆରେ ପାଣି ମୁନ୍ଦାଏ ମାଗିବା ଯେମିତି ଅକାରଣ, ଦେବା ବି ସେମିତି ଅପରାଧ। ଏଠାରେ କଥାଟିଏ କହିବା ପ୍ରାସଙ୍ଗିକ ହେବ। ରାଉରକେଲା ସହର ମଧ୍ୟରେ ଫ୍ଲାଟ ଘରେ ରହୁଥାଏ ମୋର ଝିଅଟିଏ- ସେ ଅଧ୍ୟାପିକା। ଦିନେ କଲିଂବେଲ ଶୁଣି ସେ ଝର୍କାଦେଇ ଅନାଇଁଲା। ଦେଖିଲା ଲୋକଟିଏ। କ'ଣ କଥା ? ପାଣି ମୁନ୍ଦିଏ ପିଇବି ଆଜ୍ଞା ! ଫାଟକ ଦରଆଉଜା ଅଛି। ଲୋକଟିକୁ ଶୋଷ, ଖରାବେଳ-ଫଗୁଣ ମାସ। ପବ୍ଲିକ ପାଣିକଳଟା ଅଧକିଲୋମିଟର ଦୂରରେ। ଲୋକଟା ପାଣି ମୁନ୍ଦେ ପିଉ। ଝିଅ କାଚ ଗ୍ଲାସଟେ ଓ ଜଗରେ ପାଣି ଆଣି କବାଟ ଫିଟାଇ ତାକୁ ପାଣିଦେଲା। ଲୋକଟି ପାଣି ପିଇଲା ଓ ଫେରିବାକୁ ପାଦ ବଢ଼ାଇଲା। ଝିଅ କବାଟ କିଳିଲା। ପ୍ରାୟ ୧୦ ମିନିଟ ବି ହୋଇନି ଝିଅ ଭାବିଲା, ଲୋକଟା ଫାଟକ ମେଲା ରଖି ଯାଇନି ତ ! ଅନାଇଁଲା, ଫାଟକ ଖୋଲା ଅଛି ଏବଂ ଫାଟକ ଭିତରେ, ବାହାର ଅଗଣାରେ ଶୁଖୁଥିବା ତାର ନୂଆ ଦାମୀ କମ୍ବଳଟି ନାହିଁ। ତରତର ହେଇ ଗେଟ ବାହାରକୁ ଆସିଲା- ଚାରି ଦିଗରେ ଚାରିଟା ରାସ୍ତା କୋଉଠି କେହି ଦିଶୁନାହିଁ। ପଡୋଶିନୀମାନେ ଚେତାଇଦେଲେ-''ସେମିତି କବାଟ ଖୋଲିବ ନାହିଁ-ଚୋରଗୁଡ଼ା ଚାରିଆଡ଼େ। ସେମାନେ ରାସ୍ତାକଡ଼ କଳରୁ ପାଣି ପିଅନ୍ତୁ।'' ଲୋକ ଚରିତ୍ର ବି ବଦଳିଚି। ଦାରିଦ୍ର୍ୟ ବଢ଼ି ଚାଲିଚି-ନୃଶଂସତା ବଢ଼ିଚାଲିଚି। ବଡ଼ ବଡ଼ ସହରରେ ନାନା ଛଦ୍ମବେଶରେ ଡକାୟତ ବୁଲୁଛନ୍ତି। ଅତଏବ ଭୋକୀ ଶୋଷୀଙ୍କୁ ସମବେଦନା ଜଣାଇବା କଥାଟା ଆଉ ବେଶିଦିନ ଚଳିବ ନାହିଁ। ଅଚଳ ହୋଇ ଆସିଲାଣି କ୍ରମଶଃ। ଆଉ ଚିଲ ଶିଆଳଙ୍କ ପାଇଁ, ଜଳଜୀବଙ୍କ ପାଇଁ, ଧୋବଣୀ, ଭଣ୍ଡାରୁଣୀ, ହାଡିଆଣୀଙ୍କ ଓ ଦେ ଦେଉଣିଙ୍କ ପାଇଁ ଘରେ ଘରେ ପିଠା, କ୍ଷୀରି, ତରକାରୀ ରନ୍ଧାହେବ ନାହିଁ। ସହର ମଝି ବସ୍ତିରେ ରହୁଥିବା ଗୃହ

ପରିଚାରିକାଗଣ ବହୁ ସଂଖ୍ୟାରେ ରହିଛନ୍ତି । ଗୃହିଣୀ ଟଙ୍କା ଧରାଇ ଦେଉଛନ୍ତି । 'ଦେଖ୍ ଟଙ୍କା ପଛେ କିଛି ଅଧିକା ନେ; ବେଳ ଜଗି ଚାହା ଜଳଖିଆ ମୁଁ ତୋତେ ଯୋଗାଇ ପାରିବି ନାହିଁ । ମୁଁ ଚାକିରିଆ ଲୋକ ।'' ହେଲେ ପରିଚାରିକାଟି ଯେ ଅଧିକା ଟଙ୍କା ନେଲେ ମଧ ପେଟକୁ ମୁଠାଏ ଖାଇପାରିବ ନାହିଁ- ସ୍ୱାମୀ ପିଲା ଭାଗ ବସେଇବେ ଓ ଅଧିକାଂଶ ସେ ଖାଲି ପେଟ ବା ଅଧାପେଟରେ ରହିବ । ଯେକଥା କିଏ ବିଚାର କରୁଛି ? ଆମେ ଟଙ୍କା ଅଧିକା ଦେଲୁ- ସେ ନିଜ ପେଟକୁ ନିଜେ ଖାଉ ।

ସତକଥା । ବିବେକ ଆମୁକ ଦଂଶିବ ନାହିଁ । ମରି ମରି ଆସୁଥିବା ମାନବିକତା ଧିକ୍କାର କରିବ ନାହିଁ । ମଣିଷ ପାଇଁ ତ ମୁଠିଏ ନାହିଁ-ପଶୁପକ୍ଷୀଙ୍କ କଥା ନିଆରା । ମନେ ଅଛି । ପିଲାଦିନେ ଗାଆଁ ରାସ୍ତାରେ ଅଭଡ଼ା ପାଣି ବାଣ୍ଟିବା, କେତେଥର ମୁଁ ବି ଦେଇଥିବି, ପିଇଥିବି ମଧ । ଫଗୁଣ ମାସରୁ ଜ୍ୟେଷ୍ଠ ଶେଷଯାଏ ହାଟୁଆ ବାଟୁଆଙ୍କୁ ଜଳଛତ୍ର ଦିଆଯାଉଥିଲା । ନିହାତି ହାଟ ପାଳିକି ପାଳି (ସପ୍ତାହକୁ ୪/୫ଦିନ) ଜଳଛତ୍ର ଦିଆଯିବ । ବଡ଼ ମାଟିହଣ୍ଡା ବା ମାଟି ନନ୍ଦିଆରେ ଦହି, ପାଣି, ଲୁଣ , ଲେମ୍ବୁ ଜୀରାଗୁଣ୍ଡ, ଗୋଳା ହେଇଥିବ । ସେଠାରେ ପାଣି ବାଣ୍ଟିବାକୁ କେହି ନା କେହି କିଶୋର/ଯୁବକ/ବୃଦ୍ଧବୃଦ୍ଧା ରହିଥିବେ । କାଚ, ସିଲଭର ଗ୍ଲାସ ବା ପଥୁରୀ ବାଟି ଥିବ । ଏପରି କି ଯାହା ଘରେ ଗାଈ ଦୁହାଁଳ, ଦହିମୁହାଁ ହବ, ସେ ଆପଣାଛାଏଁ ଜଳଛତ୍ର ବସାଉଥିବା ଲୋକଙ୍କୁ ଦେଇଯିବ । କିଏ କାଗେଜି, କିଏ ଅଦା ଠୁଳ କରିବେ । ସମସ୍ତଙ୍କର କିଛି କିଛି ଜିନିଷ ଜଳଛତ୍ରରେ ଲାଗୁ । ଶୋଷୀକୁ ପାଣି ମୁନ୍ଦିଏ ଦେବା ଧର୍ମକାମ । ଆଜି ଏଇ ଧର୍ମକାମର ମହତ୍ତ୍ୱ ବି କମିଗଲାଣି ।

ଗତବର୍ଷ ୧୯୯୮ ମସିହା ମେ', ମାସରେ, ପ୍ରଚଣ୍ଡ ଅଂଶୁଘାତରେ ଗାଆଁ ଓ ସହର ରାସ୍ତାରେ ଲୋକେ ଟଳିପଡ଼ିଲେ, ଜଳଛତ୍ର ବ୍ୟବସ୍ଥା ପୁଣି ତ୍ୱରାନ୍ୱିତ ହେଲା । ମାତ୍ର ଆଜିକାଲି ଆଉ ଆଗ ପରି ଗାଁଗହଳରେ ଜଳଛତ୍ର ବସାଇବାକୁ ଲୋକଙ୍କର ଆଗ୍ରହ ନାହିଁ କି ସମୟ ମଧ ନାହିଁ । ହାଟୁଆ ବାଟୁଆଙ୍କ ହିତପ୍ରତି ଧ୍ୟାନ ନାହିଁ କାହାରି । ଧ୍ୟାନ କେବଳ ନିଜେ ବଞ୍ଚିବା, ସବୁଠାରୁ ପାରଙ୍ଗମ ଭାବରେ ବଞ୍ଚିବା । ମଣିଷ ହୃଦୟରୁ ଦୟା, କରୁଣା, ଦରଦ କ୍ରମଶଃ ତିରୋହିତ ହେବାକୁ ପ୍ରସ୍ତୁତ ହେଉଛି । ଏଇ ତ ଆସିଗଲାଣି ଗ୍ରୀଷ୍ମକାଳ ବସନ୍ତଋତୁ ଯିବ ଯିବ ବୋଲି ଗୋଡ଼ କାଢ଼ିଲାଣି । ଆମେ ଶିକ୍ଷିତ, ସଚେତନ ମଣିଷ, ଏଇ କରୁଣା ଓ ଦରଦକୁ ବଞ୍ଚାଇ ନ ରଖିଲେ ଆମେ ତ ପଶୁ ପାଲଟିଯିବା । ଥରେ ହୃଦୟ କରୁଣାରେ ଆପ୍ଲୁତ ହୋଇଗଲେ ତାହା କ୍ରିୟାଶୀଳ ହେବା ନିମିତ୍ତ ବାଟ ଖୋଜିବ ଓ ଆପେ ଆପେ ବାଟ ଫିଟିଯିବ । କାହାରି ଉପଦେଶ ଲୋଡ଼ାପଡ଼ିବ ନାହିଁ । ତା'ହେଲେ ଆସନ୍ତୁ ସର୍ବାନ୍ତଃକରଣରେ ଆମେ ନିଜ ଭିତରେ ସଂକୁଚିତ ହୋଇଯାଉଥିବା ଏହି ଦରଦଟିକକୁ ବଞ୍ଚାଇବା ପାଇଁ ସର୍ବାଦୌପ୍ରୟାସ ଜାରି ରଖିବା ଏଣିକି ।



# ବିଫଳତା ଓ ପ୍ରତୀକ୍ଷା

ଆମର ସମୟ ବିଶେଷକରି ବିଂଶ ଶତକର ଉତ୍ତରାର୍ଦ୍ଧ । ଏହା ମଧ୍ୟ ଆମ ଦେଶର ସ୍ୱାଧୀନତା ପ୍ରାପ୍ତିର ୫୦ ବର୍ଷ କାଳ । ଏହି ସମୟ ଯେ ସ୍ୱାଧୀନତା ସହିତ ଦେଶବାସୀଙ୍କ ନିମିତ୍ତ ପ୍ରଚୁର ସମୃଦ୍ଧି ଆଣିଦେବ, ସ୍ୱରାଜ ସହ ରାମରାଜ୍ୟ ଆଣିଦେବ- ଏହାଥିଲା ଆମ ଭାରତୀୟମାନଙ୍କର ସ୍ୱପ୍ନ । ପ୍ରତୀକ୍ଷା ଥିଲା ଏପରି ଏକ କାଳନିମିତ୍ତ, ଯାହା ଆମକୁ ମୁକ୍ତ କରିବ, କରିବ ଉନ୍ନତ, ଏବଂ ସାମାଜିକ ତଥା ଆଧ୍ୟାତ୍ମିକ କ୍ଷେତ୍ରରେ ଆମ୍ଭମାନଙ୍କର ଅଭିବୃଦ୍ଧି ଘଟାଇବ । ଗୁରୁତର ସମସ୍ୟା ହୋଇ ଦେଖାଦେଇଥିବା ଦାରିଦ୍ର୍ୟ ଓ ଅଶିକ୍ଷା କ୍ରମଶଃ ଦୂରୀଭୂତ ହୋଇଯିବ, ସ ଆମ ପୁରାଣ ଭୂମିରେ ମନୁଷ୍ୟ ମନୁଷ୍ୟ ମଧ୍ୟରେ ସଦ୍‌ଭାବ ଓ ଆତ୍ମୀୟତା ପ୍ରତିଷ୍ଠିତ ହେବ । ସବୁଠାରୁ ଦରିଦ୍ରଲୋକଟି ବି ସ୍ୱାଧୀନତାର ସ୍ୱାଦ ଆସ୍ୱାଦନ କରିବ । କେବଳ ଆର୍ଥନୀତିକ ନୁହେଁ ଆମ ଦେଶବାସୀଙ୍କର ସାଂସ୍କୃତିକ ଓ ଆଧ୍ୟାତ୍ମିକ ବିକାଶ ସାଧିତ ହେବ । ଆମର ବର୍ତ୍ତମାନ କାଳ ଆମ ଶକ୍ତିଶାଳୀ ପରମ୍ପରାରୁ ରସଗ୍ରହଣ କରି ଗଢ଼ିଉଠିବ ଓ ପରିପୁଷ୍ଟ ହେବ । ବହୁ ଯୁଗରୁ ବିଭିନ୍ନ ଧର୍ମାବଲମ୍ବୀଙ୍କୁ ନେଇ ସହାବସ୍ଥାନ କରିବାରେ ଆମ ଭାରତ ଭୂମି ବିଶ୍ୱାସ କରି ଆସିଛି । ସେହି ସହାବସ୍ଥାନ ଆହୁରି ଶାନ୍ତିପୂର୍ଣ୍ଣ ହୋଇ ସମାଜର କଲ୍ୟାଣ ସାଧନ କରିବ । ଏହାଥିଲା ଆମର ସ୍ୱପ୍ନ ଓ ଅଭିଳାଷ । ଏହାସହିତ ଏହି ଅଭିଳାଷର ପରିପୂରଣ ଦିଗରେ ଆମର ଦାୟିତ୍ୱ ସଚେତନତା ରହିବା ଅପରିହାର୍ଯ୍ୟ ।

ହୁଏତ ସେହି ଦାୟିତ୍ୱବୋଧରେ କିଛି ତ୍ରୁଟି ରହିଯାଇଛି । ତେଣୁ ବର୍ତ୍ତମାନର ସମୟ ଆମର ସ୍ୱପ୍ନ ଓ ଅଭିଳାଷର ଅନୁସାରୀ ହୋପାରିନାହିଁ । ଏହା କେତେକାଂଶରେ ସଫଳ ହୋଇଛି ହୁଏତ, ମାତ୍ର ଏହାର ଅନେକ ବିଫଳତା ମଧ୍ୟ ରହିଛି । ରାଜନୀତିକ କ୍ଷେତ୍ରରେ ଆସିଛି ଗଣତନ୍ତ୍ର ଶାସନପଦ୍ଧତି; ମାତ୍ର ଏହାର ଅପବ୍ୟବହାର ହେତୁ ଆମ ଅର୍ଥନୀତି ଓ ସଂସ୍କୃତିର ବିକାଶ ଦିଗରେ ଏହା ସହାୟକ ହୋଇପାରିନାହିଁ । ଆଶୁଲାଭ ନିମିତ୍ତ ଗଣତାନ୍ତ୍ରିକ ସ୍ୱାଧୀନତାର ଭୁଲ ପ୍ରୟୋଗ ହୋଇଛି । ନୀତିଭ୍ରଷ୍ଟ ହୋଇଛି ଗଣତନ୍ତ୍ର । ଏହାର ତତ୍ତ୍ୱ ଓ କ୍ରିୟାଶୀଳତା Theory and Practice ମଧ୍ୟରେ ଆକାଶପାତାଳ ପ୍ରଭେଦ ରହିଛି ।

ଗଣତନ୍ତ୍ରର ପ୍ରତିଷ୍ଠା କାଳରେ ଜନନେତା ଥିଲେ ମହାତ୍ମା ଗାନ୍ଧି ଓ ଜବାହରଲାଲ ନେହେରୁ । ବର୍ତ୍ତମାନ ମଧ୍ୟ ନେତା ଅଛନ୍ତି; କିନ୍ତୁ ସେମାନଙ୍କର ବ୍ୟକ୍ତିତ୍ୱର ପରିବର୍ତ୍ତନ ଘଟିଛି । ଗଣତନ୍ତ୍ରର ମୂଳସଂଜ୍ଞା Govt by the People, of the People, for the People ହୋଇଥିବା ସ୍ଥଳେ ଆମର ଗଣତନ୍ତ୍ର ସାଧାରଣ ଲୋକଙ୍କ ପାଇଁ ଶୁଭଙ୍କର ହୋଇପାରିନାହିଁ । ଏହା ହୋଇଛି Not for the People ଦାରିଦ୍ର୍ୟ ଓ ଅଶିକ୍ଷା କବଳରେ ପଡ଼ି ସାଧାରଣ ଜନତା ଗଣତନ୍ତ୍ର ଶାସନ ପଦ୍ଧତିରେ ତାର ଭୂମିକା ଉପଯୁକ୍ତ ଭାବେ ନିର୍ବାହ କରିପାରୁନାହିଁ । ସ୍ୱାଧୀନତୋର କାଳରେ ଦାରିଦ୍ର୍ୟର ସୀମାରେଖା ତଳେ ଯେତେ ସଂଖ୍ୟକ ନାଗରିକ ରହିଥିଲେ, ତହିଁରେ ସାମାନ୍ୟ କିଛି ପରିବର୍ତ୍ତନ ବା ଉନ୍ନତି ଘଟିଥିବାର ତଥ୍ୟ ଏବେ ପ୍ରଖ୍ୟାତ ଅର୍ଥନୀତିଜ୍ଞ ଡଃ ରାଜା.ଜେ. ଚେଲିୟା ପ୍ରକାଶ କରିଛନ୍ତି, ଯାହାକି ଅତ୍ୟନ୍ତ ନଗଣ୍ୟ ।

ଗାନ୍ଧିଜୀଙ୍କ ସ୍ୱପ୍ନକୁ ସାର୍ଥକ କରିବା ପାଇଁ ଭାରତୀୟମାନେ ବ୍ୟକ୍ତିଗତ ଓ ଜାତିଗତସ୍ତରରେ ଉଦ୍ୟୋଗ କରିନାହାନ୍ତି । ତେଣୁ ଗାନ୍ଧିଜୀଙ୍କ ସ୍ୱପ୍ନ ସହ ସାଧାରଣ ଭାରତୀୟର ଉନ୍ନତିର ସ୍ୱପ୍ନ ହୋଇଛି ବିଡ଼ମ୍ବିତ । ଆମ ଦେଶର ବିକାଶପଦ୍ଧତି ସାଧାରଣ ଲୋକର ସମସ୍ୟାକୁ ଆଖିଆଗରେ ରଖି ସ୍ଥିରୀକୃତ କରାଯାଉ-ଏହାଥିଲା ଗାନ୍ଧିଜୀଙ୍କ ଅଭିଳାଷ; ମାତ୍ର ତାହା ଘଟିନାହିଁ । ଅନେକ ଶିଳ୍ପ କାରଖାନା ସ୍ଥାପିତ ହୋଇଛି; କିନ୍ତୁ ତାହାଦ୍ୱାରା ସାଧାରଣ ଲୋକ ଲାଭବାନ ହୋଇପାରିନାହିଁ । କଳକାରଖାନା ପାଇଁ ଆମରଶାସନ ଏବେବି ବିଦେଶୀ ପୁଞ୍ଜି ଯୋଗାଣକୁ ଅନାଇଁ ବସିଛି । ଆମେ ବହୁକ୍ଷେତ୍ରରେ ସ୍ୱାବଲମ୍ବୀ ହୋଇପାରି ନାହୁଁ । ବିଶ୍ୱବିଦ୍ୟାଳୟ ସ୍ଥାପନ ହୋଇଛଇ ମାତ୍ର ଶିକ୍ଷା, ବୈଷୟିକ ଶିକ୍ଷା ଯଥେଷ୍ଟ ବିକଶିତ ହୋଇନାହିଁ । ଗମନାଗମନର ଉନ୍ନତି ଓ କୃଷିର ଆଧୁନିକୀକରଣ ହୋଇପାରି ନାହିଁ । ଏବେ ବି ସେହି ହଳବଳଦ ଓ ପାଣିପାଗ ଉପରେ କୃଷି ନିର୍ଭରଶୀଳ ହୋଇରହିଛି । ଭାରତୀୟମାନେ ମହାକାଶକୁ କୃତ୍ରିମ ଉପଗ୍ରହ ପ୍ରେରଣ କରିଛନ୍ତି । କାରିଗରୀ କୌଶଳରେ କିଛିଟା ଅଗ୍ରଗତି ହୋଇଛି ସତ, ମାତ୍ର ବାକୀ ରହିଯାଇଛି ଅନେକ । ଆମଦେଶରୁ ହଜାର ହଜାର ଇଞ୍ଜିନିୟର ଡାକ୍ତର ଦେଶତ୍ୟାଗୀ ହୋଇଯାଉଛନ୍ତି । କାରଣ ତାଙ୍କ ବୈଷୟିକ ଜ୍ଞାନର ଉପଯୁକ୍ତ ବିନିଯୋଗ ନିମନ୍ତେ ଏଠାରେ ଭୂମି ପ୍ରସ୍ତୁତ ହୋଇନାହିଁ । ଆମ ଦେଶରେ ଜ୍ଞାନ ଓ ମେଧାର ଆଦର ଅଭାବହେତୁ ମଣିଷ ସମାଜ ହତୋତ୍ସାହ ହେଉଛନ୍ତି ।

ଗ୍ରାସାଚ୍ଛାଦନ ପ୍ରାଥମିକ ଆବଶ୍ୟକତା ହେଲେ ହେଁ ଏହାବ୍ୟତୀତ ମଣିଷ ଜୀବନର ଅନ୍ୟ ଏକ ଶ୍ଳାଘ୍ୟ ଦିଗ ରହିଛି- ତାହା ତାର ସାଂସ୍କୃତିକ ବିକାଶ ଉପରେ ନିର୍ଭରଶୀଳ । ଗ୍ରାସାଚ୍ଛାଦନ ଶରୀରର ଆବଶ୍ୟକତା ହେଲେ ସଂସ୍କୃତି ହୃଦୟର, ଭାବଜଗତର ଆବଶ୍ୟକତା । ସାଧାରଣ ଜନତା ଶିକ୍ଷାଲୋକ ପାଇ ନାହିଁ ଏବଂ ତାର ସମୟ ଓ ଶ୍ରମର ବହୁଳାଂଶ ଗ୍ରାସାଚ୍ଛଦନ ଚିନ୍ତାରେ ଅତିବାହିତ ହେଉଛି । ତେଣୁ ତାର ସାଂସ୍କୃତିକ ଅଭ୍ୟୁଦୟ ଆଶାଜନକ ଭାବେ ହୋଇପାରୁନାହିଁ । ସୂକ୍ଷ୍ମ ଚେତନାଗତ ପ୍ରଗତି ସମ୍ଭବ ହେଉନାହିଁ । ତେଣୁ

ଏହି ସାଂସ୍କୃତିକ ଶୂନ୍ୟତା, ମଧ୍ୟକୁ ପଶିଆସିଛି ଅବକ୍ଷୟ । ଏହି ଅବକ୍ଷୟ ଏକ ତଥାକଥିତ (Socalled) ସଂସ୍କୃତିର ରୂପ ନେଇଛି । ଅଶ୍ଳୀଳ ସଙ୍ଗୀତ, ସାହିତ୍ୟ ଓ ଚଳଚ୍ଚିତ୍ରର ପ୍ରଚଳନ ଏହି ଅବକ୍ଷୟୀ ସଂସ୍କୃତି ହେତୁ ସମ୍ଭବ ହୋଇଛି ।

ଆଧ୍ୟାତ୍ମିକତାର ଉଜ୍ଜ୍ୱଳ ଭୂମି ଏଇ ଭାରତବର୍ଷରେ ଆଜି ଧର୍ମଧାରଣାରେ ସଂକୀର୍ଣ୍ଣତା ଓ ଅନ୍ଧତ୍ୱ ବିଶେଷ ସମସ୍ୟା ଭାବେ ଉପସ୍ଥିତ ହୋଇ ଭୟାବହ ବିଡ଼ମ୍ବନା ସୃଷ୍ଟି କରିଛି । ରାଜନୀତିକ ଭ୍ରଷ୍ଟାଚାର ହେତୁ ଭୋଟ ଅନ୍ୱେଷୀ ନେତାଗଣ ସାଧାରଣ ଜନତାଙ୍କୁ ଧର୍ମ ଓ ଜାତିଭିତ୍ତିରେ ଭାଗ ଭାଗ କରିଦେଇଛନ୍ତି । ବିରାଟ ବିରାଟ ଧର୍ମସଭା ହେଉଛି । ପ୍ରବଚନ ହେଉଛି । ହେଲେ ମଣିଷର ଚିତ୍ତରାଜ୍ୟ ଆଲୋକିତ ହୋଇପାରୁ ନାହିଁ । କୌଣସି ଧର୍ମବାଣୀ ଆତ୍ମାକୁ ଉଦ୍‌ବୁଦ୍ଧ କରିପାରୁ ନାହିଁ । ରାଜନୀତିକ ଶଠତା ଓ ସମାଜସେବାର ଭଣ୍ଡାମି ଏତେ ପ୍ରଚୁର ଓ ତୀବ୍ର ହୋଇଛି ଯେ ରାଜନୀତି ଓ ସମାଜସେବା ଶବ୍ଦ ଦୁଇଟି ନିଜସ୍ୱ ଅର୍ଥ ହରାଇ ନ୍ୟୂନ ହୋଇ ପଡ଼ିଛନ୍ତି । ମଣିଷର ମତାନ୍ଧ ଚିତ୍ତରାଜ୍ୟରେ ହିଂସା ଓ ସନ୍ତ୍ରାସ ଆସ୍ଥାନ ମାଡ଼ିବସିଛି । ଗାନ୍ଧିଜୀଙ୍କ ଅହିଂସ ସମାଜ ବର୍ତ୍ତମାନ ବିବେଚନାଶୂନ୍ୟ ଭାବେ ହିଂସ୍ର ହୋଇଉଠିଛି । ଅଧ୍ୟାତ୍ମ ବିକାଶର ଅଭାବରେ ପଶୁ ପାଲଟିଯାଇଛି । ସମୂହହତ୍ୟା, ସନ୍ତ୍ରାସ, ଗୁଳିକାଣ୍ଡ, ବୋମା ବିସ୍ଫୋରଣ ଦ୍ୱାରା ନିରୀହ ଜନତାର ହତ୍ୟା ଆଜିକାଲି ସମ୍ବାଦପତ୍ରମାନଙ୍କର ନିତ୍ୟ ନୈମିତ୍ତିକ ବାର୍ତ୍ତା । ଏହା ଆମର ସ୍ୱପ୍ନ ଓ ଅଭିଳାଷପ୍ରତି ଦାରୁଣ କୁଠାରାଘାତ ଭିନ୍ନ ଅନ୍ୟ କିଛି ନୁହେଁ । ଯେଉଁ ଶାନ୍ତି ଓ ମୁକ୍ତି ପାଇବା ନିମିତ୍ତ ଆମେ ଆଶାୟୀ ଥିଲେ, ତାହା ସୁଦୂର ପରାହତ ହୋଇଯାଇଛି । ହିଂସା ଓ ସନ୍ତ୍ରାସ କବଳରେ ମାନବିକତା ମୁମୂର୍ଷ ହୋଇପଡ଼ିଛି । ଅତଏବ ମଣିଷ ମଣିଷ ମଧ୍ୟରେ ଆତ୍ମିକ ସମ୍ପର୍କ ପ୍ରତିଷ୍ଠା ଦିଗରେ ଘୋର ପ୍ରତିବନ୍ଧକ ସୃଷ୍ଟି ହୋଇଛି ।

ଏହି ଶତାବ୍ଦୀରେ ବିଶେଷକରି ବିଗତ ୫୦ ବର୍ଷ ମଧ୍ୟରେ ଆମର କୌଣସି ଆଶା ଯଦି ଅଧିକ ଫଳବତୀ ହୋଇଥାଏ, ତାହା ହେଉଛି ନାରୀ ପ୍ରଗତିର ଅଭିଳାଷ । ନାରୀ ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ବାଚସ୍ପତି, ବିମାନଚାଳିକା, ବିଦେଶ ସଚିବ, ମହାକାଶଚାରିଣୀ ହୋଇଛନ୍ତି ଓ ଶିକ୍ଷା, ସଂସ୍କୃତି କ୍ଷେତ୍ରରେ ଖୁବ୍ ଅଗ୍ରସର ହୋଇଛନ୍ତି । ଏହି ଶତାବ୍ଦୀର ପ୍ରାକ୍‌କାଳରେ କନ୍ୟା ସନ୍ତାନଟିଏ ପାଠପଢ଼ିବା ମଧ୍ୟ ଅଦ୍ଭୁତ ଅନାଚାରରୂପେ ବିବେଚିତ ହେଉଥିଲା; ମାତ୍ର ଏହି ଶତାବ୍ଦୀର ଶେଷକାଳକୁ ତାହାର କାର୍ଯ୍ୟଦକ୍ଷତା ଓ ସଫଳତା ଶୀର୍ଷରେ ପହଞ୍ଚିଯାଇଛି । ହୁଏତ ଆମର ସ୍ୱପ୍ନ ଯେତେ ଅଗ୍ରସର ହୋଇନଥିଲା, ବାସ୍ତବ ପ୍ରଗତି ତା'ଠାରୁ ଅଧିକ କ୍ରାନ୍ତିକାରୀ ହୋଇଛି; କିନ୍ତୁ ନିଆଁ ସହିତ ଧୂଆଁ ପରି ଆଲୋକ ସହିତ ଛାୟାପରି ନାରୀର ପ୍ରଗତି ସହ ନିର୍ଯ୍ୟାତନା ମଧ୍ୟ ବଢ଼ିଚାଲିଛି । କନ୍ୟା ସନ୍ତାନଟିଏ ଭୂମିଷ୍ଠ ହେବାପୂର୍ବରୁ ତାକୁ ହତ୍ୟା କରାଯାଉଛି । ଜୀବନ କ୍ଷେତ୍ରରେ ନାରୀଟିଏ ବହୁଭାବରେ ଅପମାନିତ ଓ ଅବହେଳିତ ହେଉଛି । ନିଜର ବୁଦ୍ଧି, ନିଷ୍ଠା ଓ ଅଧ୍ୟବସାୟ ବଳରେ ସେ ଆଶ୍ଚର୍ଯ୍ୟଜନକ ସଫଳତା ଲାଭ କରୁଛି । ତଥାପି ତାର ନିର୍ଯ୍ୟାତନାର ଅନ୍ତ ହୋଇନାହିଁ ।

କନ୍ୟାଭ୍ରୂଣ ହତ୍ୟା, ନାରୀଧର୍ଷଣ, ଯୌତୁକ-ନିଧନ ନୀତିଦିନର ଘଟଣା ହୋଇପଡ଼ିଛି ।

ତେଣୁ ଗୋଟିଏ ବାକ୍ୟରେ କହିଲେ ଆମ ସମୟ ଆମ ଆଶା ଅଭିଳାଷର ଅନୁରୂପ ହୋଇପାରି ନାହିଁ । ଅନେକ ବିଫଳତା, ବିଡ଼ମ୍ବନା ଓ ଅସହମତି ରହିଯାଇଛି । ଆମେ କିଛିଟା ଉନ୍ନତ ହୋଇଛୁ; ମାତ୍ର ଆଶାନୁରୂପ ସଫଳ ହୋଇନାହୁଁ ।

ଦାରୁଣ ଅସହମତିର ସାମ୍ନା କରୁଛୁ । ଆମ ହୃଦୟର ଅଭ୍ୟନ୍ତର ପ୍ରଗତିର ଆଲୋକରେ ଆଲୋକିତ ହୋଇନାହିଁ । ଆମ ରାଜନୀତିରେ ଅଭିସନ୍ଧି, ସମାଜସେବାରେ ସ୍ୱାର୍ଥ ସର୍ବସ୍ୱତା, ଧର୍ମଭାବନାରେ ଅହଂକାର ଓ ଅସହିଷ୍ଣୁତା, ସଂସ୍କୃତିରେ ଅବକ୍ଷୟର ପ୍ରବେଶ, ଆମ ପାରିବାରିକ ଜୀବନରେ ଲୋଭର ଲେଲିହାନ ଆଧିପତ୍ୟ ଆମକୁ ଆହତ ଓ ବିକ୍ଷୁବ୍ଧ କରିଛି । ଆମ ସମୟ ଲକ୍ଷ୍ୟ ସିଦ୍ଧ ହୋଇନାହିଁ । ଆଧାତ୍ମବିକାଶ ପାଇଁ ଅନୁକୂଳ ପରିବେଶ ସୃଷ୍ଟି ହୋଇପାରିନାହିଁ ।

ତେବେ ଏଠାରେ ବୁଝିବାକୁ ହେବ ଯେ ଆମ ସମୟକୁ ସୁଧାରିବାର, ଅଭୀପ୍‌ସିତ କରି ଗଢ଼ି ତୋଳିବାର ସମୟ ଅତିକ୍ରାନ୍ତ ହୋଇନାହିଁ । ଆମେ ଏହାକୁ ଆଶାନୁରୂପ ଗଢ଼ିତୋଳିବା ପାଇଁ ପ୍ରୟାସ କରିବା ଓ ଅପେକ୍ଷାକରିବା । ସ୍ୱପ୍ନର ସାର୍ଥକତା ପାଇଁ ଗୁରୁଦାୟିତ୍ୱ ବହନ କରିବା । ଲକ୍ଷ୍ୟସିଦ୍ଧି ଦିଗରେ ଆଗେଇ ଚାଲିବା ନିମିତ୍ତ ନିଜ ଅନ୍ତଃକରଣକୁ ସମର୍ଥ କରିବା, ଏଥିନିମିତ୍ତ ଅଧ୍ୟାତ୍ମ ଉତ୍ତରଣ ବ୍ୟତୀତ ଅନ୍ୟପନ୍ଥା ନାହିଁ । ଏହି ଘୋର ଦୁର୍ନୀତି, ଛଳନା, ହିଂସା, ଅନ୍ଧତ୍ୱର କାଳକୁ ସୁନ୍ଦର କରିବା ପାଇଁ ଆମେ ସର୍ବପ୍ରଥମେ ନିଜର ଓ ପ୍ରତିଟି ମଣିଷର ଅନ୍ତରକୁ ଅଧ୍ୟାତ୍ମ ଅନୁଭବର ଜଳରେ ଅଭିଷିକ୍ତ କରାଇବା । ନିଜକୁ ଓ ନିଜ ସମୟକୁ ବହୁ ଭୁଲ, ବହୁ ଛଳନାତ୍ମକ ମୂଲ୍ୟବୋଧରୁ ଉତ୍ତୀର୍ଣ୍ଣ କରାଇବାର ଦାୟିତ୍ୱ ଆମର । ସେ ଦିଗରେ ଆମେ ପ୍ରୟାସ ଜାରି ରଖିବା । ମଣିଷ ମଣିଷ ମଧ୍ୟରେ ସ୍ନେହ ସୌହାର୍ଦ୍ଦ୍ୟ ସଂସ୍ଥାପନା ହେବ ଏହି ଲକ୍ଷ୍ୟ ସିଦ୍ଧିର ପ୍ରଥମ ସୋପାନ । ସକଳ ମାନବିକ ଗୁଣ, ତ୍ୟାଗ, ସେବା ଓ ସହିଷ୍ଣୁତା ତଥା ମମତାରେ ପ୍ରତ୍ୟେକ ବ୍ୟକ୍ତି ଭୂଷିତ ହେଲେ ହିଁ ଆମେ ଆମର ଅଭିଳକ୍ଷିତ ସମୟକୁ ଗଢ଼ିତୋଳିବା । ଆଗାମୀ ଏକବିଂଶ ଶତାବ୍ଦୀରେ ଆମରସ୍ୱପ୍ନ ସାର୍ଥକ ହେବ ଓ ଆମେ ମନୋମତ ପରିବେଶରେ ଜୀବନ ବିତାଇବାକୁ ସମର୍ଥ ହେବା ।

ଏହି ସମ୍ଭାବନା ଖୁବ ନିକଟବର୍ତ୍ତୀ । ଯେଉଁଠି ଅସ୍ଥିରତା ଓ ବିକ୍ଷୋଭ ପ୍ରବଳ ହୋଇଥାଏ, ସେଠାରେ ହିଁ କିଛି ପରିବର୍ତ୍ତନ ସଂଘଟିତ ହୋଇଥାଏ । ଏହି ସତ୍ୟ ଇତିହାସ ସମର୍ଥିତ । ତେଣୁ ଆମେ ଆଶାକରିବା ଯେ ଏହି ଅସହମତିଯୁକ୍ତ ସମୟ ଆମର ଆନ୍ତରିକ ଉଦ୍ୟମ ହେତୁ ନିଶ୍ଚୟ ଗଠନମୂଳକ ଭାବେ ପରିବର୍ତ୍ତିତ ହେବ ।

(-ହିନ୍ଦିରେ ଅନୂଦିତ ହୋଇ ଉତ୍ତରପ୍ରଦେଶ ହିନ୍ଦୀ ସଂସ୍ଥାନର ମୁଖପତ୍ର 'ଅତଏବ'ର ମାର୍ଚ୍ଚ ୧୯୯୮ ସଂଖ୍ୟାରେ ପ୍ରକାଶିତ ।)



# ଧର୍ମ-ପତାକା ବନାମ ଅନୁଚିନ୍ତା

ଆଜି ରାଜଧାନୀରେ ଅସଂଖ୍ୟ ଧର୍ମାନୁଷ୍ଠାନ-ମନ୍ଦିର । ଗୋଟିଏ ଗଳିରେ ୪/୫ ମନ୍ଦିର ମଧ୍ୟ ରହିଛି । କେହି କେହି ନିଜ ଘରର ପରିସର ମଧ୍ୟରେ ଛୋଟ ମନ୍ଦିରଟିଏ ମଧ୍ୟ କରିଛନ୍ତି । କେବଳ ରାଜଧାନୀ କାହିଁକି, କଟକ ସହର ଓ ଅନ୍ୟାନ୍ୟ ସହରରେ ମଧ୍ୟ ଏହିଭଳି ବ୍ୟବସ୍ଥା ହୋଇଛି । ରାଜଧାନୀରେ ଜମି ଦୁର୍ମୂଲ୍ୟ । ଯିଏ ଯୋଗାଡ଼ କରିପାରିଲା ପାରିଲା, କିନ୍ତୁ ଧର୍ମ ନାମରେ ଯୋଗାଡ଼ କରିବା ସହଜ । ଶାସକ ଓ ପ୍ରଶାସକମାନେ ଧର୍ମ ନାଁ ଶୁଣିଲେ ସମ୍ଭବତଃ ଛାନିଆଁ- ନିଜ ମନ ଭିତରେ ଥିବା ସଂଶୟ ଓ ତ୍ରୁଟି ଗୁଡ଼ାକ ତୀକ୍ଷ୍ଣ ହୋଇ ଉଠନ୍ତି । ସେମାନେ ଯେଉଁ ମାର୍ଗର ଭକ୍ତ, ଭକ୍ତି ନ ହେଲେବି ଧର୍ମ କଥାରେ ସେମାନେ ସହଜରେ ବିରୋଧ କରନ୍ତି ନାହିଁ । ଅତଏବ ସହରର ଭଲ ଭଲ ସ୍ଥାନରେ ବୃହତ୍ ପରିସର ଭିତରେ ମନ୍ଦିର ବା ମଠର ଅବସ୍ଥିତି । ଗାଆଁମାନଙ୍କରେ ଏତେ ସଂଖ୍ୟକ ମନ୍ଦିର ବଢ଼ିଚାଲିନଥିଲେ ବି ପୂର୍ବାପେକ୍ଷା ଅଧିକ ସଂଖ୍ୟକ ନିର୍ମିତ ହେଉଛି ।

ଥରେ, ମୋ ପିଲାଦିନେ, ଆମ ଗାଆଁର ଜଣେ ସଂଗତି ସଂପନ୍ନ ବ୍ୟକ୍ତିଙ୍କ ଘରେ ଜଣେ ବାବା ଆସି ରହିଥିଲେ । ସେ ବାବା ପଇଡ଼ ପାଣିରେ ଗାଧାନ୍ତି, ଭାତ ଖାଆନ୍ତି ନାହିଁ । ତାଙ୍କ ପାଇଁ ପ୍ରତିଦିନ ୭ ପ୍ରକାର ପିଠା, ଦୁଇ ବେଳା ହୁଏ । ସଂକୀର୍ତ୍ତନ କରନ୍ତି ଓ ରାଧାକୃଷ୍ଣଙ୍କୁ ପୂଜା କରନ୍ତି । ଘଟଣାକ୍ରମେ ବର୍ଷେ ବି ଯାଇନାହିଁ । ଆଉ ଜଣେ ବାବା ପହଞ୍ଚନ୍ତି । ଉଭୟଙ୍କ ଭିତରେ କଳିଗୋଳ ଲାଗେ, ପୂର୍ବୋକ୍ତ ବାବାଙ୍କ ଗୋଇ ଖୋଳି ପରବର୍ତ୍ତୀ ବାବା ତାଙ୍କ ଦୋଷ ପଦାରେ ପକାନ୍ତି ଓ ଖୁବ୍ ଗୋପନରେ ପୂର୍ବୋକ୍ତ ବାବା ପଳାୟନ କରନ୍ତି । ପରବର୍ତ୍ତୀ ବାବା କିନ୍ତୁ ହାତଗୋଡ଼ ଚାଲୁଥିବା ଯାଏଁ, ଆମ ଗ୍ରାମରେ ଜଣେ ଦରିଦ୍ର ଲୋକର କୁଡ଼ିଆରେ ରହି ପୂଜା ପାଠ କରି ଚଳୁଥିଲେ । ପରେ ଶକ୍ତ ବେମାର ଅବସ୍ଥାରେ ତାଙ୍କୁ ନେଇ ଲୋକେ ତାଙ୍କ ନିଜ ଘରେ ଛାଡ଼ିଦେଇ ଆସିଥିଲେ । ମୋର ସେତେବେଳ ୭ମ/୮ମ ଶ୍ରେଣୀ । ବସ୍ତୁତଃ ସେହି ଧନୀ ପରିବାରର ଝିଅ ମୋର ସହପାଠିନୀ ଥିଲା ।

ପରବର୍ତ୍ତୀ ସମୟରେ ପ୍ରାୟ ୧୫/୧୬ ବର୍ଷ ତଳେ ମୁଁ ଆକୃଷ୍ଟ ହୋଇଗଲି ଭୁବନେଶ୍ୱରର ଏକ ବିଶିଷ୍ଟ ମଠ ପ୍ରତି । ବାବାଥିଲେ ଜଣେ ସୌମ୍ୟ ମୂର୍ତ୍ତି । ଲୋକେ ତାଙ୍କ

ପାଦଧରି ଲମ୍ବ ହୋଇପଡ଼ନ୍ତି । ରାଜଧାନୀରେ ବିଶିଷ୍ଟ ଲୋକେ ତାଙ୍କର ଶିଷ୍ୟ, ଶିଷ୍ୟା । ବାବା ନିଜେ କେବଳ କ୍ଷୀର ପିଅନ୍ତି- କିନ୍ତୁ ମଠରେ ଭୋଜିଭାତ କରି ବହୁତ ଲୋକଙ୍କୁ ଖୁଆନ୍ତି । ଶିଷ୍ୟ ଶିଷ୍ୟା ଟଙ୍କା ଅଜାଡ଼ି ଦିଅନ୍ତି । ଯା'ହଉ ମଣିଷର ଚିନ୍ତାଗ୍ରସ୍ତ ମନକୁ ଟିକେ ଶୀତଳ ଆଶ୍ୱାସନାରେ ହାଲୁକା କରିବାକୁ ଅନ୍ତତଃ ଯେ ଗୋଟିଏ ସ୍ଥଳୀ । ଦୈବ ଦଣ୍ଡରେ ଛଟପଟ, ଅବିଚାରରେ ବିଦ୍ଧ ଲୋକମାନଙ୍କର ତ ଆଶ୍ରୟ ଦରକାର ! ଏତେ ଲୋକଙ୍କର ମନ କିଣି ମନକୁ ପାଇଲା ପରି କଥା କହିବା ମଧ୍ୟ ଏକ ବିଶେଷ ଯୋଗ୍ୟତା । ସେହି ମଠକୁ ଜଣେ ମାତା ଥରେ ଥରେ ଆସନ୍ତି । ସେ କଳା ଓ ଅନାକର୍ଷଣୀୟା ହେଲେବି ସୁନ୍ଦର ସ୍ୱରରେ କୀର୍ତ୍ତନ ଓ ରାମଲୀଳା ପରିବେଷଣ କରନ୍ତି । କିନ୍ତୁ କ'ଣ ହେଲା କେଜାଣି, ନାନା ଦୁର୍ନୀତି, କୁକର୍ମର ସମ୍ବାଦ ଶୁଣାଗଲା ଓ ମଠର ଗୁରୁତ୍ୱ ହ୍ରାସ ପାଇଲା । କହିପାରିବି ନାହିଁ କ'ଣ ଖୋଜିବାକୁ ମୁଁ ବି ବେଳେ ବେଳେ ସେହି ମଠାରେ ପହଞ୍ଚେ । ଭଲଲାଗେ । କିନ୍ତୁ ଖୁବ୍ ବେଶି କୌଣସି ମଠ ଓ ମନ୍ଦିର ପ୍ରତି ମୁଁ ଆକୃଷ୍ଟ ହୋଇପାରେ ନାହିଁ । କାରଣ, ଆନୁଷ୍ଠାନିକ ଧର୍ମରେ ମୁଁ ପିଲାଦିନୁଁ ବିଶ୍ୱାସ ରଖେ ନାହିଁ । ମୁଁ ଈଶ୍ୱର ବିଶ୍ୱାସୀ- ସଂସାରର ଭଲ ମନ୍ଦରେ ମୁଁ ମଧ୍ୟ ଈଶ୍ୱରଙ୍କୁ ଦାୟୀ କରେ । ଅଭିମାନ କରେ ଓ ସ୍ଥଳ ବିଶେଷରେ ବିଶ୍ୱାସ ରଖେ ଯେ, ଈଶ୍ୱର ନିରୁପାୟ ଏବଂ ସେଥିପାଇଁ ବେଳେ ବେଳେ ଅନ୍ୟାୟ, ରକ୍ତପାତର ସାକ୍ଷୀ ନ ହୋଇ ତାଙ୍କର ଅନ୍ୟୋପାୟ ନଥାଏ । ତେବେ ଈଶ୍ୱରଙ୍କ ଇଚ୍ଛା ବିନା ଦୂବ ଟିଏ ବି କଅଁଳେ ନାହିଁ । ଏହା ମୁଁ ବିଶ୍ୱାସ କରେ । ହୋଇପାରେ ନିଜ ପ୍ରତି ଅନାସ୍ଥା ହେତୁ ବା ପଳାୟନ ମନୋଭାବ ହେତୁ ଏପରି ଘଟିଥିବ । କିନ୍ତୁ ବିଶ୍ୱାସ ତ ବିଶ୍ୱାସ, ତାକୁ ଆଉ ପ୍ରଶ୍ନ କରିହୁଏ ନାହିଁ । ପ୍ରଶ୍ନ କଲେ ତା' ଆଉ ବିଶ୍ୱାସ ହୋଇ ରହେ ନାହିଁ । ମୋ ବିଶ୍ୱାସକୁ ନେଇ ମୁଁ ଦୃଢ଼, ତେଣୁ ଆଶ୍ୱସ୍ତ ମଧ୍ୟ ।

ଭବ ସିନ୍ଧୁର ଅଥଳଜଳ ଭିତରେ, ଝଡ଼ର କବଳରେ ମୁଁ ଯେ ନ ପଡ଼ିଛି ନୁହେଁ, ମାତ୍ର ସବୁ ପ୍ରତିକୂଳତା କାଟିକି ପହଞ୍ଚିଯାଇଛି ଉତ୍ତର ବୟସରେ । ଈଶ୍ୱର ପାଖରେ ଠିଆ ହୋଇଛନ୍ତି ବୋଲି ମୁଁ ଭାବେ । ଯଦିଓ ତାଙ୍କର ଆକାର ବିଷୟରେ ମୁଁ ସଠିକ୍ କିଛି କହିପାରିବି ନାହିଁ । ତେବେ ମୋ କଥା ଏଇଠି ଥାଉ । କେତେ ଧର୍ମ ସଭା ଚାରିଆଡ଼େ ଚାଲିଛି । ଦେଖିବାକୁ ଗଲେ ରାଜଧାନୀରେ ପ୍ରତିଦିନ ଧର୍ମସଭା, କୋଉଠି ନା କୋଉଠି, କୋଉ ଦଳର ଧର୍ମଗୁରୁଙ୍କ ଠାରୁ ପ୍ରବଚନ । ମୁଁ ଖୁବ୍ କମ୍ ଥର ଶୁଣିବାକୁ ଯାଇଛି ପ୍ରବଚନ । ଶୁଣି ଅଭିଭୂତ ହୋଇଛି । ଭାବିଛି, ଯେ ସବୁକଥା ମୁଁ ଜାଣିଥିଲି କିନ୍ତୁ ଏସବୁ-କୁ ସମନ୍ୱିତ କରି ଏତେ ପ୍ରାଞ୍ଜଳ ଭାବେ ପରିବେଷଣ କରିବା କମ୍ ବଡ଼ କଥା ନୁହେଁ । ତେଣୁ ପ୍ରବକ୍ତାମାନେ ଯଥାର୍ଥତଃ ମହାନ୍- ଅନ୍ଧ ମୁହାଣି ଆଡ଼କୁ ଅତର୍କ୍କ ହୋଇ ଦୌଡୁଥିବା ଲୋକଙ୍କ ମନକୁ କେତେ ଘଣ୍ଟା ପାଇଁ ସ୍ଥିର ଓ ଶାନ୍ତ କରିଦେବାକୁ ତ ଏ ମାନଙ୍କର ଏତେ ପ୍ରଚେଷ୍ଟା, ଧର୍ମ ପ୍ରବକ୍ତାମାନଙ୍କ ମଧ୍ୟରେ ଶତକଡ଼ା ୧୦/୨୦ ଜଣ ଯେ ଶଠ ନଥିବେ, ତା'ତ କହିହେବ ନାହିଁ - ବେଳେବେଳେ ପ୍ରମାଣିତ ମଧ୍ୟ ହୋଇଯାଏ । ତଥାପି, ବାକି ଯେତିକି

ଶୁଦ୍ଧ-ସେଇ ଶୁଦ୍ଧତାର ପ୍ରବାହ ଆମ ଭିତରେ ଖେଳିଯାଇ ଆମବାତାବରଣକୁ ବାଷ୍ପମୟ କରୁନାହିଁ କି ? ଆଲୋକ ତ ଅନ୍ଧାର ସହ ମିଶିକିଥାଏ । ଅତଏବ ଶଠତା ଏକ ମନୁଷ୍ୟ ଗତ ତ୍ରୁଟି । ଏହା ରହବ ହିଁ ରହିବ । ଅଧିକ କିଛି ନୁହେଁ ।

ଏତେ ମନ୍ଦିର, ଏତେ ମଠ, ଭଜନ, କୀର୍ତ୍ତନ, ପ୍ରବଚନ ପରିପାର୍ଶ୍ୱକୁ, ବାୟୁମଣ୍ଡଳକୁ ନିନାଦିତ କରୁଛି । ଦିନେ ଦିନେ ପାହାନ୍ତାରେ ନିଦଭାଙ୍ଗି ଗଲେ 'ହରେ କୃଷ୍ଣ', 'ହରେ ରାମ'' ସଂକୀର୍ତ୍ତନ ଶୁଭିଯାଏ- ଯାହା ହେଉ ଚେତନାର ପ୍ରହରୀ ପରି ଏମାନେ ପାହାନ୍ତାରୁ ଉଠି କୀର୍ତ୍ତନ କରି କରି ଯାଉଛନ୍ତି । ଦୁନିଆଁର ସବୁ ଶଠତା, ଚାଲାକି ଶୋଷଣ ଏଠାରେ ପରାସ୍ତ ହୋଇଯାଉ ନାହିଁ କି ? ହେଉ ପଛେ କେତୋଟି ମୁହୂର୍ତ୍ତ ପାଇଁ । ତଥାପି ଏତେ ଗୁଡ଼ିଏ ମଠ ମନ୍ଦିରର ପତାକା ତଳେ କୋଉଠି ରହିଯାଇଛି ନଗ୍ନ ହିଂସା, ନିଷ୍ଠୁରତା, ଶାଣିତ କ୍ରୋଧ ଓ ଅହଙ୍କାର ? ପୁରୁଷ, ନାରୀ ଓ ଶିଶୁ ସମସ୍ତଙ୍କ ମନକୁ କବଳିତ କରୁଛି । ବାତାବରଣର ସକଳ ପବିତ୍ରତା କୁଆଡ଼େ ଲୀନ ହୋଇଯାଉଛି ।

ସ୍କୁଲ ପିଲାମାନେ ନିଜ ସହପାଠୀଙ୍କୁ ହତ୍ୟାକରିବାର କାରଣ ହେଉଛନ୍ତି । ଧନତାନ୍ତ୍ରିକ ପ୍ରତିଯୋଗିତାରେ ଲୋକେ ଅପରକୁ ଗୋଡ଼େଇ ଗୋଡ଼େଇ ହାଣୁଛନ୍ତି । ଏବେ ଗୋଟିଏ ସମ୍ବାଦ ଥିଲା । ଏଗାର ବର୍ଷର ଝିଅଟିଏ ଦୌଡୁଥିଲା ପଡ଼ିଶା ଘର ବାଡ଼ିକୁ । ପଡ଼ିଶା ଘର ବାଡ଼ିରେ ତାଙ୍କ ଛୋଟ ବାଛୁରୀଟି ବାଡ଼ ଭାଙ୍ଗି ପଶିଯାଇଛି । ପଡ଼ିଶାଙ୍କର ଫଳ ପରିବା ଚାଷ ହୋଇଛି । ବାଛୁରୀ ଖାଇଯିବ, ଅତଏବ ଝିଅଟି ଫାଟକଖୋଲି ପଡ଼ିଶା ଘର ବାଡ଼ି ଭିତରେ ପଶିଲା, ବାଛୁରୀକୁ ହୁରୁଡ଼େଇଲା । ସମୟ ଦିନ ୧୨ ଟା ହେବ । ଝିଅଟି ପୁଣି ସେ ଗାଁର ନୁହେଁ, ମାମୁଁ ଘର ଗାଁକୁ ଆସିଥାଏ । ବାଛୁରୀଟି ତା'ର ମାମୁଁ ଘରର ।

ଝିଅର ପାଟି ଶୁଣି ଘରୁ ବାହାରି ଆସିଲେ ମଧ୍ୟବୟସ୍କା ସ୍ତ୍ରୀ ଲୋକ ଓ ତାଙ୍କ ଅବିବାହିତ ତରୁଣୀ ଝିଅ । ''ଏୟ ଫାଟକ କାହିଁକି ଖୋଲିଲୁ, ବାହାର, ବାହାର, ବାଛୁରୀ କେମିତି ପଶିଲା, ତୁ ପୁରାଇଛୁ । ଯାଉଛୁ ନା ନାହିଁ ।'' ଝିଅଟିର ଉତ୍ତର ଶୁଣିବାକୁ ସେମାନଙ୍କର ଧୈର୍ଯ୍ୟ ନଥିଲା । ପ୍ରଥମେ ମାଆ ହାତରୁ ଅଧା ଇଟାଟିଏ ଛୁଟିଯାଇ ଝିଅଟିର ଗୋଡ଼ରେ ବାଜିଲା, ସେ ସେଇଠି ପଡ଼ିଗଲା । ତା'ପରେ ମାଆ ଓ ଝିଅ ମିଶି ବାଡ଼ିରେ ପଡ଼ିଥିବା ଇଟା ଖଣ୍ଡ ଗୋଟିଏ ପରେ ଗୋଟିଏ ଝିଅଟି ଉପରକୁ ବର୍ଷଣ କଲେ । ସେ ଯେତେ ଯାହା ଅନୁନୟ କରି କହିଲା, ସେ ଦୁହେଁ ତା' ପାଖକୁ ଆସିଲେ ନାହିଁ । କିଛି ଦୂରରେ ଠିଆ ହୋଇ ଇଟାଖଣ୍ଡ ବୃଷ୍ଟି କଲେ । ଝିଅଟି ଯେତେବେଳେ ପାଟିବନ୍ଦ କଲା ଓ ହଲଚଲ ବି ହେଲା ନାହିଁ- ପାଖ ଘର ଲୋକ ଧାଇଁ ଆସିଲେ । ସେତେବେଳକୁ ଝିଅଟି ମରିସାରିଥିଲା । ମୁଣ୍ଡରେ ଆଘାତ । ଏସବୁ କଥା ମାତ୍ର ୧୦/୧୨ ମିନିଟ୍ ମଧ୍ୟରେ ଘଟିଗଲା । ମଣିଷ ମନରେ କିଭଳି ଘୃଣା, ଜୁଗୁପ୍ସା, କ୍ରୋଧ ଓ ହିଂସା, ପ୍ରଚ୍ଛନ୍ନ ରହିଛି ଯେ, ମାମୁଲି ଘଟଣାଟିରେ ବି ତାହା ମାରାତ୍ମକ ରୂପ ଧାରଣ କରୁଛି । ଭାବିବାକୁ ବୁଝିବାକୁ ଅବସର ନାହିଁ । ଏହି ସଂବାଦ ସହିତ, କେରାଏ ସଜନା ଶାଗ ପାଇଁ, ୨/୪ଟା ପିଜୁଳି

ପାଇଁ, କାକୁଡ଼ି ଚୋରି ପାଇଁ ଲୋକେ ଶାସ୍ତି ସ୍ୱରୂପ ମୃତ୍ୟୁଦଣ୍ଡ ଦେଇଛନ୍ତି, ପ୍ରାଣରୁ ମାରି ପକାଇଛନ୍ତି, ଏହା ମଧ୍ୟ ନିର୍ଦ୍ଦିଷ୍ଟ ଭାବେ ଜାଣିବାକୁ ମିଳୁଛି ! କି ଧୈର୍ଯ୍ୟହୀନତା, ଅସୂୟା କି ବୀଭତ୍ସ ଜିଘାଂସା ! ହୁଏତ ଇତିହାସରେ ଏହାର ପଟାନ୍ତର ନ ଥିବ !

ତେବେ, ପ୍ରତିକାର କ'ଣ ? ଏତେ ମନ୍ଦିର, ମଠ, ଧର୍ମାନୁଷ୍ଠାନ, ପ୍ରବଚନ, ଏତେ ଗୁରୁବାକ୍ୟର ପ୍ରଭାବ କ'ଣ ନଷ୍ଟ ହୋଇଯାଉଛି ? ମୁଁ କେବଳ ମନ୍ଦ ଉଦାହରଣ ତକ ଏଠାରେ ଉପସ୍ଥାପନ କଲି । ଭଲ ଉଦାହରଣ ମଧ୍ୟ ବହୁତ ରହିଛି । ସାଧୁ, ସଚ୍ଚରିତ୍ର, ପରୋପକାରୀ ଲୋକେ ଏବେ ବି ଯେ ସୃଷ୍ଟିକୁ ବାସୁକୀ ଭଳି ମୁଣ୍ଡରେ ଟେକି ଧରିଛନ୍ତି । କିନ୍ତୁ ଏଇ ସାମାନ୍ୟ ଧୈର୍ଯ୍ୟ ସହିଷ୍ଣୁତାକୁ ମଣିଷ ମାତ୍ରେ ନିଜ ହୃଦୟରେ କର୍ଷଣ କରିବା ବିଧେୟ । ପରିବେଷ୍ଟନୀର ପବିତ୍ର ପ୍ରଭାବକୁ ମଣିଷ ନିଜ ବ୍ୟକ୍ତିଗତ ଜୀବନରେ ଯଦି ଗ୍ରହଣ ନ କରେ, ମଣିଷ ଆଡ଼କୁ ଆପଣା ହୃଦୟକୁ ଖୋଲି ନ ଧରେ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଏଇ ହିଂସା, ପ୍ରତିଶୋଧ, ଅଧୈର୍ଯ୍ୟ ଜିଘାଂସାର ନିରାକରଣ ଘଟିବ ନାହିଁ । ଦଳ ବାନ୍ଧି ସଂକୀର୍ତ୍ତନ କରିବା ଯେପରି ପ୍ରାସଙ୍ଗିକ, ତା'ସହିତ ନିଜ ହୃଦୟକୁ ସହାନୁଭୂତିରେ, ମାନବୀୟ କରୁଣାରେ ଦୀକ୍ଷିତ କରିବା ଅଧିକ ଜରୁରୀ । ଧର୍ମାନୁଚିନ୍ତାରେ ଆତ୍ମାକୁ ପରିଶୁଦ୍ଧ କରାଇବା ସବୁଠୁଁ ବଡ଼ ସାଧନା । ମୁଖ୍ୟତଃ ଏହା ଏକବିଂଶ ଶତାବ୍ଦୀର ମୁଖ୍ୟ ଆବଶ୍ୟକତା ।

ଯଦି ଏମିତି ହୁଅନ୍ତା, ଦିଅଁ ନିଜେ କହନ୍ତେ, ''ଦେଖ୍, ହୃଦୟକୁ ନିର୍ମଳ ନ କରି ମୋ ନାମ ଧରିବ ନାହିଁକି ମୋ ମନ୍ଦିରକୁ ପଶିବ ନାହିଁ ।'' ଠିକ୍ ଯେମିତି ଜୋତାପିନ୍ଧି ସୁ ସଜ୍ଜିତ ହୋଇଥିବା ରୁମ୍ କାର୍ପେଟ୍ ଉପରକୁ ଲୋକେ ଯାଆନ୍ତି ନାହିଁ । ତା ହେଲେ କଥା ଅଲଗା ହୁଅନ୍ତା । କିନ୍ତୁ ଦିଅଁଙ୍କ କ୍ରିୟାଶୀଳତା ଓ ଭକ୍ତଙ୍କ ଦର୍ଶନାଭିଳାଷ ଉଭୟ ଅଦୃଶ୍ୟ ଓ ନିରାକାର ହୋଇ ରହୁଥିଲାବେଳେ, ତା'ଘଟିବା ସମ୍ଭବ ନୁହଁ ।



# ଭେଜାଲ ଔଷଧ ଓ ଅକାଳ ମୃତ୍ୟୁ

''ଧ୍ରୁବ ରେ...ମୋ ଧ୍ରୁବ...''ମୁଣ୍ଡ ପିଟି କାନ୍ଦୁଥିଲା ତିଳନୂଆ'ଉ । କୋଠାଭିତର ଦେଇ ବାଡ଼ିପଟ କଇଁ ପୋଖରୀଯାଏ ଖେଦି ଯାଉଥିଲା, ବିଛେଇ ଯାଉଥିଲା ତା'କାନ୍ଦଣା- ଧ୍ରୁବ ମରିଗଲା । ୩୫ ବର୍ଷର ଦିବ୍ୟ ସୁନ୍ଦର ତରୁଣ, ବି.ଏ. ପାସ୍ କରି ଚାକିରୀ କରୁଥିଲା । ଯକ୍ଷ୍ମାରେ ଚାଲିଗଲା । ପଢୁଥିଲାବେଳେ ବହୁବାର ମୋ ପାଖକୁ ଆସିଛି- ବିଭାହୋଇଥିଲା ୫/୭ବର୍ଷ ହେବ । ୨ଟି ପିଲାର ବାପା । ସ୍ତ୍ରୀ ବି ତା'ର ବି.ଏ. ପାସ ।

କ'ଣ ହେଲା ସତରେ ତା'ର ? ଅବଶ୍ୟ ତାଙ୍କ ବିଶ୍ୱନାଥପୁର ଗାଁଟାର ବଡ଼ ଅସ୍ୱାସ୍ଥ୍ୟକର ପରିବେଶ । ଖୁନ୍ଦା ଖୁନ୍ଦି ଚାଷୀ ଗାଁ ଟିଏ । ବାଡ଼ିରେ ବିଲରେ ପ୍ରଚୁର ପରିବା ଚାଷ ସହିତ ଧାନ ତ ଘରେ ଘରେ । ବାଡ଼ି ପଛ ପଟେ ପୋଖରୀ । ସେଇଠି ଗାଧୁଆ, କୂଅ ପ୍ରାୟ ସମସ୍ତଙ୍କର ଥାଏ । କଟକ ସହରରୁ ବେଶୀ ଦୂର ନୁହେଁ ଗାଆଁଟି । ସ୍ୱାସ୍ଥ୍ୟ ପ୍ରତି ସଚେତନତା ଅଭାବରୁ ବୋଧହୁଏ ରୋଗ ହେଲାତ ମାଡ଼ି ଚାଲିଲା- ଯକ୍ଷ୍ମା ଘରେ ଘରେ ପଶେ । ଆଜିକୁ ୨୫ ବର୍ଷ ତଳେ ତିଳନୂଆ'ଉକୁ ଯକ୍ଷ୍ମା ହୋଇଥିଲା, ହସ୍‌ପିଟାଲରେ ରହିଲା ୪ ମାସ । ମାତ୍ର ଭଲ-ହେଲା ଯେ ହେଲା, ଆଜି ପର୍ଯ୍ୟନ୍ତ ସୁସ୍ଥ ଅଛି ।

କିନ୍ତୁ ୨୮/୨୯ ବର୍ଷ ବୟସରେ ବିଭାଘର ପରେ ତିଳ ନୂଆ'ଉର ଏକମାତ୍ର ପୁଅ ଧ୍ରୁବ ଯକ୍ଷ୍ମାରେ ପୀଡ଼ିତ ହେଲା । ସଂଗତି ସମ୍ପନ୍ନ ଚାଷୀଘର । ଧାନବସ୍ତା ଖୁନ୍ଦା ଖୁନ୍ଦି, କୋଠା ଚାରିବଖରା । ପରିବା ପଚି ସଢ଼ିଯାଏ । ପ୍ରକୃତରେ ଯେତେ ପରିବା ଚାଷହୁଏ, ବିକିଲେ ପଇସା ହୁଅନ୍ତା; କିନ୍ତୁ ବଣ୍ଟା ହୁଏ ଖିଆ ହୁଏ, ଯାହା ବା ବିକ୍ରି ହୁଏ ବେଶି ପଇସା ଉଠେ ନାହିଁ । ପ୍ରକୃତରେ ବିଖ୍ୟାତ୍ ଅର୍ଥନୀତିଜ୍ଞ ଅମର୍ତ୍ତ୍ୟସେନଙ୍କ କଥାନୁସାରେ ''ଭାରତର ଦାରିଦ୍ର୍ୟ ଉପୁଜିଥିବା ଶସ୍ୟର ନିଅଣ୍ଟ ପଣ ଯୋଗୁଁ ସୃଷ୍ଟି ହୋଇନାହିଁ । ଭାରତର ଦାରିଦ୍ର୍ୟ ତାର ଉପଜାତ ଶସ୍ୟର ଶୃଙ୍ଖଳା ଓ ସନ୍ତୁଳନ ଅଭାବ ଜନିତ ବଣ୍ଟନ ହେତୁ ହିଁ ସୃଷ୍ଟି ହୋଇଛି । ଖାଦ୍ୟାଭାବ ହୋଇଛି ଖାଦ୍ୟର ସୁଷମ ବଣ୍ଟନ ନ ହେବା କାରଣରୁ ।'' ସତକୁ ସତ ଧ୍ରୁବର ବାପା ବାବାଜି ଭାଇ ଟିକେ ଫୁଲାଫାଙ୍କିଆ । ବାପାମାଆଙ୍କର ଗୋଟିଏ ପୁଅ । ଖାଣ୍ଟି ବ୍ୟବସାୟୀ ମନୋବୃତ୍ତିର ନୁହନ୍ତି । ତିଳନୂଆ'ଉ ମଧ୍ୟ ଧନୀଘରର ଝିଅ । ପ୍ରାଚୁର୍ଯ୍ୟ ନ ଥିଲେ ବି ବାବାଜୀ ଭାଇଙ୍କ ଘରେ ଅଭାବ ନଥାଏ । ଅଥଚ, ତାଙ୍କର ଏକମାତ୍ର ପୁଅର ଅକାଳ

ମୃତ୍ୟୁହେଲା କାହିଁକି ? ପ୍ରଚୁର ଖାଦ୍ୟ ତାଙ୍କ ଘରେ, ଗାଈ ବଳଦ ଥାଆନ୍ତି । କ୍ଷୀର, ଦହି, ଛେନା, ପ୍ରଚୁର । ପରିବା, ମାଂସ ତରକାରୀ ତ କଂସାରେ ବଢ଼ାହୁଏ । ଧ୍ରୁବକୁ କାହିଁକି ଯକ୍ଷ୍ମା ଧରିଲା ? ପୁଣି ଆରୋଗ୍ୟ ବି ହେଲା ନାହିଁ ?

ବାବାଜୀ ଭାଇଙ୍କ ଘର ପ୍ରଶସ୍ତ, ପରିଚ୍ଛନ୍ନ । ଧ୍ରୁବର ବିଭାଘର ଅଳ୍ପଦିନ ପରେ ମୁଁ ଧ୍ରୁବକୁ ଦେଖିଥିଲି । କଙ୍କାଳ ସାର, ଶୁଣିଥିଲି ଯକ୍ଷ୍ମା ହୋଇଛି । ଘରକୁ ଡାକି କ'ଣ ଟିକେ ଖୁଆଇଥିଲି । ସେ କହିଲା, ‘‘କଟକ ମେଡ଼ିକାଲରୁ ରୀତିମତ ଔଷଧ ଖାଉଛି । ଗାଁ ପାଖ କଲେଜରେ ତାର ଚାକିରି । ପୁଣିଥରେ ଗାଁକୁ ଯିବା ଅବସରରେ ଧ୍ରୁବ ସହ ଦେଖା ହୋଇଥିଲା ।। ତା'ର ବୀଭତ୍ସ ଚେହେରା ଦେଖି ସ୍ତମ୍ଭୀଭୂତ ହେଲି । କହିଲା, ‘‘ରୋଗଟା ଛାଡୁନି, ପୁଣି ଧରିଲା । ଔଷଧ ନିୟମିତ ଖାଉଛି । ଗାଁରେ ଥିବା କୁଟୁମ୍ବଙ୍କ ଚିକିତ୍ସା ଦାୟିତ୍ୱ ପ୍ରାୟ ମୋ ଉପରେ ପଡ଼େ- କେବେ ମୁଁ ସ୍ୱେଚ୍ଛାରେ ନିଏ ବା କେବେ ବାଧ ବାଧକତାରେ । ହେଲେ, ଧ୍ରୁବ ତ ଚିକିତ୍ସା ହେଉଛି । ତା'ର ବିଶ୍ୱାସ ସେ ଭଲ ହୋଇଯିବ । ମୋ ମନକୁ ପାପ ଛୁଇଁଲା । ମନ କୋରି ହୋଇଗଲା । ସେ ଆଉ ବଞ୍ଚିବ ? ଯକ୍ଷ୍ମା ତ ଆଉ ଆଜିକାଲି ଅସାଧ୍ୟରୋଗ ହୋଇନାହିଁ, ତା'ହେଲେ ? ତଥାପି କଟକ ମେଡ଼ିକାଲ ତ ବହୁ ଲୋକଙ୍କୁ ସୁସ୍ଥ କରିଛି । ହୁଏତ ଧ୍ରୁବ ବି ଭଲ ହୋଇଯିବ ।

ମନେ ପଡ଼ିଲା, ଆଜିଠୁଁ ୩୫/୩୬ ବର୍ଷ ତଳେ ମୋ' ଶାଶୁଘର ଗାଁର ହରିଜନବସ୍ତିର ଦୁଇଜଣ ଲୋକ ବରାବର ଆମ କଟକ ଘରକୁ ଆସୁଥିଲେ । ପ୍ରଫେସର ଶତପଥୀ ସେମାନଙ୍କୁ କଟକ ମେଡ଼ିକାଲରୁ ଔଷଧ ବ୍ୟବସ୍ଥା କରାଇଥିଲେ । ଦୁହେଁ ଯକ୍ଷ୍ମାରୋଗୀ, ଅତି ଗରିବ । ତଥାପି ଭଲ ହୋଇଗଲେ ଓ ଏବେ ଯାଏଁ ବି ବଞ୍ଚି ରହିଛନ୍ତି । ପ୍ରାୟ ୫୦ ବର୍ଷ ତଳେ ମୋର ଜଣେ ଆତ୍ମୀୟ ଯକ୍ଷ୍ମା ଦ୍ୱାରା ଆକ୍ରାନ୍ତ ହୋଇ ତାମ୍ରମ୍ ସାନାଟୋରିୟମ୍‌ରେ ଚିକିତ୍ସିତ ହୋଇ ସୁସ୍ଥ ହେଲେ । ଏବେ ଯାଏଁ ସୁସ୍ଥ ଅଛନ୍ତି; କିନ୍ତୁ ଧ୍ରୁବର କ'ଣ ହେଲା ? ଶେଷ ଥର ଦେଖାହେବାର ଦୁଇ ମାସ ପରେ ଖବର ମିଳିଲା, ଧ୍ରୁବ ଭଲ ହେଲା ନାହିଁ, ଚାଲିଗଲା । ଆଜି, ଯେତେବେଳେ ଖବର କାଗଜରୁ ପଢ଼ିଲି- ପ୍ରାୟ ସବୁ ସମ୍ବାଦ ପତ୍ର ପରିବେଷଣ କରିଛନ୍ତି- ଭେଜାଲ ଯକ୍ଷ୍ମା ଔଷଧ କଥା । ଓଡ଼ିଶାରେ ଟି.ଏଫ୍.୦୦୪୩ ବ୍ୟାଚର ତିଆରି ହୋଇଥିବା ଔଷଧ ଭେଜାଲ । ସମସ୍ତ ସ୍ୱାସ୍ଥ୍ୟ କେନ୍ଦ୍ରରୁ ଏହି ଔଷଧ ଜବତ୍ କରାଯାଇଛି ଓ ପରୀକ୍ଷା କରାଯାଇ ପ୍ରମାଣିତ ହୋଇଛି । ମତେ ହଠାତ୍ ଧ୍ରୁବର ମୁହଁ ଦିଶିଗଲା । ତା'ର ଉଜ୍ଜ୍ୱଳ ତାରୁଣ୍ୟ, ସଂଭ୍ରମଭରା ହସ, ସୁନ୍ଦର ଚେହେରା । ଶୁଭିଗଲା ବି ତା'ମାଆର କରୁଣ କାନ୍ଦଣା-କୋଉଠି ସେ କାନ୍ଦଣା ଆଜିଯାଏ ପବନ ମୁହଁରେ ଝୁଲି ରହିଥିଲା କେଜାଣି, ବସୁଧାର କେଉଁ କୋଣରେ ଲାଖି ରହିଥିଲା ? ‘‘ଧ୍ରୁବରେ...ମୋଧ୍ରୁବ...’’ ବଦ୍ଧ ମୂଳ ବିଶ୍ୱାସ ହେଲା । ଭେଜାଲ ଯକ୍ଷ୍ମା ଔଷଧ କେବଳ ଏବେ ନୁହେଁ, ଆଗରୁ ମଧ୍ୟ ତିଆରି ଚାଲିଥିଲା, ବଣ୍ଟନ ମଧ୍ୟ ଚାଲିଥିଲା । ଓଡ଼ିଶାରେ ହେଉ ବା ଭାରତରେ ଯେଉଁଠି ହେଉ ଯେ ଭେଜାଲ ଔଷଧ ମାରାତ୍ମକ ରୋଗ ଭୋଗୁଥିବା

ଲୋକମାନଙ୍କ ଅକାଳ ମୃତ୍ୟୁର କାରଣ ହେଉଥିଲା ।

ଅତଏବ କିଏ ଅଭିଯୁକ୍ତ ହେବ ? ସରକାର ? ନାଁ ବ୍ୟବସାୟୀ ? ନା ମଣିଷର ବୀଭତ୍ସ ଅସୁର ପଣିଆ ? ଅସୁର ସାମ୍ନା ସାମ୍ନି ମାରେ, ଯେ ଯେ ଲୁଚି ଛପି ଛଳନାରେ ହତ୍ୟା କରୁଛି । ଜୀବନରକ୍ଷାକାରୀ ଔଷଧମାନଙ୍କୁ ଭେଜାଲ୍‌କରି ଭାରତ ତଥା ଓଡ଼ିଶାର ଦାରିଦ୍ର୍ୟ, ଖାଦ୍ୟାଭାବ ପୀଡିତ ଜନତାଙ୍କୁ ବଣ୍ଟାଯାଇ, ସେମାନଙ୍କୁ ପ୍ରତାରିତ କରି ମୃତ୍ୟୁମୁଖକୁ ଠେଲି ଦେବା ଭଳି କାର୍ଯ୍ୟ କରିବା ନିମିତ୍ତ କୌଣସି ଅସୁର ସମର୍ଥ ହେବ ନାହିଁ । ଏ ବର୍ଷ 'ସରସ୍ୱତୀ ପୁରସ୍କାର'ରେ ଭୂଷିତ ବିଶିଷ୍ଟ ଓଡ଼ିଆ ଲେଖକ ପଦ୍ମଶ୍ରୀ ମନୋଜ ଦାସ, ତାଙ୍କ ଉପନ୍ୟାସ 'ଅମୃତ ଫଳ' ର ପ୍ରାରମ୍ଭରେ ଏହିଭଳି ଏକ ତଥ୍ୟର ଅବତାରଣା କରିଛନ୍ତି । ଏଥିରେ ଭେଜାଲ ଔଷଧ ବ୍ୟବସାୟୀର ଏକମାତ୍ର ପୁଅ ଭେଜାଲ ଔଷଧର ଶିକାର ହୋଇ ମୃତ୍ୟୁବରଣ କରିଥିଲା । ବିଦେଶ ଫେରନ୍ତା ପୁଅଟି (ବ୍ୟବସାୟୀର) ହଠାତ୍ ରୋଗରେ ପଡ଼େ ଓ ନର୍ସିଂହୋମ୍‌ରେ ଚିକିତ୍ସିତ ହୁଏ । ବିଦେଶରୁ ଔଷଧ ଆସିବାକୁ ସମୟ ନଥାଏ । ଭେଜାଲ ଡିଷ୍ଟିଲ୍‌ଡ଼ ୱାଟର ଯୋଗୁଁ ତା'ର ମୃତ୍ୟୁ ହୁଏ । ସେ ଭେଜାଲ ଡିଷ୍ଟିଲ୍‌ଡ଼ ୱାଟର ବ୍ୟବସାୟୀଙ୍କ ନିଜ ପ୍ରତିଷ୍ଠାନରେ ତିଆରି । ମୃତ୍ୟୁ ପରେ ଏକଥା ପରୀକ୍ଷାରୁ ଜଣାପଡ଼େ । ଲେଖକ ଦୁଷ୍ଟ ଲୋକଙ୍କୁ ଏହାଦ୍ୱାରା ଏକ ଚେତାବନୀ ଦେଇଥିଲେ । ପ୍ରକୃତ ପକ୍ଷେ ଧ୍ରୁବମାନେ ହିଁ ପ୍ରତାରିତ ହୁଅନ୍ତି ସବୁକାଳେ । ଧ୍ରୁବପରି ଅସଂଖ୍ୟ ତରୁଣ ତରୁଣୀ, ଶିଶୁ, କିଶୋର ଭେଜାଲ ଔଷଧର ଶିକାର ହେଲେ, ନିରୋଗ ହେବାର ଆଶାରେ ରୋଗ ଚରିଗଲା । ଖାଇଗଲା ସେମାନଙ୍କୁ । କେତେ ତରୁଣୀ ବିଧବା ହେଲେ । ଶିଶୁ ହେଲେ ପିତୃ ମାତୃହରା, ବୟସ୍କ ବ୍ୟକ୍ତି ପୁତ୍ର କନ୍ୟାଙ୍କୁ ହରାଇ ହାହାକାର କଲେ । ପୃଥିବୀରେ ଦୁଃଖ ଶୋକର ଭାର ବଢ଼ିଗଲା । ରକ୍ଷକ ଭକ୍ଷକ ସାଜିଛି । ଛଳନାକରି ହତ୍ୟା କରିଛି । ଏହି ହତ୍ୟାକାରୀକୁ କେଉଁ ପ୍ରକାର ଦଣ୍ଡ ମିଳିବ, ପାଠକେ ? କେଉଁ ବିଚାରକଙ୍କ ଇଜ୍‌ଲାସରେ ଏମାନଙ୍କୁ ଦୋଷୀ ସାବ୍ୟସ୍ତ କରାଯାଇପାରିବ ? ଆପଣମାନେ ହିଁ ସ୍ଥିର କରି କହନ୍ତୁ ।



# ବିଦ୍ୟାନିକେତନର ଯନ୍ତ୍ର ମଣିଷ

ଜୀବନ ଆଉ ବିଦ୍ୟାଳୟ ହୋଇ ନାହିଁ। ବିଦ୍ୟାଳୟ ଜୀବନଠାରୁ ବହୁତ ଦୂରରେ। କେବଳ କଂକ୍ରିଟ୍, କେବଳ କମ୍ପ୍ୟୁଟର ବିଦ୍ୟାଳୟ।

ଏବେଦିନେ କବି କୁନ୍ତଳାକୁମାରୀଙ୍କ 'ଶେଫାଳିପ୍ରତି' ପଢ଼ାଇବାକୁ ହେଲା। ଏକଦା ଏଇ କବିତାଟି ରେଭେନ୍‌ସା କଲେଜରେ ବିଜ୍ଞାନ ପ୍ରଥମବର୍ଷ କ୍ଲାସରେ ପଢୁଥିବା ମୋ ସମେତ ଅଧିକାଂଶ ଛାତ୍ରଛାତ୍ରୀଙ୍କର ମୁଖସ୍ଥ ଥିଲା, ପ୍ରକୃତରେ ଆମେ 'ଶେଫାଳିପ୍ରତି' ପ୍ରେମରେ ପଡ଼ିଯାଇଥିଲୁ। ୧୯୬୧/୬୨ ମସିହା କଥା। ଆଜି, ପ୍ରାୟ ୩୮ ବର୍ଷ ପରେ ଆମ ରାଜ୍ୟର ଅଗ୍ରଗଣ୍ୟ ରମାଦେବୀ କଲେଜର ସେଇ ବିଜ୍ଞାନ ଶ୍ରେଣୀର ୧୦୦ ଜଣ ମେଧାବିନୀ ଛାତ୍ରୀଙ୍କୁ ମାତୃଭାଷା ପଢ଼ାଇଲାବେଳେ ଜାଣି ଆଶ୍ଚର୍ଯ୍ୟ ହେଲି ଯେ, ପିଲାମାନେ 'ଶେଫାଳିଫୁଲ' କ'ଣ ଜାଣିନାହାନ୍ତି, ଦେଖି ମଧ ନାହାନ୍ତି। ନାନାବିଧ ନାମରେ,ରୂପରେ ଫୁଲକୁ ଓ ଗଛକୁ ବର୍ଣ୍ଣନା କଲି- 'ଗଙ୍ଗଶିଉଳି', 'ସିଦ୍‌ଗଡ଼ାହର' ହିନ୍ଦୀରେ ତାକୁ କହନ୍ତି 'ହରସିଙ୍ଗାର'- ବାସ୍ନାଫୁଲ, ସନ୍ଧ୍ୟା ବେଳେ ଫୁଟେ, ସକାଳକୁ ଗଛମୂଳେ ଗଦାହୋଇଥାଏ। ଅଶିଣ, କାର୍ତ୍ତିକ ମାସରେ ବେଶି ଫୁଟେ। କମଳା ରଙ୍ଗର ଅଧ ଆଙ୍ଗୁଳେ ହେବ ଡେମ୍ଫ, ଧଳା ନରମ ଛୋଟ ଛୋଟ ପାଖୁଡ଼ା ୬ ବା ୭ଟି ଲେଖାଁ। ନା, କେହିହେଲେ ଜଣେ 'ଦେଖିଚି' ବୋଲି କହିଲା ନାହିଁ। ପିଲାଙ୍କ ଆଖିରେ ଅଜଣା ଅଜଣା ଭାବ। ମନ ଭାଙ୍ଗିପଡ଼ିଲା। ରାଜଧାନୀର ଝିଅମାନେ ଗଙ୍ଗଶିଉଳି ଫୁଲ ଦେଖିନାହାନ୍ତି ! ଅଥଚ ବାଣୀବିହାରରେ ପ୍ରତ୍ୟେକଙ୍କ ବଗିଚାରେ ସେ ଗଛ-ବାଡ଼ି ବଗିଚା ସହ ରାସ୍ତାଘାଟ ବି ମହକରେ ଫାଟିପଡ଼େ-ଏମାନେ କେହି ବି ଦେଖିଲେ ନାହିଁ କେମିତି ! ବାଣୀବିହାରର କେହି କେହି ଝିଅ ତ ପ୍ରତିକ୍ଲାସରେ ଥାଆନ୍ତି। ଦିଅଁ ପୂଜାବେଳେ ଫୁଲଗୁଡ଼ିକ ଗଛମୂଳରୁ ଗୋଟେଇ ଆଣିବାକୁ ହୁଏ। ଯାହାକିଛି ପବିତ୍ର, ସୁଗନ୍ଧିତ ଓ ସୁନ୍ଦର, ଆବେଗମୟ, ପୁଣି କ୍ଷଣିକ-ଏ ସବୁକିଛିର ପ୍ରତୀକ ହୋଇଯାଇପାରେ ଗଙ୍ଗଶିଉଳି। ପିଲାମାନେ ଦେଖିଥିବେ ନିଶ୍ଚେ, ମାତ୍ର ଧ୍ୟାନଦେଇ ନାହାନ୍ତି, ଲକ୍ଷ୍ୟକରି ନାହାନ୍ତି।

ପୁଣି ଥରେ ଏବେ, ଅଳ୍ପ ଦିନ ତଳେ ଓଡ଼ିଆ ସମ୍ମାନ କ୍ଲାସରେ ୩୦ ଜଣ ଝିଅଙ୍କୁ

ପଚାରିଲି- 'କିଂଶୁକ' 'ପଳାଶ' ନାମରେ ଫୁଲ ଅଛି ଜାଣିଛ କି ? ଦେଖି ନାହାନ୍ତି କି ଜାଣି ନାହାନ୍ତି କହିଲେ । ଫକୀରମୋହନଙ୍କ ଉପନ୍ୟାସର ଲେଖିବା-ଶୈଳୀ ବିଷୟରେ କହୁକହୁ ସଂସ୍କୃତ ପ୍ରବାଦଟିଏ କହୁଥିଲି- ''ରୂପ ଯୌବନ ସମ୍ପନ୍ନା ବିଶାଳ କୂଳ ସଂଭବା/ବିଦ୍ୟାହୀନା ନ ଶୋଭନ୍ତେ ନିର୍ଗନ୍ଧାଇବ କିଂଶୁକା''- ଆରେ, ଚୁପ୍ ଚାପ୍ ଶୁଣିଯାଉଚ, କିଂଶୁକ ଅର୍ଥ କ'ଣ ଜାଣ ? ଫୁଲଟିଏ-ଗୁଣହୀନ ରୂପଶୋଭାର ପ୍ରତୀକ ସେ । ଦେଖିବାକୁ ସୁନ୍ଦର ଅଥଚ ବାସ୍ନା ନାହିଁ । ପଳାଶ ଫୁଲ ଦେଖିନ-ଗାଢ଼ ମଞ୍ଜିଷ୍ଠାରଙ୍ଗ, କଳାରଙ୍ଗର ଅଂଶଟି ଡେମ୍ଫ ସହିତ ଲାଗିକିଥାଏ । ଗଛଟା ଗଣ୍ଠି ଗଣ୍ଠିକିଆ, ଜଙ୍ଗଲ ଜାଗାରେ ବେଶି ଥାଏ, ଫୁଲ ଫୁଟି ଭରିଗଲେ ପତ୍ର ରହେ ନାହିଁ । ଲାଲବର୍ଣ୍ଣ ପଳାଶ ବଣକୁ ଦେଖିବ, ଜଙ୍ଗଲରେ ନିଆଁ ଲାଗିଛି ବୋଲି କବିମାନେ ବର୍ଣ୍ଣନା କରିଛନ୍ତି । ନା, ଯେଉଁମାନେ ବାଡ଼ିର 'ଗଙ୍ଗଶିଉଳି' ବିଷୟରେ ଅଜ୍ଞ, ସେମାନେ 'ପଳାଶ'ର ପରିଚୟ ପାଇବେ କିପରି ? ମନେପଡ଼େ ସତ୍ୟଭାମାପୁର, ଫୁଲର ସୁଗନ୍ଧ ଓ ମଧୁରେ ଭରା ଉପବନ ('ମଲା ଜହ୍ନ'ର ଲେଖକ ଉପେନ୍ଦ୍ର କିଶୋର ଦାସ ଉତ୍କଳଗୌରବ ମଧୁସୂଦନଙ୍କ ପୁତୁରା) ବଗିଚା-ରକ୍ତବର୍ଣ୍ଣ ବିଶାଳ ପଳାଶଗଛ କେତୋଟି । ହାୟରେ ! ଯେ ପିଲାମାନେ କ'ଣ ସତରେ କିଛି ଦେଖିନାହାନ୍ତି ? ଚମ୍ପା, ବଉଳଫୁଲକୁ ବି ଭୁଲିଯିବେ ଦିନେ, ତା'ପରେ ଭୁଲିଯିବେ ମନ୍ଦାର ଆଉ ଟଗର ଫୁଲକୁ । ଶେଷକୁ ନେଉଳ, ଗୁଣ୍ଡୁଚି, କଜଳପାତିକୁ ବି ଚିହ୍ନିବେ ନାହିଁ ! ଦୁଃଖ ମନରେ ଦୁଇ ତିନି ଜଣ ଅଧ୍ୟାପିକା ବାନ୍ଧବୀଙ୍କୁ ମଧ କହିଲି । ପିଲାଙ୍କ ଉପରେ ବିରକ୍ତ ହେଲି ''କୂଳାଙ୍ଗାରୀ ସବୁ ଜନ୍ମ ହେଇଛ- ଖାଲି ବହି, ବହି, ନ ହେଲେ ଟି.ଭି. ତା ସାଙ୍ଗରେ ନିର୍ଦ୍ଦିଷ୍ଟ କେତେକ ପ୍ରଶ୍ନୋତ୍ତରର ଘୋଷାପାଠ । କୌଣସି  ଜିନିଷ ଉପରେ, ଟିକିନିଖି ଗଛବୃକ୍ଷ, ଜୀବଜନ୍ତୁ ଉପରେ ପଡ଼େ ନାହିଁ ତୁମମାନଙ୍କ ଆଖି, ନଜର୍ ନାହିଁ କୋଉଥିକୁ- ଯନ୍ତ୍ର ପାଲଟିଯିବ ତୁମେ ସବୁ । ନା ତୁମ ଭିତରେ ପ୍ରାଣ ଅଛି, ନା ତୁମେ ବହି ଓ ଟି.ଭି. ଭିତରେ ବୁଡ଼ି କେବେ ପ୍ରାଣକୁ ଚିହ୍ନିଚ, ଖୋଜିଛ ? ବହି ଆଉ ଟି.ଭି. ବାହାରେ ଯେ ଜୀବନର ବିପୁଳ ଶିକ୍ଷାୟତନ ରହିଛି, ସେଇ ସମ୍ପଦକୁ ଟିକେଭଲା ନିରୀକ୍ଷଣ କର । ହୃଦୟ ଥିବା ମଣିଷଟିଏ ହେବାକୁ ଚେଷ୍ଟାକର ।'' ଝିଅ ପିଲାଏ ଚୁପ୍ ଚାପ୍ । ମନ ଭିତରେ ପ୍ରତିବାଦ ଥିଲେ ବି ପ୍ରକାଶ କରନ୍ତି ନାହିଁ ସେମାନେ ସହଜରେ ।

ମନେ ପଡ଼ିଲେ ଗୋପି ମଉସା, ପ୍ରଖ୍ୟାତ ଲେଖକ ଦିବଂଗତ ଗୋପିନାଥ ମହାନ୍ତି । ତାଙ୍କ ଆତ୍ମଜୀବନୀ 'ସ୍ରୋତସ୍ୱିନୀ'ରେ ସେ ଲେଖିଛନ୍ତି, ମଧୁବାବୁଙ୍କ 'ବର୍ଣ୍ଣବୋଧ'ରୁ 'ଆହା, ଫୁଲ ଫୁଟି କି ସୁନ୍ଦର ବାସୁଅଛି' ପଢ଼ି ସେ ତାଙ୍କ ବୋଉଙ୍କ ସାଙ୍ଗେ ଲଗେଇଲେ ''ଆହାଫୁଲ' କି ଫୁଲ ବୋଉ, ମୋତେ ଦେଖେଇ ଦେଲୁ''- ୟା'ଭିତରେ ବହୁତ ବର୍ଷ ଗତ ହେଲାଣି । ପିଲାଙ୍କ ଜାଣିବା, ଶୁଣିବା, ଦେଖିବାର ଅନୁସନ୍ଧିତ୍ସା ନିଃଶେଷ ହେବାକୁ ବସିଲାଣି । ଥରେ ଥରେ ମୁଁ କ୍ଲାସରେ ପିଲାଙ୍କୁ କହେ, ''ଜୀବନକୁ ଦେଖି ଦେଖି, ଭୋଗି ଭୋଗି ବଞ୍ଚ, ନ ହେଲେ ଯେଉଁ ଅନ୍ଧବେଗରେ ଧାଇଁଚ ଏକ ମୁହାଁ, ଥରେ ଯଦି ଲକ୍ଷ୍ୟଚ୍ୟୁତ

ହୁଅ, ବଞ୍ଚିପାରିବ ନାହିଁ। ଲକ୍ଷ୍ୟଚ୍ୟୁତ ହେବା, ଅସଫଳ ହେବା ତ ନିଶ୍ଚୟ କାହା କାହା ଭାଗ୍ୟରେ ଘଟିବ। ସେତେବେଳେ ହାହାକାର କରିବ, ଉପାୟ ନଥିବ କିଛି। ଯନ୍ତ୍ରଠାରୁ ସହାନୁଭୂତି କେବେହେଁ ମିଳିବ ନାହିଁ।'' ସେମାନେ କେତେ ବୁଝନ୍ତି, ମୁଁ ଜାଣେନା।

ଆଜିକାଲି ବାପ ମାଆ ବି ଚାହୁଁଛନ୍ତି, ପିଲାଏ ଯନ୍ତ୍ର ପାଲଟନ୍ତୁ ପଛକେ, ବହୁତ ପଇସା କମାନ୍ତୁ। ଧନୀ ହୁଅନ୍ତୁ, କେବଳ ପ୍ରତିଟି ପରୀକ୍ଷାରେ ନିର୍ଦ୍ଦିଷ୍ଟ ଉତ୍ତର, ତଥ୍ୟଭିତ୍ତିକ ଉତ୍ତର ଘୋଷି, କମ୍ପ୍ୟୁଟର ଦ୍ୱାରା ପରୀକ୍ଷିତ ହୋଇ ପିଲା ବି ବ୍ୟସ୍ତ ହୋଇଗଲେଣି। ଯାହାହେଲେ ବି ସମସ୍ତେ ତ ଆଉ ସଫଳ ହୁଅନ୍ତି ନାହିଁ। ଅନେକ ସମୟରେ ସଫଳତା ବି ମାନବିକତାର ପରିପନ୍ଥୀ ହୋଇଯାଏ। ଏକବିଂଶ ଶତାବ୍ଦୀର ପ୍ରାରମ୍ଭକାଳରେ ପିଲାଏ ଭୁଲିଯାଉଛନ୍ତି ଯେ ବାହାରେ ବିଶାଳ ଦୁନିଆଁ ପଡ଼ିରହିଛି- ଉଦ୍ଭିଦ, ପଶୁପକ୍ଷୀ ଓ ମଣିଷଙ୍କର ବିସ୍ମୟକର ଆକର୍ଷଣୀୟ ଜଗତ, ଏହାପ୍ରତି ପିଲାମାନେ ଦୃଷ୍ଟିପାତ କରୁନାହାନ୍ତି। ଏହି ପିଲା, ତରୁଣ ତରୁଣୀ ଯେତେବେଳେ ଯନ୍ତ୍ର-ସମ୍ପୃକ୍ତି ଭିତରେ କ୍ଲାନ୍ତ ହୋଇପଡୁଛନ୍ତି, ଖୋଜୁଛନ୍ତି ଟିକେ ଭଲପାଇବା, ବୁଝୁନାହାନ୍ତି ଯେ, ମଣିଷ, ଉଦ୍ଭିଦ, ପଶୁପକ୍ଷୀଆଡ଼କୁ ହାତବଢ଼ାଇଲେ ହିଁ ଅପାର ସନ୍ତୋଷ ମିଳିଯିବ। ନବୁଝି ହା ହତାଶ ହେଉଛନ୍ତି, କିଏ ଆତତାୟୀ ସାଜୁଛି ତ କିଏ ଆତ୍ମହତ୍ୟା କରୁଛି। କିଏ ବା ମାନସିକ ଭାବେ ପୀଡ଼ିତ ହୋଇପଡୁଛି। ମଣିଷ ଯନ୍ତ୍ରର ସ୍ରଷ୍ଟା, ଯନ୍ତ୍ରର ଚାଳକ, ଯନ୍ତ୍ରର ନିରୀକ୍ଷକ, ମାତ୍ର ନିଜେ ଯନ୍ତ୍ରଟିଏ ନୁହେଁ। ତା'ର ଏକ ବିରାଟ ଅଂଶ ଯନ୍ତ୍ର ବାହାରେ ରହିଛି-ସେ ଅଂଶର ଯତ୍ନ ନ ନେଲେ ଦିନେ ନା ଦିନେ ମଣିଷ ହତାଶ ହୋଇପଡ଼ିବ। ଚାରିଦିଗ ତାକୁ ଅନ୍ଧାର ଦିଶିବ।

ଆଜିର ଯୁଗରେ ଯନ୍ତ୍ର ହିଁ ମାନବ ସଭ୍ୟତାର ବିକାଶର ପରିଚାୟକ। ମଣିଷକୁ ସର୍ବବିଧ ବ୍ୟାବହାରିକ ସମୃଦ୍ଧି ଦେବାକୁ ଯନ୍ତ୍ର ସମର୍ଥ। ମାତ୍ର ମଣିଷର ଗୋଟିଏ ଅନ୍ତର୍ଜୀବନ ଅଛି, ଆତ୍ମିକ ସତ୍ତା ରହିଛି, ତାହା ଯନ୍ତ୍ରଠାରୁ ସମ୍ପୂର୍ଣ୍ଣ ଅଲଗା। ନିଜ ଚାହିଦାମତେ ସେ ଯନ୍ତ୍ରକୁ ବ୍ୟବହାର କରେ, ସେ ଯନ୍ତ୍ରର ନିୟାମକ। ଯନ୍ତ୍ରଦ୍ୱାରା ପରିଚାଳିତ ନୁହେଁ। କିଶୋର କିଶୋରୀ, ତରୁଣ ତରୁଣୀ ଏକଥା ଭୁଲିଯିବା ଉଚିତ ନୁହେଁ ଯେ, ସେହି ଆତ୍ମିକଜୀବନ ହିଁ ମାନବିକତାର ପରିପୋଷଣ କରିଥାଏ। ତେଣୁ, ଜୀବନର ଜୟଯାତ୍ରାରେ ଯନ୍ତ୍ରକୁ ତା'ନିଜସ୍ଥାନରେ ରଖି, ତାର ଅଗ୍ରଭାଗରେ ମନୁଷ୍ୟତ୍ୱକୁ ପ୍ରତିଷ୍ଠା କରି ତରୁଣକୁଳକୁ ମହାସମାରୋହରେ ଆଗେଇ ଯିବାକୁ ହେବ।



# ଜଗତୀକରଣ ଓ ପରିପାର୍ଶ୍ୱ

ବିନ୍ଦୁ ଭିତରେ ସିନ୍ଧୁ ଦର୍ଶନ ଭାରତୀୟ ଚେତନାର ରହସ୍ୟଭୂମି । To see the universe in a grain of sand and heaven in a wild flower. To behold infinity in the palm of your hands and eternity in an hour- W-Blake.

ମୁହୂର୍ତ୍ତ ଭିତରେ ମହାକାଳର ଅନୁଭବ ପାଶ୍ଚାତ୍ୟ ସଂସ୍କୃତିରେ ମଧ୍ୟ ସ୍ୱୀକୃତ । ରହସ୍ୟାନୁଭବ, ସତ୍ୟାନୁଭବ ଓ ବାସ୍ତବାନୁଭବ ପରସ୍ପରର ପରିପୂରକ । ସତ୍ୟଠାରୁ ରହସ୍ୟ କମ୍ ବାସ୍ତବ ନୁହେଁ । ଯାହା ସଚରାଚର ଦୃଶ୍ୟ ହୁଏ, ତାହା ସତ୍ୟ, ଯାହା ଅଦୃଶ୍ୟ, ତାହା କ'ଣ ଅସତ୍ୟ ? ଚିନ୍ତାଶୀଳ ବ୍ୟକ୍ତିମାନେ ବହୁ ବିଚାର ସିଦ୍ଧାନ୍ତ ପରେ ବିନ୍ଦୁ ସିନ୍ଧୁ ଉଭୟକୁ ସମଗୁରୁତ୍ୱର ସହ ଗ୍ରହଣ କରିଛନ୍ତି ।

କିନ୍ତୁ ଏହି ନୂତନ ଶତାବ୍ଦୀରେ ମଣିଷ ଚେତନାରେ ସିନ୍ଧୁ ହିଁ ସ୍ଥିତିବାନ୍, ବିନ୍ଦୁର ସ୍ଥିତି ନଗଣ୍ୟ । ପ୍ରାୟ ସ୍ଥିତିହୀନ । ଜଗତୀକରଣରେ କୌଣସି ଗୋଟିଏ ଦେଶ ତା'ର ନିଜତ୍ୱ ହରାଇବା ବିଚିତ୍ର ନୁହେଁ । ସାରାଜଗତରେ ଗୋଟିଏ ନୀତି ଅନୁସୃତ । ଗୋଟିଏ ବାଣିଜ୍ୟିକ ବ୍ୟବସ୍ଥା ପ୍ରଚଳିତ । ଜଗତୀକରଣ କିନ୍ତୁ ସିନ୍ଧୁପରି ତା'ର ବ୍ୟାପକ ଜଳରାଶି ଭିତରେ ବିନ୍ଦୁକୁ ସ୍ୱୀକୃତି ଦେଇନାହିଁ । ସିନ୍ଧୁ ଭିତରେ ବିନ୍ଦୁ ତା'ର ସତ୍ତା ହରାଏ ସତ, ମାତ୍ର ସିନ୍ଧୁ ଯେ, ବିନ୍ଦୁର ସମଷ୍ଟିର ଏକ ସୁବୃହତ୍ ରୂପ- ଏ କଥା ଆଜିର ମଣିଷ ବିସ୍ମୃତ ହୋଇଛି । କୌଣସି ଅଧ୍ୟାତ୍ମ ଉପଲବ୍ଧି ବା ରହସ୍ୟାନୁଭବ ନିମିତ୍ତ ତା'ର ଚେତନା ନିସ୍ପୃହ । ଏହାର କାରଣ ତା'ର ଗଳଦଘର୍ମ ପ୍ରତିଯୋଗିତା, ଅନେକ କିଛି କରିଯିବାର ତୀବ୍ର ଇଚ୍ଛା । ବାହ୍ୟଜଗତକୁ ଅକ୍ତିଆର କରି ପକାଇବାର ଶପଥ ।

ଅଳ୍ପ କେତେଘଣ୍ଟା ସମୟ ମଧ୍ୟରେ ସେ ଆକାଶମାର୍ଗରେ ଉଡ଼ି ସାରା ବିଶ୍ୱ ପରିକ୍ରମା କରିଦେଉଛି, ମାତ୍ର ନିଜ ପରିପାର୍ଶ୍ୱକୁ ଲକ୍ଷ୍ୟ କରିବା ନିମିତ୍ତ ତା'ର ସମୟ ନାହିଁ । ଅନ୍ୟ ଅର୍ଥରେ ସ୍ପୃହା ନାହିଁ । ଆଜିର ବିଜ୍ଞାନୀମାନେ ଧନ, ଜ୍ଞାନ, କ୍ଷମତାରେ ବଳଶାଳୀ । ମାତ୍ର ନିଜକୁ ଯେ ମହାନ୍ ପ୍ରାକୃତିକତାର ଏକ ଅଂଶବିଶେଷ ବୋଲି ସେ ବିଚାର କରୁନାହିଁ । ପରିପାର୍ଶ୍ୱ ପ୍ରତି ଗୁରୁତ୍ୱ ନ ଦେଲା ବେଳକୁ ତାପରିପାର୍ଶ୍ୱର ବିକାଶ ଓ ସଂରକ୍ଷଣର ଆତ୍ମିକ

ଦରଦ ମଧ୍ୟ ତା’ଠାରେ ପରିସ୍ଫୁଟ ହେଉ ନାହିଁ । ସେ ଯଦି ତା’ ପାଇଁ ପରିପାର୍ଶ୍ୱ ଅପରିହାର୍ଯ୍ୟ ବୋଲି ବୁଝନ୍ତା, ସେଇ ନିମିତ୍ତ ସେ ନିଶ୍ଚୟ ସମୟ ସଂଚୟ କରନ୍ତା । ତା’ର ଆସ୍ପୃହା ବଳବତ୍ତର ରହିଲେ ସମୟ ଓ ମାନସିକତା ବିନିଯୋଗ କରିବା ନିମନ୍ତେ ସେ ତତ୍ପରତା ପ୍ରକାଶ କରନ୍ତା ।

ଆକାଶମାର୍ଗରେ ହିମାଳୟ, ମେଘ, ବରଫ, ଭୂତଳର ନଦନଦୀର ଚିତ୍ର ବଡ଼ ଚିତ୍ତାକର୍ଷକ । ସେ ସବୁ ଲଂଘି ଯାତ୍ରା କଲା ବେଳେ ମଣିଷ ପୃଥିବୀର ଏକ ପାର୍ଶ୍ୱରୁ ଅପରପାର୍ଶ୍ୱ ପର୍ଯ୍ୟନ୍ତ ଅବଲୀଳା କ୍ରମେ ଯାତାୟାତ କରୁଛି । ବିହଙ୍ଗମ ଦୃଷ୍ଟିରେ ମୁହୂର୍ତ୍ତକରେ ସେ କେତେ କ’ଣ ଦେଖିପାରୁଛି । ମାତ୍ର ସେଗୁଡ଼ିକୁ ଆପଣାର କରିବା ସମ୍ଭବ ହେଉନାହିଁ କଦାପି । ତା’ର ନିବିଡ଼ ପରିପାର୍ଶ୍ୱ ତା’ର ବାଡ଼ିବଗିଚା, ଦାଣ୍ଡ ଅଗଣାକୁ ନିରୀକ୍ଷଣର ସୁଯୋଗ ନାହିଁ । ଚାରି ପାଖର ପଶୁପକ୍ଷୀ, ତାଳଗଛର ବାୟାବସା ଟେଲିଫୋନ ତାର ଉପରେ କଜ୍ଜଳପାତି, ଆମ୍ବଡାଳରେ କୋଇଲିର ଗୀତ-ଏ ସବୁ ପ୍ରତି ତା’ର ଧ୍ୟାନ ନାହିଁ । ସେ ଚିହ୍ନୁ ନାହିଁ । ଆମ ଭାରତ ପରି ବିକାଶୋନ୍ମୁଖୀ ଦେଶରେ ମଣିଷ ପିଲା, କୁକୁର, ବିଲେଇ ପିଲା ସହିତ ଏକାକାର ହୋଇଛି । ଆଜିକୁ ୫୦/୧୦୦ବର୍ଷ ତଳେ ଗୃହସ୍ଥଟିଏ କୁକର ବିଲେଇଙ୍କ ପାଇଁ ଭାତ ମୁଠାଏ ରଖୁଥିଲା । ଭଦଭଦଳିଆ, ଶଙ୍ଖଚିଲ, ହଳଦୀବସନ୍ତଙ୍କୁ ଶୁଭପକ୍ଷୀ ମନେକରି ଦେଖିଲେ କୁରୁଳି ଉଠୁଥିଲା । ଆଜିର ମଣିଷ ଏସବୁ ପକ୍ଷୀଙ୍କୁ ଚିହ୍ନିପାରୁ ନାହିଁ । ଚିହ୍ନୁନାହିଁ ବଉଳଫୁଲ, କୁନ୍ଦଫୁଲକୁ । ଆଉଟା ସୁନାର ଝାଲର ଗୁଡ଼େଇ ଝଲମଲ ଜଳି ଉଠୁଥିବା ସୁନାରି ଗଛ ସହିତ ତା’ର ପରିଚୟ ନାହିଁ । ସେ କେବେ ହେଁ ନିଜକୁ ପଚାରୁନାହିଁ, ଏଇଟା କି ଗଛ, ଏବେ ଦିଲ୍ଲୀ ସହରରେ ଉଚ୍ଚଶିକ୍ଷିତ ଦିଲ୍ଲୀ ଲୋକଙ୍କ ସହ ଏକାଠି ଗାଡ଼ିରେ ଗଲାବେଳେ ସହର ସାରା ଭର୍ତ୍ତି ସୁନାରି ଫୁଲଗଛ ସମ୍ପର୍କରେ ମୁଁ ସେମାନଙ୍କୁ ପଚାରିଲି ।‘‘ ଏଇଟା କି ଗଛ ? ହିନ୍ଦୀରେ କ’ଣ କହନ୍ତି ?’’ ସେମାନେ ଭାବିହେଲେ, କହିଲେ, ‘‘ଏଇଟା କି ଗଛ ? କ’ଣ ୟା ନାଁ ତ-ଖିଆଲ ପଡୁନି ।’’

ବିଜ୍ଞାନ ପଢ଼ିଥିବା ଲୋକେ ଲାବୋରେଟୋରିରେ ଅଙ୍କୁରୋଦ୍‌ଗମ ଦେଖାଇବେ ସିନା, ମଞ୍ଜିରୁ ଗଜାଟିଏ ବାହାରିବା, ଆମ୍ବ ଟାକୁଆ କୁଆଁ ଦେବା କଥାକୁ କାହାରି ନଜର ନାହିଁ । ସଜନା ଫୁଲରୁ କଷି ଧରିବା, ଫୁଲ ଚୁଇଁ, ଚଢ଼େଇ ତାର ଛୁଞ୍ଚ ଭଳି ଥଣ୍ଟରେ ମହୁ ଖାଇବା କାହାର ଦୃଷ୍ଟିଗୋଚର ହେଉ ନାହିଁ । ବିଶାଳ, ବ୍ୟାପକ ଜୀବନ ଧାରାରେ ସାମିଲ ହେବାର ମୋହରେ ଗ୍ରସ୍ତ, ବ୍ୟାକୁଳ ମଣିଷ ତା’ର ସୂକ୍ଷ୍ମ ରସ-ସ୍ପୃହା, ରହସ୍ୟ ଦୃଷ୍ଟି ଓ ଆତ୍ମବୋଧକୁ ହରାଇ ବସିଲାଣି । ଈଶ୍ୱରଙ୍କୁ ନେଇ ପରୀକ୍ଷା ନିରୀକ୍ଷା କରୁଥିବା ମଣିଷଙ୍କ ସଂଖ୍ୟା ନିଶ୍ଚୟ କମ୍ ଏବଂ କାଳାନୁକ୍ରମିକତାରେ ସେ ସଂଖ୍ୟା ହୁଏତ ବୃଦ୍ଧି ପାଇପାରେ । ମାତ୍ର ମାଟି ମୁଠାଏକୁ ଚିହ୍ନିପାରିବା, ତା’ର ସ୍ୱାଦ ଗନ୍ଧ ବାରିବାର ମଣିଷ ସଂଖ୍ୟା ନୈରାଶ୍ୟଜନକ ଭାବେ ହ୍ରାସ ପାଉଛି । ପରିପାର୍ଶ୍ୱ ଆଉ ମଣିଷ ଜୀବନର ଅଂଶହର ହୋଇପାରୁ ନାହିଁ ।

ମଣିଷର ଦୃଷ୍ଟି ଊର୍ଦ୍ଧ୍ୱକୁ, ଦୂରକୁ । ନଜର ନାହିଁ, ଅତି ନିକଟରେ କେଉଁଠି ଗୁଣ୍ଡିଚି ମୂଷା ଲାଞ୍ଜ ଝାଡ଼ି ଡେଇଁ ଯାଉଛି, କେଉଁଠି ରାସ୍ତା କଡ଼ରେ କଇଁ ଫୁଲ ବାଟ ଅନେଇଁ ବସିଛି- ମଣିଷର ଖାତିର ନାହିଁ ସେଥିପ୍ରତି । ଜୀବନର ପରିସର ପରିବ୍ୟାପ୍ତ ହେଉଛି । ଲମ୍ବିଯାଉଛି, ଚତରେଇ ଯାଉଛି-ମାତ୍ର ହାତ ପାଆନ୍ତାର ସବୁ କିଛି ହୋଇଯାଉଛି ଅପାଂକ୍ତେୟ । ଆଜିର ମଣିଷ ଭିଡ଼ ଭିତରେ ନିଜତ୍ୱ ହରାଉଛି । କୋଳାହଳ ମଧ୍ୟରେ ଆପଣାର ଅନ୍ତଃସ୍ୱରକୁ ବାରିପାରୁ ନାହିଁ ।

ମଣିଷ ଓ ପରିପାର୍ଶ୍ୱ ଏଇ ଆଦିମ ପୃଥିବୀରେ ପରସ୍ପରକୁ ସହଯୋଗ କରିଆସିଛନ୍ତି । ଆଦିଯୁଗରୁ ପରିପାର୍ଶ୍ୱ ମଣିଷକୁ ଗଢ଼ିଛି, ମଣିଷ ପରିପାର୍ଶ୍ୱକୁ ନିଜର କରିଆସିଛି । କିନ୍ତୁ ଏଇ ଜଗତୀକରଣ ଓ ତା'ର ଅବହାଓ୍ୱାରେ ପରିପାର୍ଶ୍ୱ ଧୂମାଚ୍ଛନ୍ନ, ଅସ୍ପଷ୍ଟ ହୋଇଗଲାଣି । କ୍ରମଶଃ ମଣିଷ ଓ ପରିପାର୍ଶ୍ୱ କେହି କାହାକୁ ଚିହ୍ନିବେ ନାହିଁ । ଆପଣାର ପଣ ବ୍ୟାହତ ହେବ । ପରିପାର୍ଶ୍ୱର ଜୀବନ୍ତ ସତ୍ତା ଯନ୍ତ୍ର ପାଲଟି ଯିବ ଓ ମଣିଷର ନିଜସ୍ୱ ପଣ ଘୋର ଅଭାବବୋଧ ଓ ଏକାକୀତ୍ୱ ଭିତରେ ଘାରିହେବ । ଏହାର ସୂଚନା ସ୍ପଷ୍ଟ ହୋଇ ସାରିଲାଣି । ସେଇଥି ପାଇଁ ପରିବେଶବିତ୍, ପ୍ରାଣୀବିତ୍, ଉଦ୍ଭିଦବିତ୍, ମନସ୍ତତ୍ୱବିତ୍, ନୃତତ୍ତ୍ୱବିତ୍ ମାନଙ୍କର ଏତେ ଭାଳେଣି ପଡ଼ିଛି ଓ ବିବିଧ ଉପାୟ ମାଧ୍ୟମରେ ମଣିଷ ସହ ପରିପାର୍ଶ୍ୱର ସଂସକ୍ତିକୁ ନିବିଡ଼ କରାଇବା ନିମିତ୍ତ ଏମାନେ ଉପାୟମାନ ନିର୍ଦ୍ଧାରଣ କରୁଛନ୍ତି । ଜଗତୀକରଣର ଏ ଯୁଗରେ ଘୋର ବସ୍ତୁବାଦର ଆସ୍ଫାଳନରେ ଦିନେକ୍ଲାନ୍ତ ହୋଇ ପଡ଼ି ମଣିଷ ଯଦି ଘଡ଼ିଏ ପଦାକୁ ଚାହିଁଦବ-କୋଠରି ଭିତରର ରୁଦ୍ଧ ଅବହାଓ୍ୱା ଓ ମାନସିକତାକୁ ହାଲୁକା କରିବା ପାଇଁ ଝରକା ଖୋଲି ଅନେଇ ଦବ ବାହାରକୁ-ପରିପାର୍ଶ୍ୱ ଯଦି ଥିବ ସମ୍ପୂର୍ଣ୍ଣ ଅପରିଚିତ, ତେବେ ସେ ଆଶ୍ୱସ୍ତ ହେବ କେଉଁପରି ? ଜଗତୀକରଣକୁ ରୋକିହେବ ନାହିଁ । ଊର୍ଦ୍ଧ୍ୱଶ୍ୱାସ ପ୍ରତିଯୋଗିତାକୁ ବାତିଲ କରିହେବ ନାହିଁ-ବସ୍ତୁବାଦର ଗହ ଗହ କୁଆପଥର ବର୍ଷା ଚାରାଗଛକୁ ନଷ୍ଟ ଭ୍ରଷ୍ଟ କରିବ ହିଁ କରିବ । ତଥାପି ମଣିଷ ଖୋଜିବ- ଆହା ମୋର ପଦ୍ମପୋଖରୀ, ମୋର ରଙ୍ଗବେରଙ୍ଗର ପ୍ରଜାପତି, କି ସୁନ୍ଦର ମୋର ସେଇସବୁ ଅନ୍ଧାର ଚାଟିରେ ଜୁକଜୁକା ପୋକମାନେ ! ଜୁଳୁଜୁଳିଆ ପୋକ, ଆଉ ମୋର ଆମ୍ବ ବଉଳ, ମୋର ବଉଳକୋଳି - ନ ହେଲେ ମାନବପ୍ରାଣର ନିସ୍ତାର ନାହିଁ । ତା'ର ଆତ୍ମା ପାଇଁ ଆଶ୍ୱାସନା ନାହିଁ ।



# ଅଜନ୍ତାରେ ଦିନେ...

ସେ ଦିନ ସ୍ୱପ୍ନ ସତ ହେବାର ଦିନ । ଅଜନ୍ତା, ଏଲୋରା-ବୌଦ୍ଧ ଯୁଗର କୀର୍ତ୍ତି-ଘନ ପର୍ବତ ଘେରା ଅଞ୍ଚଳ । ସତେ କ'ଣ ମୁଁ ଦେଖିବି ବୋଲି କେବେ ଭାବିଥିଲି ? କିନ୍ତୁ ବେଳେବେଳେ ଘୁମେଇଁ ପଡ଼ିଥିବା ସ୍ୱପ୍ନ ସତ ହୋଇଯାଏ । ଅକସ୍ମାତ୍ ସେଦିନ ଆମେ ବାହାରିଲୁ ଅଜନ୍ତା ଅଭିମୁଖେ । ଔରଂଗାବାଦ ଜିଲ୍ଲାର ପର୍ବତଘେରା ଅଞ୍ଚଳରେ ଅଜନ୍ତା ଗୁମ୍ଫା ସମୂହ । ଆମେ ଦୀର୍ଘ ୩୬ ଘଣ୍ଟାର ଟ୍ରେନ୍ ଯାତ୍ରାପରେ ଦିନ ୧୦ଟାରେ ଜଲ୍‌ଗାଓଁରେ ପହଞ୍ଚିଲୁ । ଷ୍ଟେସନରେ ଆମକୁ ସମ୍ବର୍ଦ୍ଧନା ଜଣାଇବାକୁ ୟୁନିଭରସିଟିର ବହୁ କର୍ମକର୍ତ୍ତା । ଏକ ଜାତୀୟ ଆଲୋଚନାଚକ୍ର ୟୁ.ଜି.ସି. ଆୟୋଜନ କରିଥାଏ-ମୁଁ ସେଠାରେ ପ୍ରବନ୍ଧ ଉପସ୍ଥାପନ କରିବି । ମୋର ସକଳ ସଂଶୟ ପରାହତ ହୋଇଗଲା ସେଇଠି । ଏତେ ଆଦର, ଅଭ୍ୟର୍ଥନା ! ଆମକୁ (ମୁଁ ଓ ଅପର୍ଣ୍ଣା) ସେମାନେ କୋଜି କଟେଜ୍ (ମୋଟେଲ୍)କୁ ନେଇ ନେଇଗଲେ, ସାଥୀରେ ମାଡ୍ରାସରୁ ଆସିଥିବା, ଆମ ସହିତ ନବଜୀବନ ଏକ୍ସପ୍ରେସରୁ ଓହ୍ଲାଇଥିବା ଡକ୍ଟର ବାଲସୌରୀ ରେଡ୍‌ଡ଼ୀ ।

'ଷାଠୋତ୍ତରୀ ସାହିତ୍ୟ ମେଁ ଭାରତୀୟତା' ପ୍ରବନ୍ଧ ଲେଖି ମୁଁ ଉକ୍ତ ସେମିନାର୍‌ରେ ପାଠ କରିବି, ଓଡ଼ିଆ ସାହିତ୍ୟ ସଂପର୍କରେ ମୋତେ ଦାୟିତ୍ୱ ଦିଆଯାଇଥାଏ । ଏମିତିରେ ଓଡ଼ିଶା ବାହାରେ ମୋର ସେମିତି ନାଆଁ ନାହିଁ, ମୋତେ ନିମନ୍ତ୍ରଣ ଆସେ ନାହିଁ-ମୋ ଜାଗାରେ ଆଉ କାହାକୁ ନିମନ୍ତ୍ରଣ କରିନିଅନ୍ତି । ବହୁ ପୂର୍ବରୁ ଓଡ଼ିଶାରୁ ଭାରତର ବିଭିନ୍ନ ସମ୍ମିଳନୀକୁ ପ୍ରତିନିଧିଭାବେ ମୁଁ ଯାଉଥିଲି, ବିଶେଷ କରି କବି ଭାବରେ । ଯା' ଭିତରେ ସମୟ ବଦଳିଛି । ଉପଭୋକ୍ତା ସମାଜର ଛନ୍ଦ ସହତ ମୁଁ ପାଦ ମିଳାଇ ପାରିନାହିଁ । ତେଣୁ ଏ ଯେଉଁ ନିମନ୍ତ୍ରଣ, ପୁଣି ଏତେଦୂର, ଦିଲ୍ଲୀ ନୁହେଁ କି କଲିକତା ନୁହେଁ । ବାଟ ହିଁ ଜଣାନାହିଁ । ତେବେ, ଥରେ ଯାଇଥାଏ ଦ୍ୱାରକା, ମନେପଡୁଥାଏ ସେ ବାଟରେ ଭୁଷାବଲ୍‌ପରେ ଜଲଗାଓଁ । ମହାରାଷ୍ଟ୍ର ରାଜ୍ୟ । ଯିବାବୋଧେ ସମ୍ଭବ ହବ ନାହିଁ, ତଥାପି ସମ୍ମତି ଜଣାଇଥିଲି ।

ଇଷ୍ଟକୋଷ୍ଟରୁ ନବଜୀବନ ଏକ୍ସପ୍ରେସ । ସେଠାରୁ ଆୟୋଜକ ବାରବାର ଲେଖି ଓ ଫୋନ୍ କରି ମୋତେ ଯିବାପାଇଁ ଉତ୍ସାହିତ କରୁଥାନ୍ତି । ମୋର ସ୍ୱାମୀଙ୍କର ସେତିକିବେଳକୁ

ଦିଲ୍ଲୀରେ ୟୁ.ଜି.ସିର ଗୋଟିଏ ଗୁରୁତ୍ୱ ପୂର୍ଣ୍ଣ ମିଟିଂ ଥାଏ । ନିଜକୁ ପ୍ରସ୍ତୁତ କଲି- ଏଥର ମୁଁ ନିଜେ ଯାଏଁ- ନିର୍ଭରଶୀଳତା ସବୁବେଳେ ଭଲ ନୁହେଁ । ଅତ୍ୟଧିକ ନିର୍ଭରଶୀଳତା ଦାସତ୍ୱ ଆଣିଦେଇପାରେ । ମୋର ଦୁଇଟି ରୋଗ ଶରୀର ସହ ଅବିଚ୍ଛେଦ୍ୟ- ଗୋଟିଏ ଥଣ୍ଡା ଓ ଅନ୍ୟଟି ପେଟ ରୋଗ । ଔଷଧପତ୍ର ଧରି ବାହାରିଥାଏ । ଯେ ପେଟ ରୋଗ ପୁଣି ମାନସିକ ଅସ୍ଥିରତା ହେଲେ ନିଶ୍ଚିତ ବାହାରି ପଡ଼େ । ବାଟସାରା ଅପର୍ଣ୍ଣା ଗୀତଗାଏ, ମୁଁ ଶୁଣେ । ମୋର ପ୍ରବନ୍ଧର ହିନ୍ଦୀ ଅନୁବାଦଟି ବି ଥରେ ଅଧେ ପଢ଼େ । ଭୟ ଥାଏ କାଳେ ମୋ ହିନ୍ଦୀ ଓଡ଼ିଆ ଭଳି ଶୁଭିଯିବ- ହାସ୍ୟାସ୍ପଦ ହେବି । ବାରବର୍ଷର ତପସ୍ୟା, ଶୁଖୁଆ ଝୋଳରେ ଯିବ । ପ୍ରବନ୍ଧଟି କେହି ବୁଝିବେ ନାହିଁ । ଇଷ୍ଟକୋଷ୍ଟ ଆମକୁ ବିଜୟୱାଡ଼ାରେ ପହଞ୍ଚାଇଦେଲା । ନବଜୀବନ ଏକ୍ସପ୍ରେସ ଠିକ୍ ପ୍ଲାଟଫର୍ମକୁ ପଶିଆସିଲା ଘ୪।୩୦ ବେଳକୁ । ଗାଈଗୋଠରୁ ଫେରି ଆସିଲାବେଳକୁ ତୃଷାର୍ତ୍ତ ବାଛୁରୀ ଯେପରି ତା'ନିକଟକୁ ଧାଇଁଯାଏ, ସେହିପରି ଆମର ବଗିଟି ( ଇଷ୍ଟକୋଷ୍ଟ ଏକ୍ସପ୍ରେସ୍‌ରୁ ଅଲଗା ହୋଇଥିବା) ତତ୍‌କ୍ଷଣାତ୍ ନବଜୀବନ ଏକ୍ସପ୍ରେସ ଆଡ଼କୁ ଆଗେଇଗଲା । ପ୍ରଥମ ରାତିଟି ଶୋଇଥିଲେ ବି ଦ୍ୱିତୀୟ ରାତିଟି ଶୋଇପାରିଲି ନାହିଁ । ନିଦ ନ ହେଲେ ସବୁତକ ଦୁର୍ଯୋଗ, ଅନିଭୋଗ ମନେପଡ଼େ । ତାକୁ ଏଡ଼େଇବାର ଉପାୟ ନାହିଁ । ସକାଳ ଘ୮।୩୦ ବେଳକୁ ଭୁଷାବଲ୍ ଭିତରେ ଗାଡ଼ି ଚାଲିଥାଏ । ବର୍ଷା ଧୁଆ ସକାଳ ଖରାରେ କଦଳୀ କିଆରୀ ସବୁ ଝଲ୍‌ସୁ ଥାଆନ୍ତି । ଛୋଟ ଛୋଟ କଦଳୀ ପୁଆର କିଆରୀ ହୃଷ୍ଟପୁଷ୍ଟ ଉଜ୍ଜଳ ହେଇ ପତ୍ରମେଲି ଦୋହଲୁଥାନ୍ତି- ସତେକି ତିନି ବର୍ଷର ଛୋଟ ଝିଅ ଆନ୍ନା ତା'ଆଈକୁ ଦେଖି ହାତ ଟେକି ନାଚୁଛି । ଟିକେ ଶଙ୍କା ଥିଲା ମନରେ ଏତେ ଗୁଡ଼ାଏ ଦୂର-ପୁଣି ବର୍ଷାଦିନ- ନୂଆଜାଗା । ଜଲ୍‌ଗାଓଁଠାରୁ ଅଜନ୍ତା ୬୦ କି.ମି. ଦୂର-ଡଃ ରେଡ଼୍‌ଡ଼ୀ କହିଲେ, ଓ ଯିବାର ପ୍ରସ୍ତାବ ଦେଲେ । ପରଦିନ ସକାଳୁ ସେମିନାର । ସେଦିନ ସାରା ବିଭିନ୍ନ ଭାଷାର ପ୍ରତିନିଧିମାନେ ଆସିବେ । ଆମ ରହିବା ସ୍ଥାନରୁ ସଭାସ୍ଥଳ ପୁଣି ୧୫ କି.ମି. ଦୂର । ତେଣୁ ଆମେ ସ୍ଥିର କଲୁ ୫ ଜଣ ଯିବୁ ଓ ଗୋଟେ ଟ୍ୟାକ୍ସି କରି ଯିବୁ । ଗାଧୁଆ ଓ ଚା'ପରେ ବାହାରିଲୁ ମଧ୍ୟାହ୍ନଭୋଜନ ନନେଇ ଯିବାର ସ୍ଥିର ହେଲା । କାରଣ, ବିଳମ୍ବ ହେବ ଓ ସନ୍ଧ୍ୟା ହେଲେ ଅଜନ୍ତା ଦେଖି ହେବ ନାହିଁ । ଟ୍ୟାକ୍ସିର ପଛସିଟ୍‌ରେ ମୁଁ ଅପର୍ଣ୍ଣା, ରେଡ଼୍‌ଡ଼ୀ ଓ ସାମ୍ନା ସିଟ୍‌ରେ ଭୋପାଳର ତ୍ରିବେଦୀଜୀ ଓ ହରିୟାନାର ଭଟ୍ଟନାଗରଜୀ । ରାସ୍ତା ସାରା ଓଡ଼ିଆ କଥା, ଓଡ଼ିଆ ସାହିତ୍ୟ, ହିନ୍ଦୀ ତଥା ତେଲେଗୁ ସାହିତ୍ୟ କଥା ପଡ଼ିଲା । ରାସ୍ତା ଦୁଇପାଖର ଅନବଦ୍ୟ ଭୂଚିତ୍ର । କୃଷ୍ଣକାର୍ପାସ ମୃତ୍ତିକାର ସିଆରରେ ସଜ୍ଜିତଥାଏ ଶସ୍ୟରାଜି । ବଡ଼ ମନୋରମ ସେ ଯାତ୍ରାର ପ୍ରାକୃତିକତା । ଡଃ-ରେଡ୍ଡୀ ମୋର ପୂର୍ବ ପରିଚିତ ଥିଲେ । ୧୯୯୩ରେ ଭାରତୀୟ ଭାଷା ପରିଷଦର ନିର୍ଦ୍ଦେଶକ ଥାଆନ୍ତି ସେ କଲିକତାଠାରେ । ମୁଁ ସେଠାକୁ ନିମନ୍ତ୍ରିତ ହୋଇ ଯାଇଥାଏ-ଆଧୁନିକ ଓଡ଼ିଆକବିତା ସଂପର୍କରେ କିଛି କହିବାକୁ । ସେଠାରେ ଆଳାପ ହୋଇଥିଲା । ଅନ୍ୟ ଦୁଇଜଣ ଯାତ୍ରୀ ମଧ ଥିଲେ ଅତ୍ୟନ୍ତ ସ୍ନେହପ୍ରବଣ ।

ଆମେ ଅଜନ୍ତାରେ ପହଞ୍ଚିଲା ବେଳକୁ ଦିନ ସାଢ଼େ ଗୋଟାଏ। ପର୍ବତର ପାଦ ଦେଶରେ ଗୋଟିଏ ମାତ୍ର ରେଷ୍ଟୁରାଣ୍ଟ। ଖୁବ୍ ପରିଚ୍ଛନ୍ନ, ଖାଦ୍ୟ ବି ସ୍ୱାଦିଷ୍ଟ। ଅବଶ୍ୟ ଦାମ୍ ଖୁବ୍ ଚମା। ମାଇଲ ମାଇଲ ବ୍ୟାପି ଶସ୍ୟକ୍ଷେତ୍ର ଓ ବଣପାହାଡ଼ ଭିତରେ ଏ ପାର୍ବତ୍ୟ ଗୁମ୍ଫା, ବସ୍ ଆସେ କମ୍ ସଂଖ୍ୟକ, କେବଳ ପରିଦର୍ଶକମାନଙ୍କୁ ନେଇ।

ଅନେକଗୁଡ଼ିଏ ପାହାଚ ଚଢ଼ିବାକୁ ପଡ଼ିଲା- ଆମ ଧଉଳି ପାହାଡ଼ର ଆଠଦଶ ଗୁଣ ହେବ। ପୁଣି ଟିକେଟ୍ କଲୁ। ଶୁକ୍ରବାର ଦିନଟି ବିନା ଟିକେଟ୍‌ରେ ଦେଖିବାକୁ ମିଳେ। ଦର୍ଶନୀୟ ୨୨ଗୋଟି ଗୁମ୍ଫା ରହିଛି। ତ୍ରିବେଦୀଜୀ ଟିକେଟ ଆଣିଲେ। ସୁଉଚ୍ଚ, ବିରାଟ ପାହାଡ଼ କଟାଯାଇ ଗୁମ୍ଫା ହୋଇଛି, ଏସବୁ ବିରାଟ ଗୁମ୍ଫା ଭିତରେ ଅନ୍ୟୁନ ୮/୧୦ଟି ଲେଖାଁ ଛୋଟ ଗୁମ୍ଫା- ଯେଉଁଠି ବୌଦ୍ଧ ସନ୍ନ୍ୟାସୀମାନେ ରହୁଥିଲେ। ଏହାର କାନ୍ଥ ଓ ଛାତରେ ଅସଂଖ୍ୟ ଚିତ୍ର- ପଶୁପକ୍ଷୀଙ୍କର, ଫୁଲର, ମୁଖ୍ୟତଃ ପଦ୍ମଫୁଲର। ବିଭିନ୍ନ ପତ୍ରରୁ ତିଆରି ରଙ୍ଗରେ ଏଗୁଡ଼ିକ ରଞ୍ଜିତ- ଯଦିଓ ସମୟର ଦାରୁଣ ପ୍ରଭାବରେ କେତେକାଂଶରେ ରଙ୍ଗ ଲିଭିଆସିଛି। ଗୁମ୍ଫା ଭିତରେ ଆଲୋକ ବ୍ୟବସ୍ଥା ଅଛି। ଏହି ଆଲୋକର ବ୍ୟୟ ପାଇଁ ଟିକେଟ୍ କରିବାକୁ ହୁଏ। ପର୍ବତମାଳାଟି ପ୍ରାୟ ଆୟତକ୍ଷେତ୍ରପରି ହୋଇ ଗୋଟିଏ ପାଖ ଭିତରକୁ ପଶିଆସିଛି। ମଝି ଉପତ୍ୟକାରେ ଏକ ବିରାଟ ଝରଣାର କୁଳୁକୁଳୁ ନାଦ। ଏହାର ପ୍ରାକୃତିକତାର ସୁରକ୍ଷା ନିମିତ୍ତ ଯତ୍ନ କରାଯାଉଛି। ଏହି ପର୍ବତ ଗୁଡ଼ିକ କଟାଯାଇ ବିଭିନ୍ନ ଉଚ୍ଚତାରେ ଏତେ ଗୁଡ଼ିଏ ଗୁମ୍ଫା ତିଆରି ହୋଇଛି। ପ୍ରବେଶ ଦ୍ୱାର- ସୁଉଚ୍ଚ ତୋରଣ, ବିଶାଳ ଖମ୍ବ ସବୁ ପର୍ବତର ଛାତ ଅଂଶକୁ ଟେକି ଧରିଛି। ବୁଦ୍ଧଦେବଙ୍କର ବିଭିନ୍ନ ମୁଦ୍ରାର ମୂର୍ତ୍ତି- ବିଭିନ୍ନ ଆକାରର। ବୁଦ୍ଧଙ୍କ ଜନ୍ମର ଚିତ୍ର- ସୁଜାତାଙ୍କ ସହ ସାକ୍ଷାତ ପୁଣି ମହାପରିନିର୍ବାଣର ମୂର୍ତ୍ତି। ଆରମ୍ଭରୁ ଶେଷଯାଏ ଦର୍ଶନୀୟ ଆଉ ଉପଭୋଗ୍ୟ। ତେବେ ଏ ଗୁମ୍ଫା ଗୁଡ଼ିକର ଭିତରପଟର ଫଟୋ ଉତ୍ତୋଳନ ନିଷିଦ୍ଧ।

୧୮୧୯ ମସିହାରେ ଶିକାର ଖୋଜୁ ଖୋଜୁ ଇଂରେଜ ପ୍ରଶାସକ ଜନ୍ ସ୍ମିଥ୍, ପହଞ୍ଚନ୍ତି ଔରଙ୍ଗାବାଦର ଏଇ ପର୍ବତଘେରା ଜଙ୍ଗଲରେ। ଶିକାର ଉଦ୍ଦେଶ୍ୟରେ ବୁଲୁ ବୁଲୁ ବୃକ୍ଷଲତା, ଗୁଳ୍ମ ଆଚ୍ଛାଦିତ ଏଇ ସୁଉଚ୍ଚ ପର୍ବତଶ୍ରେଣୀରେ ପହଞ୍ଚନ୍ତି। ଆବିଷ୍କାର କରନ୍ତି ଏହାର ସ୍ଥାପତ୍ୟ। ହାଇଦ୍ରାବାଦର ନିଜାମ ଏହି ବୌଦ୍ଧ ଯୁଗର ଅକ୍ଷୟକୀର୍ତ୍ତିକୁ ଲୋକଲୋଚନକୁ ଆଣନ୍ତି। ୧୮୨୩ ସାଲରେ ଅଜନ୍ତା ସଂପୂର୍ଣ୍ଣ ଲୋକଲୋଚନକୁ ଆସେ। ବୁଦ୍ଧଙ୍କ ସହ ନରନାରୀ ପଶୁପକ୍ଷୀଙ୍କ ମୂର୍ତ୍ତି ଏଠାରେ ଖୋଦିତ ହୋଇଛି। ଏଠାରେ ଅଂସଖ୍ୟ ବୁଦ୍ଧମୂର୍ତ୍ତି। ଏହି ମୂର୍ତ୍ତିମାନଙ୍କର ମୁଦ୍ରା ମୁଖ୍ୟତଃ ଚାରି ପ୍ରକାର। ଗୋଟିଏ ପ୍ରବଚନର ମୁଦ୍ରା, ଅନ୍ୟଟି ଆଶ୍ୱାସନାର ବରଦହସ୍ତ, ଅନ୍ୟ ଗୋଟିଏ ଧ୍ୟାନମଗ୍ନ ମୁଦ୍ରା ଓ ୪ର୍ଥଟି ଭୂମି ସ୍ପର୍ଶର ମୁଦ୍ରା। ଭୂମିସ୍ପର୍ଶ ମୁଦ୍ରାରେ ବୁଦ୍ଧ ବାମହାତରେ କାନ୍ଧର ଉତ୍ତରୀୟ ସଂଭାଳି ଡାହାଣ ହାତର ପାପୁଲିକୁ ନିମ୍ନରେ ଭୂମିଆଡ଼କୁ ଲମ୍ବାଇ ଥାଆନ୍ତି- ଠିଆ ହେବା ଅବସ୍ଥାର ମୁଦ୍ରା। ଧ୍ୟାନର ମୁଦ୍ରାଟି ଉପବେଶନର ମୁଦ୍ରା। ସବୁଠାରୁ ଦୀର୍ଘତମ ବିଶାଳ ଶାୟିତ ମୂର୍ତ୍ତି, ବୁଦ୍ଧଙ୍କର ମହାପ୍ରୟାଣର

ମୂର୍ତ୍ତି- ନିକଟରେ ଶୋକଗ୍ରସ୍ତ ନରନାରୀ ଓ ଶିଷ୍ୟବୃନ୍ଦ । ଗୋଟିଏ ଗୁମ୍ଫାକୁ ନିରୀକ୍ଷଣ କରି ଦେଖିବା ନିମିତ୍ତ ଗୋଟିଏ ମାସ ସମୟ ଦରକାର । ଆମ ହାତରେ ୨/୩ ଘଣ୍ଟାର ସମୟ ।

ଏହି ଗୁମ୍ଫା ଗୁଡ଼ିକ ମଧ୍ୟରୁ କେତୋଟିରେ ବୁଦ୍ଧଙ୍କ ମୂର୍ତ୍ତି ପୂଜିତ ହେଉଥିଲାବେଳେ ଆଉ କେତୋଟିରେ ସ୍ତୁପ ପୂଜିତ ହେଉଥିଲା । ବୌଦ୍ଧ ଧର୍ମ ଦୁଇ ଭାଗରେ ବିଭକ୍ତ ହେଲା । ପରେ ହୀନଯାନୀମାନେ ସ୍ତୁପ ପୂଜା କଲାବେଳେ ମହାଯାନୀ ବୁଦ୍ଧ ମୂର୍ତ୍ତିକୁ ପୂଜା କରୁଥିଲେ । ସ୍ତୁପ ଗୁଡ଼ିକ ମୂର୍ତ୍ତିଠାରୁ ପୁରାତନ, ଖ୍ରୀଷ୍ଟପୂର୍ବ ୨୨୦୦ରେ ସ୍ତୁପପୂଜା ଆରମ୍ଭ ହେଲା ଓ ଖ୍ରୀ.ପୂ.୧୫୦୦ରେ ଚାଲିଲା ମୂର୍ତ୍ତିପୂଜା । ୨ଟି ଗୁମ୍ଫାରେ ଏହି ହୀନଯାନ ଓ ମହାଯାନ ଗୋଷ୍ଠୀର ସମନ୍ୱୟ ସାଧନ ବି ଦେଖିବାକୁ ମିଳିଲା । ପୂଜା ମଣ୍ଡପରେ ଏଠାରେ, ସ୍ତୁପତଳେ ବୁଦ୍ଧଙ୍କ ମୂର୍ତ୍ତିଆସୀନ ।

ଏହି ଅଜନ୍ତାଗୁମ୍ଫାର ବୌଦ୍ଧକୀର୍ତ୍ତି ଭାରତର ଅନ୍ୟାନ୍ୟ ବୌଦ୍ଧକୀର୍ତ୍ତି ମଧ୍ୟରେ ପ୍ରାଚୀନତମ । ସାଞ୍ଚି, ସାରନାଥ ଓ ବୁଦ୍ଧ ଗୟାର ବୌଦ୍ଧକୀର୍ତ୍ତି ଅଜନ୍ତାର ପରବର୍ତ୍ତୀ ସ୍ଥାପତ୍ୟ । ଏହି ପର୍ବତ ଶ୍ରେଣୀର ମଝିରେ ମଝିରେ ଝରଣା- ସୁଉଚ୍ଚ ସ୍ଥାନରେ ଜଳଭଣ୍ଡାର ଓ ସ୍ଥାନେ ସ୍ଥାନେ ଗୁପ୍ତ ସୁଡ଼ଙ୍ଗ ଦ୍ୱାର ନିମ୍ନକୁ ଲମ୍ବିଛି । ବିଦେଶୀ ଓ ଦେଶୀ ପର୍ଯ୍ୟଟକଙ୍କ ଗହଣରେ ଆମେ ସେଦିନ ଅଜନ୍ତା ଭିତରେ ନିଜକୁ ଭୁଲିଯାଇ ଥାଉ । ପାହାଡ଼ର ପାଦଦେଶରେ ମହାରାଷ୍ଟ୍ର ବନବିଭାଗ ଦ୍ୱାରା ନିର୍ମିତ ଏକ ଛୋଟ ପାର୍କ । ଏହି ଗୁମ୍ଫା ସବୁର ନିର୍ମାଣ ଏକବିଂଶ ଶତାବ୍ଦୀର ପ୍ରାରମ୍ଭର ଅବ୍ୟବହିତ କାଳରେ ମଧ ଆମ ପକ୍ଷରେ ବିସ୍ମୟକର ପ୍ରତିଭାତ ହେଉଥିଲା, ଆମେ ଫେରିଲାବେଳକୁ ୫ଟା ବାଜିବ-ଅଜନ୍ତାରୁ ମନ ଛାଡୁ ନଥିଲା । ଅଥଚ ଘଣ୍ଟାଏ ସେଠାରେ ବସି ରହିବା ପାଇଁ ହାତରେ ସମୟ ନଥିଲା । ଆକାଶରେ ଘନଘୋର ମେଘ ଛାଇ ରହିଥାଏ । ଲାଗୁଥାଏ ଏଇଲେ ବର୍ଷିଯିବ ପ୍ରଚଣ୍ଡ । ଅବଶ୍ୟ ମଝିରେ ଥରେ ଦି'ଥର ଝିପି ଝିପି ବର୍ଷା ହୋଇଛି କିନ୍ତୁ ଅଜନ୍ତାର ଆକାଶ ସେଦିନ ଆମ ସହ ସହଯୋଗ କରି ଝୁଲିପଡ଼ିଥିବା କଳାବଉଦସବୁକୁ କପାଳ ଉପରୁ କେଶରାଶିକୁ ଆଡ଼େଇ ଦେଲାପରି ନିଜ ଉପରୁ ଆଡ଼େଇ ଠେଲି ଦେଇଥିଲା ପଛକୁ । ଛାଡ଼ିଆସିବାକୁ ମନବଳୁ ନଥିଲେ ବି ସେଦିନ ଆମେ ଓହ୍ଲାଇଲୁ । ହୃଦୟର କିଛି ଅଂଶ ରହିଗଲା ଅଜନ୍ତାରେ ନାଁ ଅଜନ୍ତାର କିଛି ଅଂଶ ଭରିଦେଲା ମୋର ଘଷରା ହୃଦୟକୁ ତା'ର ସ୍ଥାପତ୍ୟରେ କେଜାଣି !



# କାମରୂପର ସନ୍ନିଧିରେ...

ଜୁନ୍‌ମାସ ପ୍ରାରମ୍ଭକାଳରେ ଆସାମର ଅସ୍ଥିରାବସ୍ଥା । ଆଲ୍‌ଫା, ବୋଡ଼ୋ ଉଗ୍ରପନ୍ଥୀ, ବିଚ୍ଛିନ୍ନତାବାଦୀଙ୍କ କବଳରେ ଚରମକୁ ଯାଇଛି । ଗୌହାଟୀ ସହର ମଧ୍ୟରେ ଉତ୍ପାତକରୁଥିବା ଆଲ୍‌ଫା ଗୋଷ୍ଠୀ ୮ ତାରିଖରେ ମୁଖ୍ୟମନ୍ତ୍ରୀଙ୍କୁ ହତ୍ୟାକରିବାର ଷଡ଼ଯନ୍ତ୍ର କରି ବିଫଳ ହୋଇଥିଲେ । ଖୁବ୍ ବିପଜ୍ଜନକ ଅବସ୍ଥା । ଆଲ୍‌ଫା ଗୋଷ୍ଠୀ ଦୁଇଭାଗ ହୋଇଥାନ୍ତି-(କ) ଶାନ୍ତିକାମୀ (ଖ) ବିଚ୍ଛିନତାବାଦୀ, ହିଂସ୍ର । ସେଇ ଆସାମ-ଗୌହାଟୀରେ ଆମର ରହଣି, ତା'ର ନିବିଡ଼ ଘଞ୍ଚ ପର୍ବତ ଓ ବୃକ୍ଷରାଜି- ଏଇ କେତେମାସ ତଳେ ତ ! ମାର୍ଚ୍ଚମାସରେ ୧୯୯୭ ମସିହା । ଆମେ ଓଡ଼ିଶାରୁ ୫ ଜଣ ଯାଇଥାଉଁ- ବୀଣା'ପା, ମୁଁ, ସରୋଜବାବୁ, ବିପିନ୍ ଓ ଜ୍ୟୋତ୍ସ୍ନା-ଓଡ଼ିଶା ସାହିତ୍ୟ ଏକାଡେମୀ ପଠାଇଥାଏ । ଏହାର ସାହିତ୍ୟ-ସୃଜନ ଦିଗଟି ଅନ୍ୟତ୍ର ଲିଖିତ । ଏଠାରେ, ଆସାମର ପ୍ରକୃତିସହ ଓଡ଼ିଆ କବିଲେଖକଙ୍କ ଆତ୍ମିକ ଯୋଗାଯୋଗର ଉଦାତ୍ତ ସ୍ମୃତି ସଂପର୍କରେ କିଛି ସ୍ମରଣୀୟ ବକ୍ତବ୍ୟ ଦେବାକୁ ଆଗ୍ରହ ଆସୁଛି ।

ଏବେ ଜୁନ୍‌ମାସ ବ୍ରହ୍ମପୁତ୍ରରେ ବନ୍ୟା । ଟି.ଭି. ରାଡ଼ାର ସର୍ବଗ୍ରାସୀ ଉତ୍ତାଳ ସ୍ରୋତ ଭୀତି ସଂଚାର କରୁଥାଏ । ଅଥଚ ବ୍ରହ୍ମପୁତ୍ର-ଗୌହାଟୀରେ ପହଞ୍ଚିଲା ପରଦିନ ଆମେ ଉମାନନ୍ଦ ଶିବଙ୍କ ମନ୍ଦିରଗଲୁ । ସକାଳୁ ସକାଳୁ । ବ୍ରହ୍ମପୁତ୍ର ନଦୀର ମଧ୍ୟଭାଗରେ ପାହାଡ଼ ଉପରେ ଯେ ମନ୍ଦିର ଓ ମନ୍ଦିରଉପରେ ଆଲୋକର ବ୍ୟବସ୍ଥା ହୋଇଛି । ଉତ୍ତାଳ ବ୍ରହ୍ମପୁତ୍ର ସେଦିନ ଥିଲା କେତେ ନିରୀହ, ବାଧ୍ୟ ଓ ସ୍ନେହୀ । ବନ୍ୟାକାଳର ତାର ଭୀମତାଣ୍ଡବ-ରଚନାକାରୀ ସ୍ରୋତ କି ଧୀର, ନମ୍ର, ଲଳିତ ! ଲଞ୍ଚରେ ବସି ତାର ସ୍ରୋତକୁ ଦୁଇଭାଗ କରି ମନ୍ଦିର ଆଡ଼େ ଗଲାବେଳେ ନଇଁପଡ଼ି ତାର ସ୍ରୋତକୁ ଛୁଇଁଲି, ଆଞ୍ଜୁଳା ଆଞ୍ଜୁଳା ପାଣି ଛାଟିଲି-ଲାଗିଲା, ସବୁନଦୀ ଯେପରି ଏକ ! ସ୍ରୋତରେ, ଲାଳିତ୍ୟରେ, ସନ୍ତୋଷ ପ୍ରଦାନକରିବାରେ, ଖାଲି ସ୍ଥାନ ନେଇ ଭିନ୍ନ ଭିନ୍ନ ନାମବାଚକତା ସେମାନଙ୍କର । ଯେପରି ମହାନଦୀ, ବିରୂପା, ବୈତରଣୀ, ଗଙ୍ଗା- ସତେ ଆଉ କେବେ ଦେଖିବି ଯେ ବ୍ରହ୍ମପୁତ୍ରକୁ- ଏଇ ଆଚ୍ଛନ୍ନଭାବ କଟିଯାଉ ନଯାଉଣୁ ଉମାନନ୍ଦ ଶିବଙ୍କ ପାହାଡ଼ ଧରିଲୁ । ଶିବ ପାର୍ବତୀଙ୍କ

ମନ୍ଦିର- ଶିବାଷ୍ଟକ ପଢ଼ା ଚାଲିଥାଏ- ପୁରୋହିତମାନଙ୍କର ମନ୍ତ୍ରୋଚାରଣରେ ତ୍ରୁଟି- ସବୁକିଛି ଆମ ଓଡ଼ିଶାର ମନ୍ଦିର ପରି । ପାହାଡ଼ ଶୀର୍ଷରେ ମନ୍ଦିର- ପାହାଚ ଚଢ଼ି ଚଢ଼ି ଯିବାକୁ ହୁଏ । ଅପରାହ୍ନରେ ଗଲୁ କାମାକ୍ଷୀ ଦେବୀଙ୍କ ମନ୍ଦିରକୁ । ସେ ମନ୍ଦିରରେ ବହୁତ ଲୋକଗହଳି । କିନ୍ତୁ ଗଭର୍ଣ୍ଣରଙ୍କ ତରଫରୁ ଆମ ପାଇଁ ସ୍ୱତନ୍ତ୍ର ଦର୍ଶନର ବ୍ୟବସ୍ଥା ହୋଇଥାଏ । ଲୋକ ବି ବେଶି ନଥାନ୍ତି ସେତେବେଳେ । କୋଉକାଳର ପୁରୁଣା ମନ୍ଦିର, ଗାଡ଼ି ସେ ମନ୍ଦିରପାଖକୁ ଯାଏ- ପାହାଡ଼ ଚଢ଼ି ଚଢ଼ି । ପାହାଡ଼ ଉପର ହେଲେ ବି ରାସ୍ତାର ଦୁଇ କଡ଼ରେ ସବୁ ତୀର୍ଥସ୍ଥାନ ଭଳି ଠାକୁର ଠାକୁରାଣୀଙ୍କ ଫଟୋ, ବହି, ଚୁଡ଼ୀ, ସିନ୍ଦୂର, ମାଳିର ଦୋକାନ ।

ଭିତରେ କାମାକ୍ଷୀଦେବୀଙ୍କ ପ୍ରତିମୂର୍ତ୍ତି- ସବୁ ଦେବୀଙ୍କ ମୂର୍ତ୍ତିପରି । ଯେ ଅପେକ୍ଷାକୃତ ନୂଆ ମନ୍ଦିରରେ ପ୍ରତିଷ୍ଠିତା ମୂର୍ତ୍ତି । କିନ୍ତୁ ବହୂପୂର୍ବରୁ ତା'ଭିତରେ ଗୁମ୍ଫା ଭଳି ମନ୍ଦିରଟିଏ ଅଛି ଓ ମନ୍ଦାରମାଳର ଗଦା ତଳେ ଦେବୀଙ୍କ ଯୋନି ହିଁ ପୂଜାପାଆନ୍ତି ସେ ଗୁମ୍ଫା ଭିତରେ । ପୁରାଣକହେ, ଦକ୍ଷ ଯଜ୍ଞରେ ଝାସ ଦେଇଥିବା ସତୀଙ୍କ ଶବକୁ କାନ୍ଧରେ ବୋହି ଶିବ ବିଶ୍ୱ ପରିକ୍ରମା କରିବା କାଳରେ ସତୀଙ୍କ ଯୋନି କାଳେ ଏହିଠାରେ ପ୍ରକ୍ଷିପ୍ତ ହୋଇଥିଲା । ସେମିତି ସତୀଙ୍କ ଶବର ଅନ୍ୟାନ୍ୟ ପ୍ରତ୍ୟଙ୍ଗ ବିଭିନ୍ନ ସ୍ଥାନରେ ପଡ଼ିଥିବାର ପୁରାଣ ପ୍ରସିଦ୍ଧି ରହିଛି । ଦେବୀଙ୍କ ମନ୍ଦିର ପରିପାର୍ଶ୍ୱରେ ପରିଚ୍ଛନ୍ନତା ପ୍ରାୟ ନାହିଁ । ପ୍ରତିଦିନ ମନ୍ଦିର ଭିତରେ ଛାଗବଳି ଦିଆଯାଏ । ଯେତେ ଧୋଇଲେ ପରିଷ୍କାର କଲେ ବି ପାଦତଳେ ସିମେଣ୍ଟ, ମାର୍ବଲ୍‌ର ଚଟାଣ ଉପରେ ଚିକିଟା ଚିକିଟା ଲାଗେ ଓ ରକ୍ତର ଦୁର୍ଗନ୍ଧ ବି ଥାଏ । ଭିତରେ ମନ୍ଦିର ବେଢ଼ା ମଧ୍ୟରେ ଗୋଟେ ଛୋଟ ପୋଖରୀ, ନେଳିରଙ୍ଗର ଦୂଷିତ ପାଣି ନିଶ୍ଚୟ । ସେଠି ଗୋଡ଼ ଧୁଆଯାଏ । ଯା'ହଉ, ଆମର ପାରମ୍ପରିକ ଅଧିକାଂଶ ମନ୍ଦିର ଏଇଆ । କେତେଗୁଡ଼ିଏ ଫଟୋନେଲୁ । ସେଠାରୁ ଫେରି ବାହାରିଲୁ ବଶିଷ୍ଠ ଆଶ୍ରମ । ଆମ କାର୍ ଆଗେ ଆଗେ ସିକ୍ୟୁରିଟିଗାଡ଼ି ଚାଲିଥାଏ ।

ବେଶ୍ କିଛି ଦୂର ନିକାଞ୍ଚନ ଅରଣ୍ୟ ଭିତରେ ବଶିଷ୍ଠ ଆଶ୍ରମ । ଏହାର ପ୍ରାକୃତିକତା ଅନେକଭାବେ ସୁରକ୍ଷିତ ରହିଛି । ସତେରେ ବଶିଷ୍ଠ ମହର୍ଷି ଏହିଠାରେ ତପସ୍ୟା କରୁଥିଲେ କି ? ପ୍ରକୃତରେ ସ୍ଥାନଟି ହିମାଳୟ ପର୍ବତମାଳାର ଏକ ଅଂଶ ଓ ତପସ୍ଥଳୀ ହେବାର ଉପଯୁକ୍ତ । ଅନେକବର୍ଷ ତଳେ ଲଛମନ୍ ଝୁଲାଠାରେ ଦେଖିଥିବା ଆକାଶସ୍ପର୍ଶୀ ନିର୍ବିକାର ପର୍ବତମାଳାର ଯେ ଯେପରି ଅନ୍ୟ ଏକ ବିସ୍ତାର ! କୋଉ ଗଭୀରରୁ ଝରିଆସୁଥିଲା ଝରଣା- ତିନିଧାର ହୋଇ, ସେ କାଳେ ବଶିଷ୍ଠଙ୍କ ତିନିକନ୍ୟା-ସନ୍ଧ୍ୟା, ଲଳିତା, କାନ୍ତା- ଏତେ ନିକଟରେ, ନମ୍ରଝରଣାର ସ୍ରୋତରେ ପଥରଖଣ୍ଡ ଉପରେ ବେଶ୍ ଡିଆଁ ଡେଇଁ କଲୁ । ଫଟୋ ନେଲୁ । ଦୂରରେ ନଡ଼ା ତିଆରି ଆଶ୍ରମର ଛାତ- ସେଇଠି ବଶିଷ୍ଠଙ୍କ ତପ ଭୂମି । ଅନ୍ଧଟିଏ ପୁଅଝିଅଙ୍କୁ ସାଥୀରେ ଧରି ବାଉଲ୍ ସ୍ୱରରେ ଗୀତ ଗାଉଥାଏ । ମନ ଛାଡୁନଥାଏ ସେଠାରୁ- ମାତ୍ର ପାତଳ ଅନ୍ଧାର ଘେରିଆସୁଥାଏ ।

ପରଦିନ ଆମର ଶିଲଂ ଯାତ୍ରା । ମୁଖ୍ୟ ଉଦ୍ଦେଶ୍ୟ, ବୁଲାବୁଲି କରିବା । ଯୋଜନା

ଥିଲା ଚାରିଗୋଟି ଦର୍ଶନୀୟ ସ୍ଥାନକୁ ନିଶ୍ଚୟ ଯିବା । ସକାଳୁ ସର୍କିଟ ହାଉସ୍‌ରେ ଗୋଟେ କବିତା ପାଠୋତ୍ସବ ହେଲା-ବିପିନ୍ କବିତା ଆବୃତ୍ତି ଖୁବ୍ ଭଲ କରନ୍ତି । ସମସ୍ତେ କବିତା ଆବୃତ୍ତି କଲୁ । ଆମେ ବାହାରିବା ସମୟ ବିଳମ୍ବ ହେଲା । ଆନ୍ତଃରାଜ୍ୟ ଯାତ୍ରା-ମେଘାଳୟ ରାଜ୍ୟ ! ତେଣୁ ସିକ୍ୟୁରିଟି ଆଉ ଆମ ସହିତ ଯିବ ନାହିଁ । ଆମ ସୁରକ୍ଷା ଆଜି ଆମ ହାତରେ । ପାଞ୍ଚ ଜଣ ଗୋଟେ ଆମ୍ବାସଡ଼ାର କାର୍‌ରେ ଗଲୁ । ଘାଟି ଜଙ୍ଗଲ ରାସ୍ତା, ଘୋର ଜଙ୍ଗଲ, ସକାଳୁ ବାହାରିଯିବା ଉଚିତ ଥିଲା । ଦିନ ୧୧ଟାରେ ବାହାରିଲୁ । ଗୌହାଟୀ-ଶିଲଂ ରାସ୍ତା ଭୁଲିବାର ନୁହେଁ, ସାରାଜୀବନର ଏକ ସାଇତା ସ୍ମୃତି । ଘଞ୍ଚ ପାହାଡ଼ ଘେରା ରାସ୍ତାରେ ଅନେକ ଝରଣା । ପାହାଡ଼ ତଳୁ ଶୀର୍ଷ ଯାଏ ସପୁରିବଗିଚା, ନଡ଼ିଆ ଓ କଦଳୀବାଡ଼ି । ରାସ୍ତାର ଖାଲ ଢ଼ିପ ଦୁଇ ଧାରରେ ପ୍ରଚୁର ଗୁଆଗଛ । ନାଲି, ହଳଦିଆ ପେଛା ପେଛା ପାଚିଲା ଗୁଆ ଝୁଲୁଥାଏ । ଗୌହାଟୀର କଦଳୀ, ନଡ଼ିଆ, ସପୁରୀ ସବୁ କିଛି ମିଠା । ରାଜ୍ୟପାଳଙ୍କ ଘରେ ଖାଇଥିଲୁ । ସେ କହୁଥିଲେ ବି ପାହାଡ଼ କାଛିରେ କଦଳୀଗଛ, ହାତେ, ଦେଢ଼ହାତ ଛାଡ଼ି ଝୁଲୁଥାଏ ଭଣ୍ଡା । ବିରାଟ କଦଳୀ କାନ୍ଦି ଝୁଲୁଥାଏ । ପରିପୁଷ୍ଟ କଦଳୀ । ବାଟ ମଝିରେ ଦୁଇ ସ୍ଥାନରେ ଅଟକି ଝରଣା ଓ ଜଙ୍ଗଲ ପାଖରେ ଆମେ ଫଟୋ ଉଠାଇଲୁ । ଶିଲଂ ସହର ସାରା ଉଚ୍ଚା ନୀଚା, ଖାଲଢ଼ିପ ରାସ୍ତା । ଠିକ୍ ଯେମିତି ଦେଖିଥିଲି ନୈନିତାଲ୍‌ରେ । ୧୯୭୫ ମସିହାରେ ଏକ ସର୍ବଭାରତୀୟ ଲେଖିକା ସମ୍ମିଳନୀରେ ଯୋଗଦେବା ଅବସରରେ ମୁଁ ସେଠାକୁ ଯାଇଥିଲି ଓ ବୀଣା'ପା ବି ଯାଇଥିଲେ ।

ଶିଲଂ ସହରରେ ପହଞ୍ଚିଲା ବେଳକୁ ଦିନ ଗୋଟାଏ । ଅତ୍ୟଧିକ ଦାମ୍ ଦେଇ ଗୋଟେ ହୋଟେଲ୍‌ରେ ଭାତ, ଡ଼ାଲି, ମାଛ ଖାଇଲୁ । ପ୍ରଥମେ ଗଲୁ ହିଲ୍‌ଟପ୍ । ଶିଲଂର ସର୍ବୋଚ୍ଚ ପାହାଡ଼ ଶିଖ- ଉପରୁ ଶିଲଂ ନଗରୀର ଦୃଶ୍ୟ ଚମତ୍କାର । ଘନ ଜଙ୍ଗଲ ଭିତରେ ମିଲିଟାରୀ କଲୋନୀ ପାଖରେ ଏହି ହିଲ୍‌ଟପ୍-କେତେ ଗୁଡ଼ିଏ ଚା ଦୋକାନ ସେଇଠି । ଦୋକାନଦାରମାନେ ଯୁବକଯୁବତୀ-ମୁଖ୍ୟତଃ ଖାସି ସଂପ୍ରଦାୟର ସୁନ୍ଦରୀ ଯୁବତୀମାନେ ହିଁ ଚା ପରଷନ୍ତି । କିଣିଲୁ ପେଛାଏ ବେତକୋଳି ପ୍ରାୟ କୋଡ଼ିଏ ଟଙ୍କାର, ବରକୋଳିପରି ଆକାର । ପାଚିଲା ବରକୋଳିର ରଙ୍ଗ ଓ ନକ୍‌ସା । ଫେରିଲା ବାଟରେ ପାଟିରେ ମାରିଲୁ-କଞ୍ଚା ଆମ୍ବଠୁଁ ଆହୁରି ଆମ୍ବିଳା । ଆମର ଦ୍ୱିତୀୟ ଆବିଷ୍କାର ପଥରେ ଥିଲା ଯମଜ ପ୍ରପାତ । ତା'ନାମ ଏଲିଫାଣ୍ଟା ଫଲ୍‌ସ୍ । ମଝିରେ ମଝିରେ ରାସ୍ତା ପଚାରିବାକୁ ପଡ଼ିଲା । ଆମ ଡ୍ରାଇଭର, ୨୦ ବର୍ଷର ଯୁବକ । ପ୍ରଥମରୁ କହୁଥିଲା ମୁଁ ଶିଲଂରେ ରହିଚି, ସବୁ ବାଟ ଘାଟ ଜାଣେ । ମାତ୍ର ରାସ୍ତା ଖୋଜି ଖୋଜି ଜାଣିଲୁ, ସେ କିଛି ଜାଣେନା । ତା'ନାମ ରାଜୁ । ପେଟ୍ରୋଲରେ ତ ସହଜେ ଠକେ । ଏତେ ଯେଉଁ ରାସ୍ତା ପଚାରେ, ବାଁକୁ ଯିବାର ଥିଲେ, ସେ ଡାହାଣକୁ ଯାଏ । ଫଳରେ ଦିନ ଢ଼ଳିଯାଉଥାଏ- ଆମେ ଶିଲଂ ଉପାନ୍ତରେ ଜଙ୍ଗଲ ଭିତରେ ପ୍ରପାତକୁ ଖୋଜିବୁଲୁଥାଉ । ପ୍ରପାତ ଆମ ସାଙ୍ଗରେ ଲୁଚୁକାଳି ଖେଳୁଥାଏ । ସେ ପର୍ଯ୍ୟନ୍ତ ରାଜୁ ଯେ ଏତେ ଅପାରଗ, ଆମେ ବୁଝି ନଥାଉ । କାରଣ, ସେ ବଣ୍ଡୁଆଁ

ଭାଷାରେ କଥାବାର୍ତ୍ତା ଚଳାଏ, ରାସ୍ତା ପଚାରେ । ବଡ଼ ଅସୁବିଧା କଥା ଯେ, ଏତେବଡ଼ ପର୍ଯ୍ୟଟନ ସ୍ଥଳ, ଅଥଚ ରାସ୍ତାରେ କେଉଁଠି ମାର୍ଗ ନିର୍ଦ୍ଦେଶ କରାଯାଇନଥାଏ । ଶେଷକୁ ଗୋଟେ ଆଦିବାସୀ ଗାଁ ମୁଣ୍ଡରେ ପହଞ୍ଚିଲୁ । ଆସନ୍ନ ସନ୍ଧ୍ୟା, ନିକାଞ୍ଚନ ଜାଗା- ଦୂରରେ ପ୍ରପାତର ଅନୁଚ୍ଚ ଝପ୍ ଝପ୍ ଶବ୍ଦ ଶୁଭୁଥାଏ- କିନ୍ତୁ ଏ ଜଙ୍ଗଲ ଭିତରେ ରାସ୍ତା କାହିଁ ? ଆଦିବାସୀ ଲୋକଟିଏ ଦେଖାହେଲା, କହିଲା, ଝରଣା ନିକଟରେ, ମାତ୍ର ରାସ୍ତା ଦୁର୍ଗମ । ଆମେ ସହଜ ଓ ନିକଟ ରାସ୍ତାଟି ବହୁପଛରେ ଛାଡ଼ି ଆସିଛୁ । ଭୁଆଁ ବୁଲିଛୁ ଖୁବ୍ ଓ ଦୁର୍ଗମ ରାସ୍ତାରେ ପହଞ୍ଚିଛୁ । ତଥାପି, ମାଡ଼ିଚାଲିଲି ମୁଁ, ଏତେ ବଡ଼ ସୁଯୋଗ ହାତ ଛଡ଼ା କରାଯାଏ ? ଝରଣାର କୁହରିବା ଶୁଭୁଛି । ଆଗରେ ବିପିନ୍ ଓ ସରୋଜବାବୁ, ତାପରେ ମୁଁ, ମୋ ପଛରେ ଜ୍ୟୋତ୍ସ୍ନା । ବୀଣା'ପା ଆଗୋଉ ନଥାନ୍ତି । ଅନ୍ଧାର ଆସିଲାଣି । ଏ ବେଳରେ ସାପ ସମେତ ବଣ୍ୟଜନ୍ତୁମାନେ ଝରଣାକୁ ଗଡ଼ନ୍ତି । ''ଯାଅ ନାହିଁ ।'' ଆମେ ଶୁଣିବା ମତ୍‌ଲବ୍‌ରେ ନଥାଉ । ମାତ୍ର କୁଆଡୁ ଦି'ଟା ଶିକାରୀ କୁକୁର ଜଣକ ଖଳାଘରୁ ଛୁଟି ଆସିଲେ । ମଣିଷ କେହି ଦିଶୁ ନଥାନ୍ତି । ବୀଣା'ପାଙ୍କ ଡାକକୁ କାନଦେଲୁ । ''ଯାଆନା, ଫେରିଆସ-'' ସେ ପୁଣି ଦଳପତି ଆମର । ଅସୁବିଧାବେଳେ ସୁପରାମର୍ଶ ଦେବା ତାଙ୍କର ହେଲା କାମ । ଫଳରେ ଝରଣା ନିକଟରୁ ଅବୁଝା ଶୋଷ ନେଇ ଫେରିବାକୁ ହେଲା । ଜ୍ୟୋତ୍ସ୍ନା କହିଲେ ''କୁକୁର ବାଟ ଓଗାଳିଲାରୁ, ଆମେ ବିପଦରୁ ରକ୍ଷା ପାଇଲେ ।'' ଅତଏବ ଫେରିଲୁ । ରହିଗଲା ଆହୁରି ତିନିଗୋଟି ଦର୍ଶନୀୟ ସ୍ଥାନ । ବଟାନିକାଲ୍ ଗାର୍ଡନ...ଇତ୍ୟାଦି । ରାଜୁ ଉପରେ ବିରକ୍ତ ଲାଗିଲା, ଧୂର୍ତ୍ତଟୋକା, ବାଟ ଜାଣିନି କହିଥିଲେ ଆମେ ପଚାରି ଯାଇପାରିଥାଆନ୍ତୁ । ରାଜୁ ଖୁବ୍ ଭଲ ଗାଡ଼ି ଚଲାଉଥାଏ । ମାତ୍ର ନିହାତି ଚଗଲା । ସରୋଜବାବୁ ଚିହିଁକି ଉଠିଲେ- ''ରାଜୁକୁ ସେମିତି କହିବ ନାହିଁ, କେତେ ପରିଶ୍ରମ କରୁଛି ପିଲାଟା । କୋଉ ଡ୍ରାଇଭର ତେଲ ଚୋରି ନ କରେ ଯେ, ତାର ଦୋଷ ହୋଇଗଲା । ସେ ମୋ ପୁଅ ପରି । ବୁଝି ଖବରଦାର୍..''

ତା'ପରଦିନ ଗୌହାଟୀର ଓଡ଼ିଆ ଜଜ୍ ଅନଙ୍ଗ ପଟ୍ଟନାୟକ ଓ ତାଙ୍କ ସ୍ତ୍ରୀ ପ୍ରତିଭା ଆମକୁ ତାଙ୍କ ଘରକୁ ନିମନ୍ତ୍ରଣ କରିଥାନ୍ତି । ପ୍ରତିଭା ମୋ ଝିଅର ପ୍ରିୟ ସାଙ୍ଗର ବଡ଼ ଭଉଣୀ । ବହୁତ ଜଣାଶୁଣା । ମୁଁ ଆସିବାର ଖବର ତାକୁ ଆବର୍ତ୍ତ ଭବନ (ସର୍କିଟହାଉସ) ରୁ ଜଣାଇଥିଲି । ପ୍ରତିଭାର ଜିଦ୍- ''ମୁଁ ଏବେ ଯାଇଁ ଆପଣଙ୍କୁ ଘରକୁ ନେଇ ଆସିବି ।'' ଆମର କେତେ ପ୍ରୋଗ୍ରାମ- ସାହିତ୍ୟିକମାନଙ୍କୁ ଭେଟିବା ଇତ୍ୟାଦି, ପୁଣି ଗାଡ଼ି ଓ ସିକ୍ୟୁରିଟି ବି ପାଖରେ ଅଛି । ଆମେ ନିଜେ ଯିବୁ କହିଲୁ । ସନ୍ଧ୍ୟାରେ ଶୁଣିଲୁ ପ୍ରତିଭା ଆସି ଆମକୁ ଖୋଜି ଫେରି ଯାଇଛି । ଆମେ ଗାଡ଼ି ଫେରାଇ ଦେଇ ସାରିଲୁଣି । ସେ ତାର ପୁଅ ଟୋନିକୁ ପଠାଇଲା ତା' ନିଜ ଗାଡ଼ିରେ । ଟୋନିକୁ ଦେଖିଥିଲି । କେତେ ଛୋଟ ହୋଇଥିଲା, ବଡ଼ ହୋଇଗଲାଣି । ସିଙ୍ଗାପୁରରେ +୨ ପରୀକ୍ଷା ଦେଇ ଫେରିଛି । ମୁଁ ବୀଣା'ପା ଓ ଜ୍ୟୋତ୍ସ୍ନା ତାଙ୍କ ଘରକୁ ଗଲୁ । ଘୂରି ଘୂରି ପାହାଡ଼ ଉପରେ ଘର । ସୁନ୍ଦର ଘର ଆଉ ବଗିଚା,

ସିକ୍ୟୁରିଟି କଡ଼ା- ପ୍ରତିଭାର ଜିଦ୍ ଆପଣ ଖାଇକି ଯିବେ। ସେଦିନ ଶିବରାତ୍ରି। ସେ କେତେକ'ଣ ସଜାଡ଼ିଥାଏ। ଖାଇଲାପରେ ପୁଅ ଓ ପୁତୁରାଙ୍କୁ ପଠାଇ ଆମକୁ ଆବର୍ତ୍ତଭବନରେ ଛାଡ଼ିଲା। ତା'ଠାରୁ ଓ ଅନଙ୍ଗବାବୁଙ୍କଠାରୁ ଆସାମର ବର୍ତ୍ତମାନ ପରିସ୍ଥିତି ବିଷୟରେ ବେଶ୍ କିଛି ଖବର ମିଳିଲା। ଆସାମର ସାଧାରଣ ଲୋକେ ଖୁବ୍ ପରିଶ୍ରମ କରିବାକୁ ଭଲପାଆନ୍ତି ନାହିଁ। ଚଞ୍ଚଳମନା ମଧ୍ୟ ! ଗୋଟିଏ ନିର୍ଦ୍ଦେଶ ଶୁଣି ମଧ୍ୟ ବୁଝିବାକୁ ଚେଷ୍ଟା କରନ୍ତି ନାହିଁ। କାମରେ ଭୁଲ୍ ଭାଲ୍ କରିପକାନ୍ତି। ଏବେ ଆମେ ରାଜୁକୁ ବୁଝିପାରିଲୁ। ସେ କାହିଁକି ଆମକୁ ଭୁଆଁବୁଲାଇ ଦିନଟା ବରବାଦ୍ କଲା। ଅନଙ୍ଗବାବୁ ବ୍ୟସ୍ତ ହେଲେ, ‘‘ମତେ ଜଣାଇଲେ ନାହିଁ, ମୁଁ ଭଲ ଗାଇଡ୍ ଦେଇ ସବୁପ୍ରକାର ସୁବିଧା କରିଦେଇଥାନ୍ତି ଶିଲଂରେ।’’ ସେ ୬ଟି ରାଜ୍ୟର ଆଇନ ବିଭାଗର ଦାୟିତ୍ୱନେଇଥାଆନ୍ତି- ମେଘାଳୟ, ଅରୁଣାଚଳପ୍ରଦେଶ, ମଣିପୁର, ତ୍ରିପୁରା, ଆସାମ ଓ ନାଗାଲ୍ୟାଣ୍ଡ।

ପ୍ରତିଭାଠାରୁ ବୁଝିଲୁ ବୋଡ଼ୋ ଓ ଆଲ୍‌ଫା ବିଦ୍ରୋହୀଙ୍କ କବଳରେ ଆସାମର ବିଶିଷ୍ଟ ବ୍ୟକ୍ତିମାନଙ୍କ ଜୀବନଯାପନ କିପରି ଇତସ୍ତତଃ ହୋଇପଡ଼ିଛି। ସେ ବଜାରକୁ ଗଲେ ସାଥୀରେ ସିକ୍ୟୁରିଟି ଯିବ। ବନ୍ଧୁକଧାରୀ ପୋଲିସ୍ ବଜାରରେ ଠିଆ ହେଇଗଲେ ତାକୁ ବି ମାଡ଼ି ମାଡ଼ି ପଡ଼େ। ଲୋକଙ୍କ ଦୃଷ୍ଟି ବି ଆକର୍ଷଣ କରେ। ବିଦ୍ରୋହୀଙ୍କ ଦୃଷ୍ଟି ବି ଆକର୍ଷଣ କରିବା ସମ୍ଭବ। ପୁତୁରାଟିଏ ତା'ପାଖରେ ରହି ସ୍କୁଲରେ ପଢ଼େ, ତାକୁ ବି ସେମିତି ଖୁବ୍ ସତର୍କରେ ନିଆ ଅଣା କରାଯାଏ।

ଦୁଇ ଦିନପରେ ଆମେ ଫେରିଲୁ। ଆସାମ ସାହିତ୍ୟ ସଭା, ଆସାମୀଙ୍କ ସାହିତ୍ୟପ୍ରୀତି ଓ ସାହିତ୍ୟିକମାନଙ୍କ ଆତ୍ମୀୟତା ଅନ୍ୟତ୍ର ଲେଖିଛି। ପରେ ସର୍ବଭାରତୀୟ କବି ସମ୍ମିଳନୀରେ ଦୁଇଜଣ ଲେଖିକାଙ୍କୁ ଭେଟିଛି, ପୁଣି ନବକାନ୍ତ ବରୁଆ, ନୀଲିମକୁମାର, ସମୀର ତାନ୍ତି ଓ ହୀରେନ୍ ଭଟ୍ଟାଚାର୍ଯ୍ୟ, ଅନୁପମା ଓ ନିରୁପମା ବଡ଼ ଗୋହାଇଁଙ୍କୁ ଭେଟିଛି। କାମାକ୍ଷା ଦେଶ ସହିତ ପୂର୍ବ ସଂପର୍କର ସୂତ୍ର ଆହୁରି ଟାଣ ହୋଇଯାଇଛି।



# ମହାଦୀପ ଜଳୁଛି...

ମନ୍ଦିର ଚୂଡ଼ାରେ ଜ୍ୱଳ ଜ୍ୱଳ ମହାଦୀପ ସେ... ନିଜେ ଦିଶନ୍ତି ନାହିଁ । ତାଙ୍କ ସେବାତ୍ୟାଗର ଆଲୋକ ଝଲମଲ ଦିଶେ । ଭାଗ୍ୟବଶରୁ ମୁଁ ପ୍ରଥମଥର ତାଙ୍କୁ ଦେଖିବାର ସୁଯୋଗ ପାଏ ୬/୭ବର୍ଷ ବୟସରେ, ହୁଏତ ଆଗରୁ ଦେଖିଥିବି, ମାତ୍ର ସେ ସ୍ମରଣରେ ଆସନ୍ତି ସେଇ ବୟସରୁ । ବାଲି ପୋଖରୀ ପଡ଼ିଆଠାରେ (ଗାଁ ବାହାରେ ଉତ୍କଳ ଗୌରବ ୰ ମଧୁସୂଦନଙ୍କ ପାଇଁ ନିର୍ମିତ ବାସସ୍ଥାନ) ଏକ ବିରାଟ ଜନସଭାରେ ସେ ଯୋଗଦେବାକୁ ଆସନ୍ତି । ୨ ଆଙ୍ଗୁଳ ନୀଳଧଡ଼ିଥିବା ଧଳା ଖଦି ଖଣ୍ଡିଏ, ଅଣଓସାର ଓ ଚଟି ନଥିବା ଖାଲିପାଦ । ଆମେ ତାଙ୍କ ଗଳାରେ ଫୁଲମାଳ ଲମ୍ବାଇଲୁ । ଦୀପରେ ବନ୍ଦାଇଲୁ । ଆମେ ଅର୍ଥାତ୍ ମୁଁ ନୁହଁ, ମୋଠାରୁ ବଡ଼ ୧୪/୧୫ ବର୍ଷର ଗାଆଁର ଝିଅମାନେ । ଦେଶାତ୍ମବୋଧକ ଗୀତ ଗାନ କରାଗଲା । ତାଙ୍କ ସାଥୀରେ ଥିଲେ ଆଚାର୍ଯ୍ୟ ବିନୋବା ବାଭେ । ଭୂଦାନ ଯଜ୍ଞର ସର୍ବୋଦୟ ପଦଯାତ୍ରାର ସେ ଗୋଟିଏ ଅଧ୍ୟାୟ । ତାଙ୍କର ବକ୍ତୃତା କ'ଣ ଥିଲା ମନେ ନାହିଁ, ସେ ବୟସରେ ବି ବୁଝିବାର ସାମର୍ଥ୍ୟ ନଥିଲା । କିନ୍ତୁ ଜନମାନସରେ ତାଙ୍କର ପ୍ରଭାବ ଅସୀମ । ଦେବୀଭଳି ତାଙ୍କୁ ପୂଜା କରାଯାଉଥାଏ । ଅନ୍ତତଃ ଆମ ଗାଁ (କଟକ ଜିଲ୍ଲା, ସତ୍ୟଭାମାପୁର) ଲୋକେ ଏଥିରେ କାର୍ପଣ୍ୟ କରନ୍ତି ନାହିଁ । ଏବେ ହୁଏତ ସେ ଉଦାରତା ଊଣା ପଡ଼ିଛି । ପ୍ରତିଯୋଗିତାମୂଳକ ଦୁନିଆଁରେ ଆପଣାର ସ୍ୱାର୍ଥର ଖିଅ ଟିକକ ଖୋଜୁ ଖୋଜୁ ଲୋକେ ମହାଦୀପ ଆଡୁ ଦୃଷ୍ଟି ଫେରାଇ ନେଇଛନ୍ତି । କିନ୍ତୁ ସେତେବେଳର କଥା ନିଆରା ଥିଲା ।

ଭାରତୀୟ ସ୍ୱାଧୀନତାର ବୟସ ୧୦ ବର୍ଷ ବି ହୋଇ ନଥାଏ । ଗୋଟିଏ ସମୂହ ଉନ୍ମାଦନା ଜାଗିରହିଥାଏ ଦେଶର କୋଣ ଅନୁକୋଣରେ । ମହାଉଲ୍ଲାସ ମଧ୍ୟରେ ଜନଗଣ ତାଙ୍କୁ ସମାଦର କରୁଥାଆନ୍ତି । ତାଙ୍କ ଦ୍ୱାରା ସ୍ଥାପିତ 'କସ୍ତୁରବା ମାତୃମଙ୍ଗଳ କେନ୍ଦ୍ର ଗାଁର ପୀଠସ୍ଥଳୀ, ତାଙ୍କ ନିଜ ବାପ ଘରଠାରେ ସ୍ଥାପିତ ହୋଇଥାଏ । ପିଲାକାଳର ସ୍ମୃତି ଲିପିରେ ଏ ସଂପର୍କରେ ମାତୃ ମଙ୍ଗଳ କେନ୍ଦ୍ର ସହ ମୋ ନିବିଡ଼ତା ବିଷୟରେ କିଛି ଲେଖିଛି । ସେଠାରେ ରାମଧୁନ୍ ଗାଇଛି, ତାକୁଡ଼ିରେ ସୂତା କାଟିଛି, ସନ୍ଧ୍ୟାବେଳେ ଗୀତାର ୨ୟ ଅଧ୍ୟାୟ ପଢ଼ିଛି- ବଡ଼ମାନଙ୍କ ଉଚ୍ଚାରଣ ଅନୁକରଣ କରି ଆବୃତ୍ତି କରି ଚାଲିଛି, ବୁଝେଁ ନ

ବୁଝେଁ ।

ଆଜି ଯେତେବେଳେ ସରକାରୀ ଡାକ୍ତରମାନେ ଗାଁ ଗହଳ, ବଣପାହାଡ଼ ଅଞ୍ଚଳକୁ ମାଡ଼ୁନାହାନ୍ତି, ସରକାରୀ ଚାକିରୀ ନ ହେଲା ପଛେ ନାହିଁ, ଜନସେବା ବ୍ୟାପାରଟି ତ ଏକାବେଳକେ ନଷ୍ଟ ହୋଇଯାଇଛି । ଗାଡ଼ି ଚଢ଼ି, ଅତିଥି ଭବନରେ ରହି, ଫଟୋ ନେଇ ବଣ ଜଙ୍ଗଲ, ଗାଁ ଗଣ୍ଡାରେ ଗରିବ, ଅଶିକ୍ଷାପୀଡ଼ିତ ଲୋକମାନଙ୍କ ଗହଣରେ ଠିଆ ହୋଇ ସେମାନଙ୍କ ହାତରେ ସ୍ୱଳ୍ପ ଦାନ ଟେକି ଦେଇ, ଖବରକାଗଜରେ ଛପାଇ ଜନସେବୀମାନେ ଯଶ ଅର୍ଜନ କରୁଛନ୍ତି । ପରେ ପରେ ରାଜନୀତି ଓ ନିର୍ବାଚନରେ ନେତାପଣ । ସେତିକିବେଳେ ଆଖି ଆଗକୁ ଆସନ୍ତି 'ରମାଦେବୀ, ମୋ ବାପାଙ୍କ ଅତି ଆଦରର 'ବେଲଅପା' । ଓଡ଼ିଶାର ଜନଗଣଙ୍କ ମାଆ ରମାଦେବୀ ଚୌଧୁରାଣୀ । ସାରା ଭାରତବର୍ଷକୁ ଖାଲି ପାଦରେ ଚାଲି ପରିକ୍ରମା କରିଥିବା, ଭୂମିହୀନଙ୍କ ପାଇଁ ଭୂମିମାଲିକଙ୍କ ନିକଟରେ ଆବେଦନ ଜଣାଇଥିବା ସେହି ମହିଳା । ୧୪ ବର୍ଷ ବୟସରେ ଗୋଡ଼ଠାରୁ ମୁଣ୍ଡଯାଏଁ ସୁନା ଅଳଙ୍କାର ଛାଆଣି ହେଇଥିବା ଓ ପରେ ୨୧/୨୨ ବର୍ଷ ବୟସରେ ସ୍ୱାଧୀନତା ଆନ୍ଦୋଳନ ପାଣ୍ଠିକୁ ସବୁତକ ଦାନ କରିଥିବା ମହିଳା ସେ । ସାରା ଓଡ଼ିଶାର ନିପଟ ମଫସଲ ଓ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ସେବାସ୍ଥଳୀମାନ ସ୍ଥାପନ କରିବାର ମୁଖ୍ୟ ଆୟୋଜିକା ଥିଲେ ୯ ରମାଦେବୀ । ପ୍ରବଳ ଆତ୍ମ ବିଶ୍ୱାସରେ ସେ ଆଗେଇ ଚାଲିଥିଲେ । ପ୍ରଥମେ ଅଶିକ୍ଷିତ ଗ୍ରାମ୍ୟଜନତା ମଧ୍ୟରେ ସବୁଠୁଁ ଅବହେଳିତ ଓ ଯତ୍ନ ପାଇବା ପାଇଁ ହକ୍‌ଦାର ପ୍ରସୂତୀ ଗର୍ଭବତୀ ମହିଳା ଓ ଶିଶୁମାନଙ୍କର ଯତ୍ନ ନିମିତ୍ତ ସେ ନିଜକୁ ଉତ୍ସର୍ଗ କରିଥିଲେ । ମାତୃ ମଙ୍ଗଳ କେନ୍ଦ୍ରର କର୍ମୀମାନେ, ମୁଖ୍ୟତଃ ନାରୀ କର୍ମୀମାନେ ଗାଁ ଗହଳରେ ଉପରୋକ୍ତ ସେବାକାର୍ଯ୍ୟ କରୁଥିଲେ । ସେବିକାମାନେ ପ୍ରସୂତି ସହାୟିକା ଟ୍ରେନିଂ ମଧ୍ୟ ନେଇଥିଲେ ।

ବହୁ ପିଲାଦିନକୁ ଅଣ୍ଡାଳି ବସିଲେ, ହୃଦୟର ବିସ୍ତୀର୍ଣ୍ଣ ଇଲାକାରେ ଚିତ୍ରଟିଏ ଫୁଟିଉଠେ-ରାତି ଅଧ ହବ କି କଅଣ, ଘନଘୋର ବର୍ଷା । କାକୁସ୍ଥ ଲୋକଟିଏ ଛତା କି ପଖିଆ ଖଣ୍ଡେ ଧରି ଆସିଥିବ, ହାତରେ ଶିଖା ଥର ଥର ଲଣ୍ଠନଟିଏ ଓ ଆର ହାତରେ ଖଣ୍ଡେ ଠେଙ୍ଗା । ଡାକି ଆସିଥିବ ସେବିକାଙ୍କୁ । କେବଳ ସତ୍ୟଭାମାପୁରରୁ ନୁହେଁ ପାଖ ଗାଆଁ କ୍ରିଷ୍ଣାପୁର, ଗୋପୀନାଥପୁର ବା ଆଉ କୋଉଠୁ । ଆସନ୍ନ ପ୍ରସବାଟି ଛଟପଟ ହଉଚି, 'ଅପା, ଆସନ୍ତୁ, ବଡ଼ କଷ୍ଟ' । ତତ୍‌କ୍ଷଣାତ୍ ବାହାରି ପଡୁଥିବ ସ୍ତ୍ରୀଲୋକଟିଏ, ଖଦଡ଼ ଶାଢ଼ୀରେ ଓଢ଼ଣାଟାଣି, ଖାଲିପାଦରେ ହାତରେ ଔଷଧ ବାକ୍ସ, ହୁଏତ ଟର୍ଚ୍ଚ ଖଣ୍ଡେ ଥିବ କି ନଥିବ । କାଦୁଅ ପାଣି, ରାସ୍ତା ଉବୁଟୁବୁ, ଗଭୀର ବିଲ ହିଡ଼ ଦେଇ ଚାଲିଥିବ ଲୋକଟି, ପଛେ ପଛେ ମାତୃମଙ୍ଗଳ କେନ୍ଦ୍ରର ସେବିକା ଜଣକ । ସେ ଡାକ୍ତରାଣୀ ନୁହଁ, ପ୍ରସୂତୀ ସହାୟିକା । ସେଇ ଅନ୍ଧାର ରାତି, ଗଳ ଗଳ ବର୍ଷା, ବିଜୁଳି ଆଲୋକ ମଫସଲକୁ ଆସି ନଥାଏ । ରିକ୍‌ସା ମଧ୍ୟ ନଥାଏ ପାଖ ଆଖ ଗାଁରେ । ଲୋକଟି ବି ଗରିବ, ପଇସା କାହୁଁ ପାଇବ ଯେ ! ଅତଏବ କେତେକ ଚିକିତ୍ସା ବିନା ପଇସାରେ ବି ହେବ । ଏତକ କଷ୍ଟ

ସ୍ୱୀକାର କରି, ଶ୍ରମ ସ୍ୱୀକାର କରି କେନ୍ଦ୍ରରସେବିକାଟିଏ ଆର ଗାଆଁରେ ପହଞ୍ଚିବ ଓ ଯଥାସାଧ୍ୟ ସାହାଯ୍ୟ କରିବ। ଅନ୍ଧାର ଭିତରେ, ଅସହାୟତା ଭିତରେ ଏଇ ଗାରେକ ଆଲୋକ ଓ ମୁଠାଏ ଆଶ୍ୱାସନା କ'ଣ କମ୍ ବଡ଼ କଥା ?

ଆଜି ତାଙ୍କ ଶ୍ରାଦ୍ଧସଭାରେ କଲେଜ ଛାତ୍ରୀମାନଙ୍କ ସମକ୍ଷରେ ତାଙ୍କ ବ୍ୟକ୍ତିତ୍ୱ ଓ ସାଧନା ସଂପର୍କରେ ସାମାନ୍ୟ ସୂଚନା ଦେବାକୁ ଗଲାବେଳେ, ମନକୁ ଆସେ ଯେ, କାହିଁକି ଏସବୁ ଆଲୋଚନା କରୁଚି, କାହାକୁ ବା କହୁଚି ? ବିଶ୍ୱାସ କରିବ କିଏ ? ଏପରି ମଣିଷ ଏ ମାଟିରେ କିଏ ଅଛନ୍ତି, ଯାହାଙ୍କଠାରେ ସ୍ୱାର୍ଥନାହିଁ, ଯଶଲିପ୍ସା, କ୍ଷମତା ଲୋଭ ନାହିଁ ? ଗଦାଏ ସୁନା ଅଳଙ୍କାର ଓ ପାଟଶାଢ଼ୀକୁ ଆଡ଼େଇ ଦେଇ ପିନ୍ଧିଲେ ଅଣ ଓସାର ଖଦି ଖଣ୍ଡେ। ଏମିତି କ'ଣ ହୋଇପାରେ ? ଏକବିଂଶ ଶତାବ୍ଦୀରେ କିଏ ବିଶ୍ୱାସ କରିବ ଏକଥା ? କେହି ଯଦି ବିଶ୍ୱାସ ନକରନ୍ତି, ଅନୁପ୍ରାଣିତ ହେବାର ପ୍ରଶ୍ନ ବି କାହିଁକି ଆସିବ, ଶୁଣିବେ ? ବିଶ୍ୱାସ ଯିବେ ନାହିଁ, କେହି ବିଶ୍ୱାସ କଲେ ବି ଆଚରିବାର ସାହସ ବା କଷ୍ଟକୁ ବରଣ କରିବେ ନାହିଁ। ଅତଏବ କାହିଁକି ଆଉ ମହାଦୀପର ମହତ୍ତ୍ୱ ସଂପର୍କରେ ଆଲୋଚନା ? ପୁଣି ଭାବେ, ଝିଅମାନେ ବିଶ୍ୱାସ ଯିବେ ନାହିଁ ବୋଲି, ଆଚରି ପାରିବେ ନାହିଁ ବୋଲି କ'ଣ ମହାନ ତ୍ୟାଗକୁ, ନିଃସ୍ୱାର୍ଥ ସେବାକୁ ଆମେ ସମ୍ମାନ ଦେବା ନାହିଁ ? ସ୍ମରଣରେ ଆଣିବା ନାହିଁ ? କିଏ ଜାଣେ ଏଇ ଛାତ୍ରୀମାନଙ୍କ ଭିତରୁ କେହି ଜଣେ ହୁଏତ ଦିନେ ଅନୁପ୍ରାଣିତ ହେବାର ଆଗ୍ରହକୁ ମାନିନେବ-ସାଧନାର କଠୋରତାକୁ ଭୋଗିବାକୁ ପ୍ରସ୍ତୁତ ହେବ।

ଏ ଯୁଗର ଧର୍ମ ବଦଳି ଯାଇଛି, ଭୟଙ୍କର ସ୍ୱାର୍ଥପର ହୋଇ ଚାଲିଛି, ଏହାସତ। କିନ୍ତୁ ସେଇ ସ୍ୱାର୍ଥର ପ୍ରବାହରେ ଭାସିଗଲାବେଳେ ଯଦି ଜଣେ କେବେ କ୍ଳାନ୍ତ ହୋଇପଡ଼େ, ଭିନ୍ନ ଭିଛି ରାହା ଖୋଜେ, ସେତେବେଳେ ସେବା-ମନ୍ଦିରର ଚୂଡ଼ାରେ ଜଳି ରହିଥିବା ସେ ମହାଦୀପକୁ ଅନାଇଁ ତାର କ'ଣ ମନୋବଳ ଫେରିବ ନାହିଁ ? ସେ କ'ଣ ମହାଦୀପର ନିକଟବର୍ତ୍ତୀ ହେବାକୁ ଆଶା କରିବ ନାହିଁ ? ଯଦି ଏହି ସଂଭାବନା ଅମୂଳକ ନୁହେଁ, ଯଦି ଗୋଟିଏ ବି ଝିଅ ତାର ଭାବି ଜୀବନରେ ଏହି ଆଦର୍ଶରେ ଅନୁପ୍ରାଣିତ ହୋଇପାରେ, ତେବେ 'ମହାଦୀପ'ର ପୂଜା କଦାପି ବ୍ୟର୍ଥ ଯିବ ନାହିଁ। ଶାଢ଼ୀଟିଏ, ଗହଣାଟିଏ ପାଇଲେ ଝିଅଟିଏ, ସ୍ତ୍ରୀଲୋକଟିଏ ଉଲ୍ଲସିତ ହୋଇଉଠେ। ସାଇତି ରଖେ, ଆହୁରି ଆହୁରି ପାଇବାର ଆଶା ବଢ଼ିଚାଲେ ତା'ର। ମାତ୍ର ଏପରି ଯେଉଁ ଉଲ୍ଲାସ, ଯାହା ଗଦାଏ ଆୟ ଅଳଙ୍କାର ଓ ପାଟ ପୀତାମ୍ବରୀକୁ ଆଡ଼େଇ ଦେଇ, ଦାଣ୍ଡକୁ ଯାଇ କୁଡ଼ିଆ ଘର ସାମ୍ନାରେ ଠିଆ ହେଲେ, ପଥି ମୁଠାଏ ହାତରେ ଧରି 'ଆହା' ପଦ ତୁଣ୍ଡରେ ରଖିଥିଲେ ମିଳେ, ସେହି ଉଲ୍ଲାସ ନିଶ୍ଚୟ ଭିନ୍ନ ଧରଣର, ଅଲଗା, ନିଶ୍ଚୟ ଅଧିକ ମୂଲ୍ୟବାନ।

କିଏ ଜାଣେ, ଏମିତି ଗୋଟିଏ ସମ୍ଭାବନା ହୁଏତ ଜଣେ ନାରୀର ଜୀବନରେ ଆସିପାରେ। ତା'ପରେ ସେ ବି ମହାଦୀପ ପରି ଜଳିବାର ସଂକଳ୍ପ ନିଏ। ସେ ଜଣେ ମାତ୍ର ହେଲେ ବି ଯଥେଷ୍ଟ। ରମାଦେବୀ ଜଣେ ମାତ୍ର ନଥିଲେ କି ? ସେବିକାଙ୍କର ନେତ୍ରୀ।

ନେତା ବା ନେତ୍ରୀ ତ କେବଳ ଜଣେ ହିଁ । ତାଙ୍କର ଦିଗ୍‌ଦର୍ଶନ, ପରାମର୍ଶରେ ଓଡ଼ିଶାର ଅନୁନ୍ନତ ଅଞ୍ଚଳରେ, ନିପଟ, ଗାଁ ଗଣ୍ଡାରେ କେତେ କେଜାଣି ମହିଳାକର୍ମୀ ରହିଛନ୍ତି, କାମ କରୁଛନ୍ତି, ସେବାରେ ନିୟୋଜିତ ଅଛନ୍ତି ।

ସେହି ମହୀୟସୀଙ୍କ ସହ ମୋର ପତ୍ରାଳାପ ହୋଇଛି କେତେ ଥର । ଗ୍ରାମାଞ୍ଚଳର କୌଣସି ଅସହାୟା ମହିଳାର ଥଇଥାନ କଥା ତାଙ୍କୁ ଲେଖିଥିବି । ତାଙ୍କର ଉତ୍ତରରେ ଥିବ ବିଚାର, ବୁଝାମଣା ଓ ଗଭୀର ସହୃଦୟତା । ସେ ଲେଖିଥିବେ, ପାଠ ବେଶି ନ ପଢ଼ିଲେ ବି ମହିଳାଟି ଯଦି ଦାୟିତ୍ୱ ନେଇ କାମ କରିପାରିବ, ତେବେ ଯଥେଷ୍ଟ । ତୁମେ କେନ୍ଦ୍ରର ଅନ୍ନପୂର୍ଣ୍ଣା ମହାନ୍ତିଙ୍କୁ ତ ଜାଣ, ସେ କେତେ ପାଠ ପଢ଼ିଛନ୍ତି ? ଅଥଚ କେତେ କର୍ମ କୁଶଳୀ ! ସେହିପରି ମହିଳା ହେଲେ, ଆମର ଚଳିବ । ଶେଷକୁ ସେ ଲେଖନ୍ତି 'ରମାଦେବୀର ଆଶୀର୍ବାଦ' ।

ଯେତେ ଅନ୍ୟମନସ୍କ ହେଲେ ବି ଥରେ ଅଧେ ମହାଦୀପ ଆଡ଼କୁ ମୁଁ ଯେ ନ ଅନାଇଁଛି, ନୁହେଁ । ତା ଦିଗକୁ ଅଗ୍ରସର ହେବାକୁ ମନ ନ ବଳାଇଛି, ତା ମଧ୍ୟ ନୁହେଁ । ହେଲେ ସର୍ବୋଦୟରେ ରାଜ୍ୟସ୍ତରୀୟ କମିଟିର ସଭ୍ୟା ରହି ମଧ୍ୟ ତାର ସବୁ କ୍ରିୟାକଳାପରେ ଯୋଗଦେଇ ପାରିନାହିଁ । ଥରେ ଅଧେ ଯୋଗଦେଇ ନିଷ୍କୃତି ଲୋଡ଼ିଛି । ସାମାନ୍ୟ ଅର୍ଥ କେବେ ବା ସାହାଯ୍ୟ ଦେଇଛି । ସେ କିଛି ନୁହେଁ, ସମୁଦ୍ରକୁ ଶଙ୍ଖେ । ବସ୍‌ରେ ବସି, ଟ୍ରେନ୍‌ଚଢ଼ି ସମ୍ୱଲପୁର, ବଲାଙ୍ଗୀର, କୋରାପୁଟ ଯିବା କଥା ହୋଇ ପାରିନାହିଁ । କେନ୍ଦ୍ରରେ ରହିବା, ଖାଇବା ଦେହରେ ଗଲାନାହିଁ, ପାରିଲି ନାହିଁ । ମନକୁ ଆସେ କିଛି ସେବାକାର୍ଯ୍ୟ କରନ୍ତି । କି ବିଡ଼ମ୍ବନା ! କଥାଠାରୁ କର୍ମ ସର୍ବଦା ବଡ଼ । ଭାବନାର ମୂର୍ତ୍ତ ରୂପ ହେଉଛି କର୍ମ । ମାତ୍ର ମୁଁ ସେ ପ୍ରକାର କର୍ମ-ପରାଂମୁଖ । ଆଜିକାଲି, ବୟସ ବଢ଼ିବା ସହ ଶାରୀରିକ ଶକ୍ତିର ଅସହଯୋଗ ସତ୍ତ୍ୱେ ମନରେ ଆସେ, ମୁଁ କିଛି ସେବାକାର୍ଯ୍ୟ କରନ୍ତି କି । ସବୁବେଳେ ପଛବୁଦ୍ଧିଆ ମୁଁ । କେବେ କେଜାଣି ମନକୁ ମନ ଟାଣି ହୋଇଯିବି, କହିହେବ ନାହିଁ । ସମ୍ଭାବନାଟି ଦୂରବର୍ତ୍ତୀ ନୁହେଁ କଦାପି । ମୋ ପାଇଁ ବା ଅନ୍ୟ କାହାରି ପାଇଁ ମଧ୍ୟ । ମହାଦୀପ ଜଳୁଛି ଯେତେବେଳେ, କୋଉଠି ନା କୋଉଠିକୁ ତ ଆଲୋକିତ କରୁଛି, କାହାକୁ ନା କାହାକୁ ତ ଆଶା ଭରସା ଦେଉଛି । ଜଣେ ବି ଯଦି ତହିଁରୁ ଆଲୋକ ପାଇ ଉପକୃତ ହୁଏ, ତାହା କ'ଣ କମ୍ ସାର୍ଥକତା ? ସେଇ ମହାଦୀପକୁ ଟିକେ ତେଜି ଦେବାର କର୍ମଟି କରାଯାଉ । ତେଲ ଟିକିଏ ଢ଼ାଳିପାରିଲେ ଆହୁରି ବଡ଼ କଥା ।

❑❑❑

# ଭାରତ ମାତାର ଲୁହ

ୟୁନିଫର୍ମ ପିନ୍ଧା ବାଳକ ବାଳିକା ଧାଡ଼ି ଧାଡ଼ି-ଅଗ୍ରଭାଗରେ ଜାତୀୟ ପତାକା, ପଟୁଆର କଣ୍ଠରେ 'ସାରେ ଜହାଁ ସେ ଆଚ୍ଛା.. ଶୀତସକାଳ, ଫିକା ଫିକା କୁହୁଡ଼ି ଭିତରେ କୋମଳ ଦୃପ୍ତ ଧ୍ୱନିର ତରଙ୍ଗ ଧୂପକାଠିର ଧୂଆଁଭଳି ମୋଡ଼ି ମୋଡ଼ି ମୋଡ଼ି ଉଠିଯାଇଥିବ ଉପରକୁ । ଏତିକିବେଳେ ଦିଶିଯାଏ ମୋର ପିଲାଦିନ, ବହୁ ପଛରେ ଛାଡ଼ି ଆସିଥିବା ଏକ ଦୃଶ୍ୟ । ସତ୍ୟାଭାମାପୁର ଗାଁ ପ୍ରଭାତଫେରି । ରାମଧୂନ ଗାଇ ଗାଇ ସାରାଟା ଗାଆଁ ଘୂରିବୁଲୁ ଓ ତା'ପରେ ସ୍କୁଲ ସାମ୍ନା ପଡ଼ିଆରେ ଜାତୀୟପତାକା ଉତ୍ତୋଳନ । ଠିକ୍ ସେହିପରି ଉତ୍ସାହରେ ଦେଶ ମାତୃକାର ଜୟଗାନ କରି କରି ଚାଲୁଥିଲେ ସ୍କୁଲର ଛାତ୍ରଛାତ୍ରୀ ପଟୁଆର ବାନ୍ଧିଥିଲେ ଟାଉନହଲଯାଏ । ସେଠାରେ କଲେକ୍ଟର ପତାକା ଉତ୍ତୋଳନ କରିବେ । ପିଲାଏ ଯୋଗଦେବେ, ତା'ପରେ ମିଠେଇ ଖିଆର ପାଳି । ପାଦତଳେ ମାଟି, ମାଟିତଳେ ହୀରାଖଣି । କଣ୍ଠରେ ଗୌରବଦୀପ୍ତ ସଂଗୀତ, ହାତରେ ଜାତୀୟପତାକା । କିଏ ଜାଣେ ସେମାନେ ବଡ଼ହୋଇଥିଲେ ହୁଏତ ଶହୀଦ ହୋଇଥାନ୍ତେ, ଯୁଦ୍ଧ ଘନଘଟାରେ ଥରୁଥିବା ପୃଥିବୀର ଭବିଷ୍ୟତକୁ କିଏବା ଆକଳନ କରିପାରିବ ? କିନ୍ତୁ ଭାରତମାତାର ବିଭଶାଳୀ ପ୍ରତ୍ୟଙ୍ଗଟିଏ ସେଦିନ ଦୋହଲିଗଲା । ନିତାନ୍ତ ଅପ୍ରସ୍ତୁତ ଭାବରେ ଆଖି ପିଛୁଡାକେ ଚାରିଶହ ବାଳକ ବାଳିକା ଭୂସମାଧି ନେଲେ ।

ଗୁଜରାଟ ରାଜ୍ୟସ୍ଥିତ ଅଞ୍ଜାର ସହରର ଅଣଓସାରିଆ ରାସ୍ତା-ଦୁଇକଡ଼ରେ ସୁଉଚ୍ଚ ପ୍ରାସାଦ-ବାସୁକୀ କଡ଼ଲେଉଟାଇଲା ପରି ପୃଥ୍ୱୀମାତାର ଛାତି ଥରିଉଠିଲା । ଓଲଟପାଲଟ ହୋଇଗଲା ସବୁକିଛି । ରାସ୍ତା ଦୁଇକଡ଼ରେ ଥିବା ସୁବୃହତ୍ ପ୍ରାସାଦମାନ ଭୁଷୁଡ଼ି ପଡ଼ିଲା ବାଳକବାଳିକାଙ୍କ ପଟୁଆର ଉପରେ । ଭଙ୍ଗା ଭୁଷୁଡ଼ାର ଉଚ୍ଚା ହେବ ପ୍ରାୟ ୧୫ ଫୁଟ ପର୍ଯ୍ୟନ୍ତ । ଗଦା ହୋଇ ପଡ଼ିଚି ସିମେଣ୍ଟ, କଂକ୍ରିଟ, ଇଟା ପଥର ଓ ଘରମାନଙ୍କର ଆସବାବ ପତ୍ର । କଅଁଳ ସୁକୁମାର ଦେହଗୁଡ଼ିକ ପୋତି ହୋଇ ପଡ଼ିଛନ୍ତି ନିଦାରୁଣ ଭାବରେ । ରକ୍ଷା ପାଇଯାଇଥିବା ଶିକ୍ଷକ କହନ୍ତି, ସେ ଛିଡ଼ାହୋଇ ଯାଇଥିଲେ ରାସ୍ତାକଡ଼ରେ ଏପରି ଏକ ସ୍ଥାନରେ ଯେ, ଭାଗ୍ୟବଶତଃ ବଞ୍ଚିଯାଇଛନ୍ତି । ତାଙ୍କ ଉପରେ ଭଙ୍ଗା ଭୁଷୁଡ଼ା କିଛି ନ ପଡ଼ିଛି ନୁହେଁ, ମାତ୍ର ଘଣ୍ଟାଏକାଳ ପରିଶ୍ରମରେ ସେ ତା ତଳୁ ବାହାରି ପଡ଼ିଛନ୍ତି । କ୍ଷତାକ୍ତ, ରକ୍ତାକ୍ତ

ନିଶ୍ଚୟ, ମାତ୍ର ମାରାତ୍ମକ ଭାବେ ନୁହନ୍ତି । ଶିକ୍ଷକ ଜଣକ କହନ୍ତି, ମୁଁ ବାହାରି ସାରିଲା ବେଳକୁ ବି ସଂସଦ୍ଭୂପତନ୍ତୁ ଚିତ୍କାର ଶୁଭୁଥାଏ । କାହାର ସେ ଚିତ୍କାର ? ଯାଠାରୁ ଦାରୁଣତର ଚିତ୍କାର ଆଉ କେହି କେବେ ଶୁଣିଥିବ କି ? ବୋଧେ ନୁହେଁ, ଶିକ୍ଷକ ଜଣକ ନିରୁପାୟ । ବଞ୍ଚିଯାଇଛନ୍ତି ସତ, ହେଲେ ଛାତିଫାଟି ଯାଉଥିବ ତାଙ୍କର ଭୂମିକମ୍ପରେ 'ଭୁଜ'ଠାରେ ମାଟି ଫାଟି ଆଁ କଲାପରି । ଆମେ କେତେ ଅସହାୟ, କିଂ କର୍ତ୍ତବ୍ୟବିମୂଢ଼ ସତେ ! ଯିଏ ତତ୍‌କ୍ଷଣାତ୍ ମୃତ୍ୟୁ ଲଭିଲେ ତ ରକ୍ଷାପାଇଗଲେ, ଯିଏ ତଥାପି ପ୍ରାଣଧରିଥିଲେ, ଚିତ୍କାର କରୁଥିଲେ, ଯାହାଙ୍କୁ ଉଦ୍ଧାର କରାଯାଇ ପାରିଲା ନାହିଁ, ତାଙ୍କ ଦୁର୍ଭାଗ୍ୟର କଳନା କରିବା ମଣିଷ ପକ୍ଷରେ ଅସମ୍ଭବ ନିଶ୍ଚୟ । କାହିଁକି ଏସବୁ ଘଟେ ? ନିଷ୍ପାପ କଳିକାମାନେ ଏମିତି ଛିଣ୍ଡିପଡ଼ନ୍ତି ଡେମ୍ଫରୁ, ଦଳିମକଚି ହୋଇଯାଆନ୍ତି ? ସତେ କ'ଣ ଈଶ୍ୱର ବି ଏପରି ମୃତ୍ୟୁରେ ଖୁସି ହୁଅନ୍ତି ? କିଏ ଉତ୍ତର ଦବ ? ପ୍ରାରବ୍ଧ ବି ନିରୁତ୍ତର, କ୍ରିୟମାଣ ଅସହାୟ, ଶବ୍ଦମାତ୍ରେ 'ଆହା' ସ୍ଫୁରିପାରେ, ନ ହେଲେ ନିଃଶବ୍ଦ ହାହାକାରରେ ବିଦୀର୍ଣ୍ଣ ହୋଇଯାଇପାରେ ହୃଦୟ ।

ଐଶ୍ୱର୍ଯ୍ୟମୟୀ ସେହି ଭୂମି, ଭାରତମାତାର ସୁସମୃଦ୍ଧ ଅଂଶ, ଯେଉଁଠାରେ କବି ନରସିଂହ ମେହେଟ୍ଟା ଲେଖିଥିଲେ 'ବୈଷ୍ଣବଜନ ତୋ ତେନେ କହିଯେଁ ଯେ, ପୀଡ଼୍ ପରାୟେ ଜାଣେରେ...' ସେହି ଭୂମି ଉପରେ ହିନ୍ଦୁସ୍ଥାନର ଗୁଣଗାନକରି, ମାଆର ବନ୍ଦନା ଗାଇ ମୃତ୍ୟୁ ଲଭିଲେ ବାଳକ ବାଳିକାମାନେ ପାପପୁଣ୍ୟ, ନ୍ୟାୟ ଅନ୍ୟାୟ ବିଚାରବୋଧର ଊର୍ଦ୍ଧ୍ୱରେ ଜୀବନକୁ ଭଲପାଇ, ପ୍ରକୃତିକୁ ନିରୀକ୍ଷଣ କରି ବଢ଼ିଉଠୁଥିବା ପିଲାମାନେ ଅକାଳମୃତ୍ୟୁ ଲଭିଲେ । ସେମାନଙ୍କ ବାପା ମାଆ କି ହୃଦୟବିଦାରକ ଯନ୍ତ୍ରଣାରେ ପ୍ରାଣଧରି ରହିଥିବେ କେଜାଣି ।

ସ୍ଫୁଟନୋନ୍ମୁଖ ପ୍ରାଣ ! କୁନି କଳିକାମାନେ ! ମାନବ ଇତିହାସରେ ତୁମମାନଙ୍କ ପ୍ରାଣନାଶର ପଟାନ୍ତର ନାହିଁ । ଯେ ତ ମନୁଷ୍ୟକୃତ ବର୍ବରଲୀଳା ନୁହେଁ । ଯେ ପ୍ରକୃତିର ତାଣ୍ଡବ । କେତେ କେଜାଣି ସମୁଦ୍ର, ନଦୀ, ପାହାଡ଼ପର୍ବତ ଜନପ୍ରାଣୀ ବୁକୁରେ ଧରି ବିରାଟ ଏକ ବିମାନ ଭଳି ଶୂନ୍ୟରେ ଘୂରୁଥିବା ଆମ୍ଭର ଏଇ ପୃଥିବୀ ହଲ୍‌ଚଲ୍ ହେଲା- ଲିଭିଗଲା କେତେ କେଜାଣି ଜୀବନଦୀପ, ଗଣତନ୍ତ୍ରର ବିଜୟ ଉତ୍ସବରେ ସାମିଲ ହେବାକୁ ଯାଉଥିବା ନିଷ୍ପାପ ବାଳକ ବାଳିକା ଗଣ ପ୍ରାଣତ୍ୟାଗ କଲେ । ପ୍ରକୃତି ବିଚାରହୀନ ହୋଇ 'ଦୁଷ୍ଟ ନିବାରି ସନ୍ଥ ପାଳୁ' ନୀତିଟିକୁ ଭୁଲିଗଲା ହୁଏତ । କିନ୍ତୁ ଆମେ ଭୁଲିବା ନାହିଁ, ସେହି ବାଳକବାଳିକାଙ୍କ ଭୂମିଶଯ୍ୟାକୁ ଚୁମ୍ବନ କରିବା ନିମିତ୍ତ । ପ୍ରାର୍ଥନା କରିବା ଯେ, ପୃଥିବୀରେ କଦାପି, କୁତ୍ରାପି ଏହିଭଳି ଭୟଙ୍କର ସଂହାର ନ ଘଟୁ । ଭୂମିମାତା, ତୁ ଆଉଥରେ ସେହି ଶିଶୁ, କିଶୋରଙ୍କୁ ଆମ ନିକଟକୁ ଫେରାଇ ଦେ' ଦୀର୍ଘଜୀବନ ଦେଇ, ସାହସୀ ଓ ଦେଶବତ୍ସଳ କରି । ସେମାନେ 'ହିନ୍ଦୁସ୍ଥାନ ସବୁଠୁଁ ଭଲ...' ଗାଇ ଚାଲନ୍ତ । ଭାରତମାତାର ଆଖି ଲୁହ ଛଳଛଳ ହେଲେ ବି ଗୌରବରେ ଉଜ୍ଜ୍ୱଳ ହୋଇଉଠୁଥାଉ ।

❑❑❑

# ତାଆରି ପାଇଁ

କିଏ ମୋର ପ୍ରିୟ ପାଠକ ? ଲିପିବଦ୍ଧ ଶବ୍ଦ ଜଗତରେ ଯେ ସାନ୍ତ୍ୱନା ଖୋଜେ, ଆନନ୍ଦ ଖୋଜେ, ସେ ମୋର ପ୍ରିୟ ପାଠକ । ନିର୍ଦ୍ଦିଷ୍ଟ କୌଣସି ବ୍ୟକ୍ତିକୁ ତ ଚିହ୍ନାଇ ହେବ ନାହିଁ । ଯେଉଁ ତରୁଣ ତରୁଣୀ ମୋ କବିତାରୁ ଦି ଧାଡ଼ି ଉଦ୍ଧାର କରି ମୁଗ୍ଧ ହୋଇ ଚିଠି ଲେଖନ୍ତି, ଯେଉଁ ପ୍ରଫେସର ଲେଖିଛନ୍ତି । ''ଆପଣଙ୍କ 'ଶବରୀ' କାବ୍ୟ ପୁରୁଷକୁ ମର୍ଯ୍ୟାଦାବନ୍ତ ହେବା ନିମିତ୍ତ ଅନୁପ୍ରେରିତ କରେ'' ଯେଉଁ ମହିଳା କହିଥାନ୍ତି, ''ଆପଣ ମୋ ମନ କଥା କହିଦେଲେ'' ''ଆପଣ ମୋ କଥା ଲେଖୁଛନ୍ତି ବୋଧେ । ଯେଉଁ ସହ କବି, ବୟୋଜ୍ୟେଷ୍ଠ କବି ଲେଖନ୍ତି । ''ତୁମ ପରି ମୁଁ ଲେଖି ପାରନ୍ତି କି....'' ବା ଟେଲିଫୋନ୍‌ରେ ଅଭିନନ୍ଦନ ଜଣାନ୍ତି । ଏତେ ଭଲ ଚିତ୍ର, 'ଏତେ ସମର୍ଥ ଶବ୍ଦ- କିଏ କିଏ ଅତିରଞ୍ଜନ କରି କହି ଦିଅନ୍ତି 'ତୁମେ ସାକ୍ଷାତ ସରସ୍ୱତୀ,'' ଆଉ ଯିଏ ଲେଖନ୍ତି ''ପ୍ରଜ୍ଞା ବେଗ ସମନ୍ୱିତ ଏପରି ନାରୀୟ ଉପଲବ୍ଧିର ଉଚ୍ଚାରଣ... ମଧ୍ୟରୁ କିଏ ମୋର ସବୁଠାରୁ ପ୍ରିୟ ପାଠକ ? ଅନ୍ୟ କେହି ବି ପ୍ରଶ୍ନ କରନ୍ତି । ''ତୁମେ ଏତେ ଗଭୀରତାକୁ ବୁଡ଼ିଯାଅ, ପୁଣି ଏଇ ସଂସାରରେ ରହିଥାଅ କେମିତି ?'' 'ଯେ କବିତା ଯାହା ପାଇଁ ଲେଖିଛ ସେ ଯଦି ପଢ଼ନ୍ତା, ଯେ କବିତାର କାରୁଣ୍ୟରେ ସେ ମରିଯାଆନ୍ତା ।'' ଏଥି ମଧ୍ୟରୁ କାହାର ସମଦର୍ଶିତାକୁ ଶ୍ରେଷ୍ଠ ବୋଲି ନିର୍ଦ୍ଧାରଣ କରିବି ? ଜଣକୁ ନିର୍ଦ୍ଧାରଣ କରି ବସିଲେ, ଅନ୍ୟ ମାନଙ୍କର ମୋ ସହ ଏକାତ୍ମତାର ଅମର୍ଯ୍ୟାଦା ହବ କାଳେ ।

ଆଜିଠାରୁ ୨୨ ବର୍ଷ ତଳେ ଯେଉଁ ତରୁଣପାଠକ ମୋତେ ଚିଠିଟିଏ ଲେଖିଥିଲେ, 'ଆପଣ ଏତେ ସଂଖ୍ୟାରେ କବିତା ଲେଖୁଛନ୍ତି କାହିଁକି ? ଭାବୁ ନାହାନ୍ତି କି ସୃଜନ କର୍ମରେ ଗର୍ଭଧାରଣ ଠାରୁ ଜନ୍ମହେବା ପର୍ଯ୍ୟନ୍ତ କେତେଦୀର୍ଘ ସମୟ ପ୍ରାୟ ୯ ମାସ ଲାଗେ ? ଗୋଟିଏ କବିତା ସଂରଚନା ପାଇଁ ଅଧିକ ସମୟ ଦିଅନ୍ତୁ ବୋଲି ମୋର ଅନୁରୋଧ ।'' ତା ମତ ବି ଭୁଲି ନାହିଁ । କେତେଜଣ ସମବୟସ୍କା ଲେଖିକା ପ୍ରାୟ ଏକ ପ୍ରକାର ପ୍ରତିକ୍ରିୟା ଜଣାଇଲେ, 'ଶବରୀ' ପ୍ରକାଶନ ପରେ ପରେ ଦୁହେଁ ଫୋନ୍‌ରେ କହିଥିଲେ, ଯାହା କହିଥିଲେ, ତାହା ମର୍ମ ଏଇଆ ହେବ- ''ଶବରୀକୁ ମୁଁ ତକିଆ ତଳେ ରଖି ଶୋଉଛି । ମନ ହେଲେ କୋଉ ପୃଷ୍ଠାରୁ କିଛି କିଛି ପଢ଼ିନେଉଛି ।''

ପରେ, ପୁଣି ୨୦୦୦ ମସିହା ଶେଷବେଳକୁ ଗୋଟିଏ ପାଠିକା ପାଇଲି ଆକସ୍ମିକ ଭାବରେ-ଖୁବ୍ ନାଟକୀୟ ପରିସ୍ଥିତିରେ । ମୋର ଜଣେ ବାନ୍ଧବୀ ଚିଫ୍ ଇଞ୍ଜିନିୟରଙ୍କ ପତ୍ନୀ । ତାଙ୍କ ବଡ଼ ପୁଅ ବିଭାଘରରେ କଟକ ଯାଇଥାଏ ମୁଁ । ବୋହୂ ଏମ୍. ବି.ଏ ପାସ୍ କରିଛି, ପୁଣି ଲେଖା ଲେଖି ବି କରେ ବୋଲି ଶୁଣିଥିଲି । ଖୁବ୍ ସୁନ୍ଦରୀ ବୋହୂଟି । ଶ୍ୱଶୁର କହିଲେ, ''ଆପଣ ବୋହୂ ପାଖରେ ବସନ୍ତୁ, ଫଟୋ ନିଆଯିବ ।'' କିଛି ସମୟ ବସିଲି । ଫଟୋ ଉଠିଲା; ମଝିରେ କେହି ଜଣେ ଆସିଲେ ଓ ମୋତେ ବୋହୂ ପାଖରେ ଚିହ୍ନଟ କରେଇଦେଲେ ।'' ଯେ ପ୍ରତିଭା ଶତପଥୀ, କବିତା ଲେଖନ୍ତି ।'' ବୋହୂ କହି ପକାଇଲା-'' ଆପଣ 'ଶବରୀ' ଲେଖିଛନ୍ତି- ଅଥଚ ଏ ଯାଏଁ ମୋତେ କେହି କେମିତି ଚିହ୍ନା କରେଇ ନାହାନ୍ତି ''- ଏହାପରେ ସେ ମନ୍ତ୍ରସିଦ୍ଧା ବିଭାଗର କବିତା ଦୁଇ ଧାଡ଼ି ଆବୃତ୍ତି କରି ପକାଇଲା- ''ଧୂଳିରେ ତୁମର ପାଦ ଚିହ୍ନକୁ ଦେଖିଲି/ଏମିତିକା ନୂଆ ପାଦ ଚିହ୍ନ ଯେ ଯେ/ ଅନ୍ଧାର କଦାପି ଯାକୁ/ ଲୁଚେଇ ପାରିବ ନାହିଁ/ପବନର ଶକ୍ତି କାହିଁ ଏ ଚିହ୍ନକୁ ଢ଼ାଙ୍କିଦେବ/ ଧୂଳି, ଝଡ଼ା ପତ୍ରକୁ ଉଡ଼ାଇ'' ମୁଁ ଅଭିଭୂତ ହୋଇପଡ଼ିଲି ।

ଯେତେବେଳେ ୧୫/୧୬ ବର୍ଷ ବୟସରେ ବି ପ୍ରଜାତନ୍ତ୍ର 'ନାରୀଜଗତ'ରେ ପ୍ରକାଶିତ ମୋର କବିତା ପଢ଼ି କେତେ କେଜାଣି ପାଠକ ଚିଠି ଲେଖୁଥିଲେ , ରେଭେନ୍‌ସା କଲେଜ ଆଇ.ଏସ୍.ସି କ୍ଲାସକୁ ପଶିଲାବେଳକୁ ସହପାଠୀମାନେ ବ୍ଲାକ୍‌ବୋର୍ଡ଼ରେ ସଦ୍ୟ ପ୍ରକାଶିତ କବିତାରୁ ଚାରି ଧାଡ଼ି ଲେଖି ଦେଇଥାଆନ୍ତି । କାହାକୁ କହିବି ପ୍ରିୟ ପାଠକ ? ଏ କଥା ସତ ଯେ, ୩୦ ବର୍ଷର କବିତା ରଚନାର ସାଧନା ନିମିତ୍ତ ଯେତିକି ଉଚ୍ଛ୍ୱସିତ ଅଭିନନ୍ଦନ ମିଳିଛି, ୮/୧୦ ବର୍ଷର ଗଦ୍ୟରଚନା (ବିଶେଷ କରି ସ୍ମୃତିଲିପି ରଚନା) ନିମିତ୍ତ ମଧ୍ୟ ଅନୁରୂପ ଅଭିନନ୍ଦନ ମିଳିଛି । ଖୁବ୍ ବେଶି ସଂଖ୍ୟକ ପାଠକ ଗଭୀର ଓ ଉନ୍ନତ ଉପଲବ୍ଧିର ଜଗତକୁ ପ୍ରବେଶ କରି ପାରନ୍ତି ନାହିଁ । ତଥାପି ହୃଦୟର ଉଲ୍ଲାସକୁ ଯେଉଁ ପାଠକ ବଢ଼ାଇଦେଇଛି, ତାକୁ ହୃଦୟ ପ୍ରସାରି ଗ୍ରହଣ କରିବାରେ ମୋର ଆନନ୍ଦ । କେଉଁ ପାଠକର ନାମ କହିବି, କବିତା, ସ୍ମୃତିଲିପି ନାଁ ପ୍ରତିଫଳନ ମୂଳକ ଫିଚରଗଚ୍ଛ ରଚନାର ପାଠକଙ୍କ ନାମ ? ଅତଏବ ନାମହିଁ ଗୋଟିଏ - 'ପାଠକୀୟ ପ୍ରିୟତା' । ଏହି ପାଠକୀୟ ରସଆସ୍ୱାଦନକୁ ବିଖ୍ୟାତ୍ କବି କୁମାରନ୍ ଆସନ କହିଥିଲେ ''ଏହି ରସାସ୍ୱାଦନ ହିଁ କବିର ସୁକୃତ ଏହା ବ୍ୟତୀତ ଶ୍ରେୟ ସୁକୃତ ଅନ୍ୟ କିଛି ନାହିଁ । ଏବଂ କବି ମଧ୍ୟ ଅନ୍ୟ କିଛି ପାଇଁ ଆଶାୟୀ ନ ହେବା ବିଧେୟ ।''

ତଥାପି, କବିତା ହିଁ ମୋର ସୃଜନଶୀଳତାର ପରିଚୟ, ମୋର ଗଭୀର ଆତ୍ମ ଅନ୍ୱେଷଣ-ନିଃସୃତ । ମୋ କବିତାର ଜଗତରେ ପ୍ରବେଶ କରି କରୁଣ ଭାବାବେଗ ଖୋଜୁ ଖୋଜୁ ଯିଏ ଆପଣା ହୃଦୟର ସମର୍ଥନ ପାଇ ନିଜକୁ ମୁକ୍ତ ମନେ କରନ୍ତି, ନିଜ ହୃଦୟର ପ୍ରତିଫଳନ ଦେଖି ବିଭୋର ହୁଅନ୍ତି, ତୀକ୍ଷ୍ଣ ପୀଡ଼ାରେ ମୁହୂର୍ତ୍ତେ ରୁଦ୍ଧଶ୍ୱାସ ହୋଇ ପଡ଼ନ୍ତି - ସେମାନେ ହି ମୋର ପ୍ରିୟ ପାଠକ । ଭଲ ବହିଟିଏ ପାଇଲେ, ସେମାନେ କୋଟିନିଧି

ପାଆନ୍ତି ସତେ କି ! ଅବଶ୍ୟ ପାଠକଗଣ କବିତାଟିକୁ ଗ୍ରହଣ କଲାବେଳେ କବିର ଅଭିବ୍ୟକ୍ତିକୁ ନିଜ ସାମର୍ଥ୍ୟ ଅନୁସାରେ ବିଭିନ୍ନ ସ୍ତରରେ ଉପଲବ୍ଧି କରିଥାନ୍ତି । କବିତାରେ ସ୍ଥିର ନିର୍ଦ୍ଦିଷ୍ଟ କିଛି କହିବାକୁ ଚାହିଁଲେ ମଧ୍ୟ, କବି ଯେପରି ତାହା କହିପାରନ୍ତି ନାହିଁ, ପାଠକ ମଧ୍ୟ ସେହିପରି ସେ ଅନିର୍ଦ୍ଦିଷ୍ଟତାକୁ ବହୁ ଭାବରେ ପ୍ରତ୍ୟକ୍ଷ କରିଥାଆନ୍ତି । ପାଠକଟିଏ ଜୀବନକୁ ଭୋଗି ବଞ୍ଚିଲା ବେଳେ ତା ପ୍ରିୟ କବିତାଟି ତା ପାଖେ ପାଖେ ରହି ତାକୁ ବରାଭୟ ପ୍ରଦାନ କରୁଥାଏ । କହୁଥାଏ ଯେ, ‘‘ତୁମେ ଏକା ନୁହଁ, ଜଣେ କବିର ଭୋଗାଭୋଗତୃମ ପାଖେ. ପାଖେ ରହିଛି ।’’ ଏହିପରି ଯେଉଁ ପାଠକ, ଯାହାକୁ କବି ଅଭିମନ୍ୟୁ ଆଶୀର୍ବଚନ ଶୁଣାଇଥିଲେ, କହିଥିଲେ, ‘ସେ କୋଟି କବିଙ୍କ ଆୟୁଷ ଘେନି ବଞ୍ଚିରହୁ’ ସେ ମୋର ଅତିପ୍ରିୟ । ତା’ସହିତ ମୋର ଅନ୍ତରର ସତ୍ୟଶୀଳ ଯୋଗାଯୋଗ ସ୍ଥାପନ କରିବା ପାଇଁ ମୁଁ କେତେ ନାହିଁ କେତେ ଶବ୍ଦ ବାଛିଛି, ଚିତ୍ର ସଜାଡ଼ିଛି, ହସିଛି, କାନ୍ଦିଛି, ଋଷି ବସିଛି, ପୁଣି କୋଳେଇ ନେବାକୁ ହାତ ବଢ଼ାଇଛି । ପଠନ ସ୍ପୃହାକୁ ଉଜ୍ଜୀବିତ ରଖି ଦୀର୍ଘସ୍ଥାୟୀ ଏକ ଉପଲବ୍ଧିକୁ ଜଡ଼େଇ ଧରିବା ନିମିତ୍ତ ବ୍ୟାକୁଳ ହେଉଥିବା ପାଠକମାନେ ମୋର ପ୍ରିୟ ।

ପାଠକୀୟ ଅନ୍ୱେଷଣ ଓ ଅନୁସନ୍ଧିତ୍ସା ଆଜି କମି କମି ଯାଉଛି । ଅହଂକାରୀ କୋଳାହଳ ଭିତରେ ନିଜ ଅନ୍ତଃକରଣର ଚାହିଦା ପ୍ରତି ମଣିଷ ଭ୍ରୂକ୍ଷେପ କରୁନାହିଁ । ତଥାପି, ବିବେକୀ, ରସିକ ପାଠକ ସବୁକାଳେ ବିରଳ ଥିଲେ । ବିରଳତା ହିଁ ତାଙ୍କର ଯୋଗ୍ୟତା ଓ ଯୋଗ୍ୟ ହୋଇଥିବା ହେତୁ ସେ ପ୍ରିୟ । କେବଳ ପ୍ରିୟ ନୁହେଁ, ମୋର ଆପଣାର ସଗୋତ୍ର ମଧ୍ୟ ।



# ଓଡ଼ିଆର ମର୍ଯ୍ୟାଦା

ପ୍ରତ୍ୟେକ ଲେଖକଙ୍କର ଅଭିଳାଷ - ତାର ସଂରଚନା ଅଧିକ ସଂଖ୍ୟକ ପାଠକଙ୍କ ପାଖରେ ପହଞ୍ଚୁ । କିନ୍ତୁ ପାଠକ କିଏ ? ଆମ ଓଡ଼ିଆ ସାହିତ୍ୟର ପାଠକଙ୍କ ସଂଖ୍ୟା କେତେ ? ଲକ୍ଷ୍ୟ କଲେ, ନିରାଶ ହେବାକୁ ହୁଏ । କବିତା କଥା ଛାଡ଼ନ୍ତୁ । କବି ବିଚରା ଯୁଗେ ଯୁଗେ ରସିକ ଗ୍ରାହକଙ୍କୁ ତାର ଆୟୁଷ ଦାନ କରିବାକୁ ପ୍ରସ୍ତୁତ ଥାଏ । ତା ସୃଷ୍ଟି ପାଇଁ ପାଠକଙ୍କ ସଂଖ୍ୟା ସବୁକାଳେ ସୀମିତ । ମାତ୍ର ସମୁଦାୟ ଓଡ଼ିଆ ସାହିତ୍ୟର ଭବିଷ୍ୟତ କଣ ? କିଏ ପଢ଼ିବ ସାହିତ୍ୟ ? ଗଣମାଧ୍ୟମର ଚମତ୍କାର ଆକର୍ଷଣୀୟ ମନୋରଞ୍ଜନକୁ ଆଡ଼େଇ ଦେଇ ପଢ଼ିବାକୁ କିଏ ଆଗ୍ରହ ବଢ଼ାଇବ । ବେଳେବେଳେ ଏ ପ୍ରଶ୍ନ ମନରେ ସ୍ୱତଃ ଉଦୟ ହୁଏ । ହଁ, ଗଣ ମାଧ୍ୟମରେ ଯାଦୁକାରୀରୁ ବଞ୍ଚି ତଥାପି ପାଠକ ବହି ଖଣ୍ଡିଏ ଖୋଜିବ, ବସ୍ତୁବାଦୀ ସଭ୍ୟତାର ବିଜ୍ଞାପନଧର୍ମୀ ମନୋରଞ୍ଜନରେ ଅତିଷ୍ଠ ହୋଇ ଆତ୍ମାର ସନ୍ତୋଷ ନିମିତ୍ତ ସେ ଆତ୍ମାକୁ ସ୍ପର୍ଶ କରିବାକୁ ହାତ ବଢ଼ାଇବ ପୁସ୍ତକ ଆଡ଼େ ମନ ବଳାଇବ । ମରୁଭୂମିରେ ବାଟ ହଜାଇଥିବା ନଦୀ ଭଳି ସେ କିଛି ସମୟ ପାଇଁ ବାଟ ଭୁଲିପାରେ, ମାତ୍ର ତାର ଲକ୍ଷ୍ୟ ଆତ୍ମାନୁସନ୍ଧାନ ।

ଆଜି କିନ୍ତୁ ଓଡ଼ିଆ ସାହିତ୍ୟର ଭବିଷ୍ୟତ ସଂପର୍କରେ ଆଶାବାଦୀ ହେଲା ବେଳକୁ ଓଡ଼ିଆ ଭାଷାର ବିଡ଼ମ୍ବିତ ଅବସ୍ଥା ପ୍ରତିଭାତ ହୁଏ । ଓଡ଼ିଆ ଭାଷାକୁ ଗ୍ରହଣ କରୁଥିବା, ପଢୁଥିବା, କଥାକହୁଥିବା, ଲେଖୁଥିବା ଲୋକଙ୍କ ସଂଖ୍ୟା ଭବିଷ୍ୟତରେ ଅଧିକ ହ୍ରାସ ପାଇବାର ଆଶଙ୍କା ଅମୂଳକ ନୁହେଁ ।

ଓଡ଼ିଆ ଭାଷା ସହରୀ ଶିକ୍ଷିତଙ୍କ ନିକଟରେ ଅବହେଳିତ । ସହରବାସୀ ଶିକ୍ଷିତଙ୍କ ପିଲାଏ ପଢ଼ିବେ ଇଂରାଜୀ ମିଡ଼ିୟମ୍ ସ୍କୁଲରେ, ଘରକୁ ଆସିବ ଇଂରାଜୀ କାଗଜ ଓ ଖଣ୍ଡେ ଅଧେ ଇଂରାଜୀ ପତ୍ରିକା । ଆଉ କଥାବାର୍ତ୍ତା ? ଅବଶ୍ୟ କଥାବାର୍ତ୍ତା ଓଡ଼ିଆରେ ଚାଲେ- ତେବେ ହିନ୍ଦୀ ଇଂରାଜୀ ମିଶିଥାଏ । ଟି.ଭିର ପ୍ରଭାବରେ ପାନଦୋକାନୀ ଆଗରେ ଭିଡ଼ ଜମାଇଥିବା ଓଡ଼ିଆ ପୁଅ ହିନ୍ଦୀରେ କଥା କହେ । ପୁଣି, ଏଇତ ଯାଇଥିଲି ଗୋଟେ ଶିଳ୍ପାଞ୍ଚଳକୁ, ସାହିତ୍ୟ ସଭାର ସଭାପତି ଭାବରେ । ସ୍ୱାମୀ ଇଞ୍ଜିନିୟର ଜଣକ ଆମକୁ ତାଙ୍କ ଘରକୁ ଡାକିନେଲେ । ସ୍ୱାମୀ ସ୍ତ୍ରୀ ଉଭୟେ ଓଡ଼ିଆ ସ୍କୁଲରେ ପାଠ ପଢ଼ିଛନ୍ତି । ଅଥଚ ତାଙ୍କର

ପତ୍ନୀ ଛୋଟ ପିଲାଟିଏ ହିନ୍ଦୀରେ ହିଁ କଥାବାର୍ତ୍ତା କରୁଥାନ୍ତି । ଓଡ଼ିଶା ଭିତରେ, ଶିକ୍ଷିତ ଓଡ଼ିଆଙ୍କ ପରିବାରରେ ଶିଶୁଟିଏ ଯଦି ଓଡ଼ିଆ ଭାଷାରେ କଥାବାର୍ତ୍ତା ନକରେ କି ନ ଶୁଣେ, ଆମେ କିପରି ଆଶା କରିପାରିବା ଯେ, ସେ ତା'ର ମାତୃଭାଷା ରୂପେ ଓଡ଼ିଆକୁ ଗ୍ରହଣ କରିପାରିବ ? ଏହିପରି ଅବସ୍ଥା କେବଳ ଗୋଟିଏ ପରିବାରର ନୁହେଁ, ଅଧିକାଂଶ ସହରୀ ଶିକ୍ଷିତଙ୍କ ପରିବାରର ଆଭ୍ୟନ୍ତରୀଣ ଅବସ୍ଥା ଏହିପରି । ଏହି ଅବସ୍ଥା କେବଳ ଓଡ଼ିଆ ଭାଷାର ନୁହେଁ, ପ୍ରତ୍ୟେକ ଆଞ୍ଚଳିକ ଭାଷାର ଅବସ୍ଥା ଉଣା ଅଧିକେ ଏୟା ବୋଲି ଜାଣିବାକୁ ମିଳେ ।

ଇଂରାଜୀ ଶାସନ ଅମଳରେ ଇଂରାଜୀ ସ୍କୁଲମାନଙ୍କର ମିଶନାରୀ ଉତ୍ସାହରେ ଶିକ୍ଷାଦାନ ହେଉଥିଲା । ବର୍ତ୍ତମାନର ଇଂରାଜୀ ସ୍କୁଲମାନେ ମୁଖ୍ୟତଃ ବ୍ୟବସାୟଭିତ୍ତିକ- ଗାଁ ଗହଳକୁ ମଧ ପ୍ରସାରିତ ହୋଇଗଲାଣି । ଏହି ବ୍ୟବସାୟଭିତ୍ତିକ ସ୍କୁଲମାନଙ୍କରେ ଶିକ୍ଷାପ୍ରାପ୍ତ ଶିଶୁ ପ୍ରକୃତ ପକ୍ଷେ ଇଂରାଜୀ ଭାଷା ମଧ ଶୁଦ୍ଧଭାବେ ଶିଖିପାରୁନାହିଁ, ମାତୃଭାଷାଠାରୁ ତ ସେ ବିଚ୍ୟୁତ । ଅତଏବ କେଉଁ ଭାଷା ତା'ର ନିଜର ? ଏକବିଂଶ ଶତାବ୍ଦୀରେ ପାଦଦେବାର ଅବ୍ୟବହିତ ପୂର୍ବରୁ ମୁଁ କଦାପି କହିବି ନାହିଁ ଯେ ଭାଷାଗତ ସଂକୀର୍ଣ୍ଣତା ଉତ୍ସାହପ୍ରାପ୍ତ ହେଉ । ଇଂରାଜୀ ଭାଷା ଓ ଓଡ଼ିଆ ଭାଷା ମଧରେ କୌଣସି ବିରୋଧ ନାହିଁ ନିଶ୍ଚୟ । ଇଂରାଜୀ ଭାଷା ଓଡ଼ିଆ ଭାଷାର ଭଉଣୀ ରୂପେ ଚିହ୍ନିତ ହେଉ । ଏହି ବୈଜ୍ଞାନିକ ଯୁଗରେ ବିଶ୍ୱସ୍ତରରେ ପହଞ୍ଚିବାକୁ ହେଲେ ଇଂରାଜୀ ଭାଷାର ଆବଶ୍ୟକତା ନିଶ୍ଚୟ ରହିଛି । ତଥାପି ଆମେ ଆମର ମାଆକୁ ଚିହ୍ନିଲା ପରି ନିର୍ଭୁଲ ଭାବେ ମାତୃଭାଷାକୁ ଆପଣାର ବୋଲି ଚିହ୍ନିନେବା ଉଚିତ । ଇଂରାଜୀ ଭାଷା ଆମର ମାଉସୀ-ମାତ୍ର ମା କଦାପି ହୋଇନପାରେ । ଏହା ଯଦି ଆମେ ଭୁଲିଯିବା ଓ ବର୍ତ୍ତମାନଠାରୁ ଏଥିପ୍ରତି ଧାନଶୀଳ ନହେବା, ତେବେ ଆମର ପରିଚୟ ରହିବ ନାହିଁ- ଆତ୍ମମର୍ଯ୍ୟାଦା ବିନଷ୍ଟ ହୋଇଯିବ । ଆମର ଏ ପ୍ରକାର ଅସାବଧନାତା ଭିତରେ ଭିତରେ କ୍ୟାନସର ରୋଗ ଭଳି ଚରିଯିବ । ଏହି ରୋଗ ଯେପରି ବାହାରକୁ ଦୃଶ୍ୟ ହେଲାବେଳକୁ ଆୟତ୍ତର ବାହାରକୁ ଚାଲିଯାଇଥାଏ, ଆମର ଭବିଷ୍ୟତ ଅବସ୍ଥା ସେହିପରି ଭୟଙ୍କର ହେବ । ଇଂରାଜୀ ସ୍କୁଲମାନଙ୍କରେ ଓଡ଼ିଆ ପ୍ରାରମ୍ଭସ୍ତରକୁ ବାଧ୍ୟତାମୂଳକ ହେବା ଉଚିତ ।

ଜାପାନୀମାନେ ବିଭିନ୍ନ ଦେଶରେ ବସବାସ କରନ୍ତି । ବିଜ୍ଞାନରେ ସେମାନେ ଖୁବ୍ ଉନ୍ନତ । ମାତ୍ର ବିଶ୍ୱସ୍ତରୀୟ ବିଜ୍ଞାନ ସମ୍ମିଳନୀରେ ସେମାନେ ସମସ୍ତ ତଥ୍ୟାବଳୀକୁ ନିଜ ଜାପାନୀ ଭାଷାରେ ପ୍ରକାଶ କରିଥାନ୍ତି- ଦ୍ୱିଭାଷିକ ସାହାଯ୍ୟରେ ନିଜ ଭାଷା ସ୍ଥାନରେ ଅନ୍ୟ କୌଣସି ବିଦେଶୀ ଭାଷାକୁ ଗ୍ରହଣ କରିବା ନିମିତ୍ତ ସେମାନେ ପରାଙ୍ମୁଖ । ଏକଥା ଅଳ୍ପଦିନ ତଳେ ଆମେରିକାରେ ଅବସ୍ଥାନ କରୁଥିବା ଜଣେ ଜଣେ ବିଶିଷ୍ଟ ଓଡ଼ିଆ ଏକ ସାହିତ୍ୟ ସମ୍ମେଳନରେ ପ୍ରକାଶ କରିଥିଲେ । ଆମେରିକାର ବସବାସ କରୁଥିବା ଜାପାନୀମାନେ ହିଁ ପ୍ରଥମେ ସେମାନଙ୍କ ପିଲାଙ୍କୁ ମାତୃଭାଷା ଶିକ୍ଷା ଦେବାର ବ୍ୟବସ୍ଥା ଆରମ୍ଭ କରିଥିଲେ ।

ବିଭିନ୍ନ ଅଞ୍ଚଳରେ ରବିବାର କ୍ଲାସମାନ ଖୋଲି ନିଜ ପିଲାମାନଙ୍କୁ ଜାପାନୀ ଭାଷା ଶିକ୍ଷା ଦେଲେ । ଫଳରେ ଅଣଆମେରିକୀୟମାନେ ଓ ଭାରତୀୟମାନେ ମଧ୍ୟ ଏହି ରୀତି ଅନୁସରଣ କଲେ । ଓଡ଼ିଆମାନେ ମଧ୍ୟ କେତେକ ସ୍ଥାନରେ ଆଜିକାଲି ଓଡ଼ିଆ ଭାଷା ଶିକ୍ଷାଦାନ ଆରମ୍ଭ କରିଛନ୍ତି ।

ଭାଷା ସଂସ୍କୃତିର ବାହକ । ସଂସ୍କୃତି ଜାତିର ମେରୁଦଣ୍ଡ । ସଂସ୍କୃତିକୁ ହତାଦାର କଲେ, ଅବହେଳା କଲେ ଜାତି ଧ୍ୱଂସ ପାଇଯାଏ । ଏହି ଅନିବାର୍ଯ୍ୟତାକୁ ଉପଲବ୍ଧି କଲେ, ଭବିଷ୍ୟତ ପ୍ରତି ଦୃଷ୍ଟି ନିକ୍ଷେପ କଲେ, ଓଡ଼ିଆ ଭାଷାକୁ ଆପଣାର କରିବା ଏବଂ ତାକୁ କୌଣସି ଆଞ୍ଚଳିକତା ଦ୍ୱାରା ଆକ୍ରାନ୍ତ ନ କରାଇ ଆଗଙ୍ଗା-ଗୋଦାବରୀ ଓଡ଼ିଆର ସାଂସ୍କୃତିକ ଜୀବନକୁ ଉଜ୍ଜୀବିତ କରାଇବା ଆଜି ପ୍ରତ୍ୟେକ ଓଡ଼ିଆର ଧ୍ୟେୟ ହେବା ଉଚିତ । ମାତୃଭାଷାର ଯଦି କିଛି ଅସାମାର୍ଥ୍ୟ ଅଛି, ଅଯୋଗ୍ୟତା ଅଛି, ତାହା କେଉଁପରି ଦୂରୀଭୂତ ହେବ, ସେ ଦିଗରେ ଓଡ଼ିଆମାନେ ଯଥାଯଥ ଧ୍ୟାନଶୀଳ ଓ କ୍ରିୟାଶୀଳ ହେଲେ ହିଁ ମାତୃଭାଷାର ଉତ୍ତରୋତ୍ତର ବିକାଶ ହେବ ଓ ସାମର୍ଥ୍ୟ ବୃଦ୍ଧି ପାଇବ ।

ସାଧାରଣ ସ୍ତରରୁ ଆରମ୍ଭକରି, ବିଭିନ୍ନ ସାମାଜିକ ଅନୁଷ୍ଠାନ ତଥା କ୍ଷମତାସୀନ ବ୍ୟକ୍ତିଙ୍କ ପ୍ରଚେଷ୍ଟାରେ ଓଡ଼ିଆଭାଷା ତାର ସମସ୍ତ ଜୀର୍ଣ୍ଣତା ଓ ସଂକୀର୍ଣ୍ଣତାରୁ ଉର୍ଦ୍ଧ୍ୱକୁ ଯାଇ ପ୍ରତିଷ୍ଠା ପାଇ ପାରିବ । ସର୍ବପ୍ରଥମେ ମାତୃଭାଷାକୁ ମାଆ ଜ୍ଞାନ କରି, ତାହାର ମର୍ଯ୍ୟାଦାକୁ ନିଜ ମର୍ଯ୍ୟାଦା ଜ୍ଞାନ କରି, ତାକୁ ଭଲ ପାଇବା ହେଉ ପ୍ରତ୍ୟେକ ଓଡ଼ିଆର ଆତ୍ମ ପରିଚୟର ମୂଳମନ୍ତ୍ର ।



# କବିର ସୁକୃତ

ଏଠାରେ କବି ଅର୍ଥ କଳାକାର । ଶବ୍ଦଶିଳ୍ପୀ, ଚିତ୍ରଶିଳ୍ପୀ, ସ୍ଥପତି ଓ ଭାସ୍କର, ଗାୟକ ନର୍ତ୍ତକ, ଅଭିନେତା - ସମସ୍ତଙ୍କୁ କବି ରୂପେ ଅଭିହିତ କରାଯାଇଛି ଏଠାରେ । ଲୌକିକ ଜଗତର ଉର୍ଦ୍ଧ୍ୱରେ ପ୍ରତିଷ୍ଠିତ ଭାବମୟଜଗତକୁ ଗବାକ୍ଷ ଖୋଲିଦିଏ ଯେଉଁ ଉପଲବ୍ଧି, ଅପାର ଆନନ୍ଦରେ (ଶୋକ ବି ଏଠାରେ କାବ୍ୟାନନ୍ଦର ଅନ୍ୟରୂପ) ଅଭିଭୂତ କରେ, ତାହାହିଁ କବି-କୃତି । ଏହି କୃତିର ରସନିଷ୍ପତ୍ତି ହୁଏ, ଯେତେବେଳେ ପିପାସୁ ପାଠକ କବି ସହ ଏକାତ୍ମ ହୋଇଉଠେ । ମାନବୀୟ ଅଭିଜ୍ଞତାର ଆଦାନ ପ୍ରଦାନ କ୍ରିୟାଶୀଳ ହୋଇଥାଏ । ଅନ୍ୟଥା, ଏହି କ୍ରିୟାଶୀଳତାର ପାହାରେ, ଅର୍ଥାତ୍ ଏହି ଆଦାନପ୍ରଦାନ ବ୍ୟାହତ ହେଲେ କବିକୃତି ସ୍ଥିତିହୀନ ପ୍ରତୀତ ହୁଏ । ଯଥାର୍ଥରେ "R. Williams is actively offered and received. Below this activity threshold there can be art."

ଏହି ମାନବୀୟ ଅଭିଜ୍ଞତାରେ ପରିପୃକ୍ତ କବିକୃତି ଏକ ସାଧନା, ଏଥିରେ ଆତ୍ମଅନ୍ୱେଷା, ଧୈର୍ଯ୍ୟ ଓ ସମର୍ପଣ ରହିଥାଏ । ସ୍ରଷ୍ଟାକୁ ଗର୍ଭଧାରଣ ଓ ପ୍ରସବ ବେଦନା ସହ୍ୟ କରିବାକୁ ହୁଏ- ମାନସିକ, ଶାରୀରିକ ଓ ଚୈତନିକ ସ୍ତରରେ । ପୁଣି ବ୍ୟକ୍ତିଟିଏ କବିରୂପରେ ପରିଚିତ ହୋଇ ଉଠିବା ଏକ ବିରଳ ସୌଭାଗ୍ୟ । ଏହା ବୃତ୍ତି ନୁହେଁ । କବି ପଣରେ କରିତ୍‌କର୍ମା ହେବାର ଯୋଗ୍ୟତା ଭିନ୍ନ ପ୍ରକାରର । ଗୋଟିଏ କବିକୃତି ବହୁକାଳଯାଏ ସ୍ୱୀକୃତ ହୋଇଥାଏ । ଚିରକାଳକୁ ସ୍ୱୀକୃତ 'କାଳଜୟୀ' ବୋଲି କୁହାଯାଏ । ମାତ୍ର, 'ଚିରକାଳର' କହିବାରେ ଦ୍ୱିଧା ମୋର ନିଜସ୍ୱ । ଭବଭୂତିଙ୍କ ଭଳି ''କାଳୋଃହ୍ୟୟଂ ନିରବଧି''ରେ ମୁଁ ବିଶ୍ୱାସ କରେ ନାହିଁ । କାଳର ସର୍ବଗ୍ରାସୀତ୍ୱ ସଂପର୍କରେ କିଏ ନ ଜାଣେ ? ତଥାପି ସତ୍ ସାହିତ୍ୟ ଚିରକାଳକୁ ସ୍ୱୀକୃତ ହୁଏ , କବି ସେଠାରେ ନଗଣ୍ୟ । କୋବ୍ୟୋଚ୍ଚାରଣ ହିଁ ସତ୍ୟ-ଉଚ୍ଚାରଣ ।

ଯାହାହେଲେବି, ନାମଯଶ ଅର୍ଜନ କରିବା ପାଇଁ ଜଣେ ସତ୍ କବି/କଳାକାର କାବ୍ୟସାଧନା/କଳାସାଧନା କରେ ନାହିଁ । ସେ କିଛି ପ୍ରକଟ କରିବାକୁ ଚାହେଁ, ତାର ଚେତନା ଛଟପଟ ହୋଇ କିଛି ପ୍ରକାଶ କରିବାକୁ ଚାହେଁ, (ଭଲ କିଛି, କିଛି ଭିନ୍ନ ଓ ନୂତନ) କବି/କଳାକାର ସେଥିନିମିତ୍ତ ଆନ୍ଦୋଳିତ ହେଉଥାଏ ।

କିନ୍ତୁ ଆଜିର କାଳ ସ୍ୱତନ୍ତ୍ର । ବିଂଶଶତକର ଶେଷ ପର୍ଯ୍ୟାୟ ଓ ଏକବିଂଶର ପ୍ରାରମ୍ଭ କାଳରେ 'ନାମଯଶ' ହିଁ ମୁଖ୍ୟ ହୋଇ ପଡ଼ିଛି । 'ନାମଯଶ' ପାଇଁ ବ୍ୟସ୍ତବ୍ୟଗ୍ର ବ୍ୟକ୍ତିଗଣ ସାଧନା ନିମିତ୍ତ ଧୈର୍ଯ୍ୟ ଧାରଣ କରନ୍ତି ନାହିଁ । ତତ୍‌କ୍ଷଣାତ୍ ସେମାନଙ୍କର ଯଶଲୋଡ଼ା ପ୍ରତିଷ୍ଠା ଦରକାର । ସେଥିନିମିତ୍ତ ଏହି ଉପଭୋକ୍ତା ସମାଜରେ ପ୍ରକୃତ ଗ୍ରାହକ ଦୀକ୍ଷାହୀନ, ଅନବହିତ, ଅଗଭୀର ଓ ଅଧୈର୍ଯ୍ୟ । ଯେ ତ କଳାଜଗତର କଥା । ଏ ଯୁଗରେ ସମାଜସେବାର ଅବସ୍ଥା ମଧ୍ୟ ତଦ୍ରୂପ । ଉପଭୋକ୍ତା ସମାଜର ଅନ୍ୟ ଏକ ସ୍ୱରୂପକୁ ସୂଚିତ କରିବା ଏଠାରେ ଅପ୍ରାସଙ୍ଗିକ ହେବ ନାହିଁ, ଭାବୁଛି ମୋର ଜଣେ ବାନ୍ଧବୀ, ବିଶିଷ୍ଟ ଅଧ୍ୟାପିକା, ଆଳାପ ଅବସରରେ ଆମ ରାଜ୍ୟର ଏକ ବିଶିଷ୍ଟ ସମାଜସେବା ସଂସ୍ଥା ସଂପର୍କରେ କହିଲେ । ସେ ସଂସ୍ଥାଟି ସାରା ବିଶ୍ୱରେ ବ୍ୟପ୍ତ, ବରଂ ତା'ର ଗୋଟିଏ ଶାଖା ଓ କେତେକ ପ୍ରଶାଖା ଆମ ରାଜ୍ୟରେ ରହିଛି । ମୋର ବାନ୍ଧବୀଙ୍କର, ମୋର କବିତା, ଗଦ୍ୟ, ସ୍ମୃତିଲିପି ସବୁକିଛି ସଂପର୍କରେ ଖୁବ୍ ସଂଭ୍ରମ । ତାଙ୍କ ମତରେ ମୁଁ ନିଷ୍ଠାପର ଲେଖିକା କେବଳ ନୁହେଁ, ବନ୍ଧୁ ଓ ଅଧ୍ୟାପିକା ଭାବରେ ମଧ୍ୟ ନିଷ୍ଠାପର । ମୋର ବି ମତ, ତାଙ୍କ ଭଳି ଜଣେ ସ୍ନେହୀ ଓ ସଂଭ୍ରାନ୍ତ ଭଦ୍ରମହିଳା ଆଜିକାଲି ଖୁବ୍ କମ୍ ଦେଖିବାକୁ ମିଳିବେ । ତେବେ, ମୋର ସେଇ ବାନ୍ଧବୀଙ୍କୁ ମୋର ଗୋଟେ ଅସଲ ଦୋଷ ଦିଶେ ନାହିଁ । ମୁଁ ଯେ ବୋକୀ ଓ ସମଜସଚେତକ ସ୍ତ୍ରୀ ଲୋକ ଏହା ସେ ସ୍ୱୀକାର କରନ୍ତି ନାହିଁ । ବ୍ୟାବହାରିକ ବୁଦ୍ଧିରେ ମୋ ବାନ୍ଧବୀ ଅନେକ ସଫଳ । ସେ ଉପରୋକ୍ତ, ସମାଜସେବା ସଂସ୍ଥାର ଏକଦା ସଭାପତି ଥିଲେ । ଆଜିକାଲି ତାର ସଭ୍ୟ ଓ କର୍ମକର୍ତ୍ତାବୃନ୍ଦ କିପରି ପ୍ରଚଣ୍ଡ ସ୍ୱାର୍ଥାନ୍ୱେଷୀ ହୋଇପଡ଼ିଛନ୍ତି, ନିଜର ବିଶିଷ୍ଟତା ପାଇଁ ପ୍ରତ୍ୟେକ ପ୍ରତିଯୋଗିତା ନିମନ୍ତେ କୌଶଳ କରୁଛନ୍ତି, ତା ସେ କହିଲେ । କେବେ ଭଲମଣିଷ ଲୋଭୀ ଆଉ ସ୍ୱାର୍ଥପର ନଥିଲା ? ସେହି ଗୁଣ ଯୋଗୁଁ ମଣିଷତ ପଶୁଠାରୁ ଭିନ୍ନ । ସବୁଯୁଗରେ ଏହିପରି ଚକ୍ରାନ୍ତ, ହାଇଁପାଇଁ ଭାବ ଥିଲା, ମାତ୍ର ଏତେବେଶୀ ଉଗ୍ରତା ଓ ନିର୍ଲ୍ଲଜତା ନଥିଲା, ନଥିଲା ମଧ୍ୟ ଘୋର ଅବିବେକୀତ୍ୱ । ମୁଁ ଆଶ୍ଚର୍ଯ୍ୟ ହେଲି । ଆଯଁ ? ଏଇଟା ପରି ବିଶ୍ୱବ୍ୟାପୀ ଏକ ସେବାନୁଷ୍ଠାନ ? ପୀଡ଼ିତ, ଅଭାବୀ ମଣିଷର ଉନ୍ନତି କଳ୍ପେ ଉତ୍ସର୍ଗିତ ଏହାର ସମଗ୍ର କାର୍ଯ୍ୟସୂଚୀ ? ଦେଶ ବିଦେଶର ମଣିଷଙ୍କ ମଧ୍ୟରେ ସଦ୍‌ଭାଗ ବଢ଼ାଇବା ଯାର ଲକ୍ଷ୍ୟ ? ଏଠିବି ଏଇମିତି ?'' ସେ ମତେ ଉସ୍‌କେଇଲା ''ଆଉ ତୁମ ଲେଖକ ଓ କବି ସମାଜ ? ତା'ର କାମ କ'ଣ ? ଭଲ କୃତିକୁ ପଛକୁ ଠେଲି, ବାହୁବଳରେ, କ୍ଷମତା ବଳରେ ଧନବଳରେ ଅପେକ୍ଷାକୃତ ନିକୃଷ୍ଟକୁ ସିଂହସନରେ ଥୋଇବା,- ଏୟା ନାଁ ?''

ସାହିତ୍ୟ ସାଧନା କ୍ଷେତ୍ରରେ ହେଉ ବା ସେବା, ବଦାନ୍ୟତା, ଜ୍ଞାନବିଜ୍ଞାନ, ଯେ କୌଣସି କ୍ଷେତ୍ରରେ ହେଉ, ସବୁଠି ମଣିଷର ବ୍ୟକ୍ତିତ୍ୱ ଛୋଟ ହୋଇଯାଉଛି । ଉଜ୍ଜ୍ୱଳତା, ଗଭୀରତା ଓ ଗାମ୍ଭୀରତା ହ୍ରାସ ପାଉଛି । ତେଣୁ, ଦଳେ ବଳପୂର୍ବା ହୋଇ, ସବୁକିଛି ଭିଡ଼ିଓଟାରି ନିଜର କରିନେବାକୁ ତତ୍ପର । ଧୈର୍ଯ୍ୟ ଧରି ପାରିବେ ନାହିଁ ସେମାନେ । କଳେ,

ବଳେ କୌଶଳେ ସେମାନେ ନିଜ ପାଇଁ ନାମ ଯଶ ଅକ୍ତିଆର କରି ନେଉଛନ୍ତି । ହେଉ ସମାଜ ସେବା, କଳାକୃତି କିମ୍ବା ବୃତ୍ତିଗତ ଉତ୍କର୍ଷ କିଛି । ପ୍ରତିଯୋଗିତାର ଶ୍ୱାସରୁଦ୍ଧ ଦୌଡ଼ରେ ସାମିଲ ହୋଇ ଆଗକୁ ମାଡ଼ିଚାଲିଥିବା ମଣିଷର ଆଜି ବିଜ୍ଞାପନ, ହୋ ହଲ୍ଲା ପ୍ରତି ନଜର । କୋଉଠି ଅନୁଚ୍ଚ ମଧୁର ମୂର୍ଚ୍ଛନାଟି ତରଙ୍ଗ ତୋଳୁଛି, କୋଉଠି ଅବହେଳାରେ ଶିଶୁଟିଏ ମରିଶୋଉଛି । ଯେ ସବୁଥିପାଇଁ ତାର ମନସ୍କତା ନାହିଁ, ଦୃଷ୍ଟି ନାହିଁ । ମୁଁ ସବୁଠାରୁ -ଅଧିକ ସଫଳ' । ଯାର ପୃଷ୍ଠପଟରେ ଥିବା 'ମୁଁ' ଟି ଯେ ଖୁବ୍ ଛୋଟ ଓ ହ୍ରସ୍ୱ, ଏହା ହିଁ ସୂଚିତ ହେଉଅଛି । ସେ 'ମୁଁ' ଟି ବଢ଼ି ଉଠି ପାରିବ ନାହିଁ ନିଜର ସାଧନା ଓ ନିଷ୍ଠା ବଳରେ । ମାଟିରୁ ଉର୍ବରତା ନେଇ ଚାରାଗଛଟିଏ ବଢ଼ିଉଠି ଦ୍ରୁମପାଳଟି ଯିବାର ଶକ୍ତି ତା'ଠି ନାହିଁ, କି' ସେଥିପାଇଁ ସମୟ ଓ ଧୈର୍ଯ୍ୟ ବିନିଯୋଗ କରିବା ନିମିତ୍ତ ସେ ପ୍ରସ୍ତୁତ ନୁହେଁ ।

ଜଣେ ସ୍ରଷ୍ଟା, ଜଣେ ସେବକ- ଏମାନଙ୍କ ଭିତରେ ଏକ ଅନ୍ତର୍ଗତ ନିବିଡ଼ ସଂପର୍କ ଥାଏ । ସ୍ରଷ୍ଟାଜଣେ ମାନବଚେତନାର ପରିପୃଷ୍ଟି ଦିଗରେ ସେବାରତ ନୁହେଁ କି ? କୌଣସି ସ୍ୱାର୍ଥ ଆଶା ନ ରଖି ଆତ୍ମଦାନ କରିବା ତ ସବୁଠାରୁ ମହତ୍ତମ ସେବା । ଠିକ୍ ଏହି ସମୟରେ ସଂସ୍କୃତି କ୍ଷେତ୍ରରେ ଆସୁଛି ଅନ୍ୟଗୋଟିଏ ଧାରା । ସାହିତ୍ୟସଭା, କବିତାପାଠୋତ୍ସବ, ସ୍ମାରକୀବକ୍ତୃତା, ଚିତ୍ରପଦର୍ଶନୀ ଆଦି ନିୟମିତ ଅନୁଷ୍ଠିତ ହେଉଛି । ସହରଠାରୁ ଗ୍ରାମାଞ୍ଚଳ ପର୍ଯ୍ୟନ୍ତ ଏସବୁ ବିଧିବଦ୍ଧଭାବେ ଅନୁଷ୍ଠିତ ହୋଇଚାଲିଛି । କଟକ ଭୁବନେଶ୍ୱର, କଲିକତା, ଦିଲ୍ଲୀ ଆଦି ବଡ଼ ସହରରେ ପ୍ରତ୍ୟେକ ଦିନ ସାହିତ୍ୟ ସଭାର କାର୍ଯ୍ୟକ୍ରମ ରହିଛି ଓ ଲେଖକ, କଳାକାର ଏକତ୍ରିତ ହେଉଛନ୍ତି । ମନେ ହେଉଛି, ବର୍ତ୍ତମାନ, ମଣିଷର କଳାପ୍ରତି ଅନାଗ୍ରହ ଓ ଅସଚେତନତାକୁ ପ୍ରତିହତ କରିବା ନିମନ୍ତେ ଏଭଳି ବ୍ୟବସ୍ଥା ମନକୁ ମନ ସୃଷ୍ଟି ହୋଇଛି । ଅନ୍ୟପକ୍ଷରେ କଳାକାର, କବି ମଧ୍ୟରେ ପାରସ୍ପରିକ ସଂପର୍କ ବ୍ୟାହତ ହୋଇଛି । ଏକତ୍ର ସଭାଗୃହରେ ବସିଲେ ମଧ୍ୟ ଜଣକର ଅନ୍ୟପ୍ରତି ଅସହିଷ୍ଣୁତା, ଈର୍ଷା ରହୁଛି ଏବଂ ପ୍ରକୃତ ବନ୍ଧୁତ୍ୱ ଅନୁପସ୍ଥିତ ରହୁଛି ।

ଅଥଚ, ସେଦିନ ୰କବି କୁମାରନ ଆସନ୍ କବି କୃତିର ପ୍ରାପ୍ୟ ସଂପର୍କରେ କାହିଁକି ଏପରି କହିଥିଲେ ? ସେ କ'ଣ ଦୂରଦୃଷ୍ଟି ବଳରେ ଦେଖିପାରିଥିଲେ ଏଇ ବଳପୂର୍ବା, ତଥାକଥିତ କଳାସ୍ରଷ୍ଟାମାନଙ୍କୁ ? ସେମାନଙ୍କ ବିବେଚନାଶୂନ୍ୟ ଅହଂକାରକୁ ? ସ୍ୱାର୍ଥାନ୍ଧତାକୁ ? ସେ କ'ଣ ଯା ମଧ୍ୟ ଦେଖିପାରିଥିଲେ- ଆଜିକାଲି ପ୍ରାୟ ଅଚଳ ହୋଇ ପଡ଼ିଥିବା, ତଥାପି ସାରା ସୃଜନ ଧର୍ମକୁ ବଞ୍ଚାଇ ରଖିବା ନିମିତ୍ତ କୋଉଠି ନାଁ କୋଉଠି ଜୀଇଁ ରହିଥିବା, ସ୍ରଷ୍ଟାପଣର ସ୍ୱାଭିମାନକୁ ? ତା'ର ପ୍ରାପ୍ୟ ସୁକୃତକୁ ?

ମୁଷ୍ଟିମେୟ କବି କଳାକାର ସାଧନାରପଥରେ ତଥାପି ନିରବଚ୍ଛିନ୍ନ ଯାତ୍ରାରତ- ଅବଶ୍ୟ ଚଳମାନ ଧାରାଠାରୁ ଟିକେ ଆଡ଼େଇହୋଇ ମୋନେ ଚାଲିଛନ୍ତି, ନିଜ ବାଟରେ । ନିଶ୍ଚୟ, ସେହିମାନଙ୍କ ଉଦ୍ଦେଶ୍ୟରେ କବିର ସୁକୃତକୁ ନିର୍ଦ୍ଧାରିତ କରିଥିଲେ କବି କୁମାରନ୍ ଆସନ । ତାଙ୍କ ମତରେ, କବିର ସୁକୃତ ହେଉଛି ସେହି ଆନନ୍ଦ, ସେହି ତୃପ୍ତିର ଅନୁରୂପ ଯାହା ଜଣେ

ପିପାସୁ ବ୍ୟକ୍ତି ସୁଶୀତଳ ଜଳପାନ କରି ପ୍ରାପ୍ତ ହୋଇଥାଏ । ଏ ସଂର୍କରେ ଗୋଟିଏ ଛୋଟ ଘଟଣାର ଅବତାରଣା କରିଛନ୍ତି ସେ । ବୌଦ୍ଧ ଭିକ୍ଷୁ ଓ ଭିକ୍ଷୁଣୀଙ୍କୁ ପ୍ରତୀକ ରୂପେ ନେଇଛନ୍ତି । ବୁଦ୍ଧଙ୍କ ପଟ୍ଟଶିଷ୍ୟ ଆନନ୍ଦ କୃତାଂ ଜଳିରେ ଭିକ୍ଷୁଣୀଚଣ୍ଡାଳିକାଙ୍କ ଠାରୁ ଜଳପାନକରି ପରମତୃପ୍ତି ଲାଭ କରିଥିଲେ । ଏଠାରେ ଆନନ୍ଦ ହେଉଛନ୍ତି ପିପାସୁପାଠକ, 'ଚଣ୍ଡାଳିକା' କବି ଓ ଜଳ ହେଉଛି କାବ୍ୟରସ । ଏହାଦ୍ୱାରା ଯେଉଁ ପରିତୃପ୍ତି ଲବ୍ଧ ହୋଇଛି, ତାହାହିଁ କବିର ସୁକୃତ । ପଟ୍ଟବସ୍ତ୍ର, ସ୍ୱର୍ଣ୍ଣକୁଣ୍ଡଳ, ଯଶ ଓ ବିଜ୍ଞାପନରୁ ଏହି ସୁକୃତ ଲବ୍ଧ ହୋଇପାରେ ନାହିଁ । ରସିକ ପାଠକର ପରିତୃପ୍ତି ହିଁ କବିର ପ୍ରାପ୍ୟ ସୁକୃତ ।



# କବିର ଅସ୍ମିତା

ମୁଁ କିଏ ? କ'ଣ ମୋର ଲକ୍ଷ୍ୟ, ମୋର କର୍ମର ଆଭିମୁଖ୍ୟ କାହିଁ ? ମୋର ବିଶ୍ୱାସର ସ୍ୱରୂପ କେଉଁପରି ? ମୋର ସାଧନାର ଅର୍ଥାନ୍ୱୟ କେଉଁଠି ? ଏହିପରି ପ୍ରଶ୍ନର ଉତ୍ତରରେ ଅସ୍ମିତାକୁ ବୁଝିହୁଏ । ଜଣେ କବିର ଅସ୍ମିତାକୁ, ତା'ର ଆତ୍ମ ଅନ୍ୱେଷଣର ସ୍ୱରୂପକୁ ଯେତେ ପ୍ରକଟିତ କଲେ ମଧ, ଯେତେ ବାଗରେ ନିରୀକ୍ଷଣ କଲେ ମଧ ତାହାର କିଛି ଅଂଶ ଅପ୍ରକଟିତ, ଅଦୃଶ୍ୟ ରହିଯିବ । ଠିକ୍ । ଠିକ୍ ଅପ୍ରକଟିତ, ଅଦୃଶ୍ୟ ନୁହେଁ ପ୍ରକଟ ଓ ଦୃଶ୍ୟର ବାହାରେରହିଯିବ । ତେବେ କବିତା ଓ କବି ମଧରେ ଏକାତ୍ମତାକୁ ବିଶ୍ଳେଷଣ କରିବା, ଭାବମୂର୍ତ୍ତିକୁ ପ୍ରମୂର୍ତ୍ତ କରିବାରେ ଅସ୍ମିତାର କିଛି ଅଂଶ ଅଭିବ୍ୟକ୍ତ ହୋଇପାରେ ।

କବିତା ଭାବ ଜଗତର ସୂକ୍ଷ୍ମତମ ଉଚ୍ଚାରଣ । ସେହି ଉଚ୍ଚାରଣ ଅନନ୍ତ ନୀରବତା ମଧରେ ଅପ୍ରକଟିତ ହୋଇ ରହିଥାଏ । ଅଭିବ୍ୟକ୍ତ ହେବା ପୂର୍ବରୁ କବିତାଗୁଡ଼ିକୁ ଥାଏ, ଅନଭିବ୍ୟକ୍ତ ହୋଇ ରହିଥାଏ । କବି ତାହାକୁ ଅଭିବ୍ୟକ୍ତ କରିବାର ପ୍ରୟାସ କରେ । ଅନନ୍ତ ଶବ୍ଦମୟତାରୁ କିଛି ବାଛି ଆଣି କବିତାଟିଏ ଗଢ଼େ । ଶବ୍ଦକୁ ଶବ୍ଦତ୍ୱରୁ ମୁକ୍ତି ଦିଏ ବା ତା'ର ଅର୍ଥରୁ ମୁକ୍ତି ଦିଏ-ଧ୍ୱନିମୟ କରେ । ଭାବଜଗତର ନିର୍ଯାସ ଶବ୍ଦଗତ ହୋଇ କବିତାରେ ପରିଣତ ହୁଏ । ଅଥଚ ଶବ୍ଦ ମାତ୍ର ନୁହେଁ, ଶବ୍ଦ ମଧରେ ଥିବା ନୀରବତା ବି ମୂର୍ତ୍ତ ହୋଇଥାଏ । କବି ଦାନ୍ତେ Gloory ଓ ବିଷର୍ଣ୍ଣ ଥିଲେ, ମାତ୍ର ବିଷାଦ କବିତା ମାଧମରେ ଆଶାମୟତା ଓ ଉଜ୍ଜ୍ୱଳତାକୁ ବିକୀରଣ କରୁଥିଲେ ।

ଆଧୁନିକ କବିତା ନିଶ୍ଚୟ ପୁରାତନ ଠାରୁ ଭିନ୍ନ । ଏହା ପରମ୍ପରା ଉପରେ ପ୍ରତିଷ୍ଠିତ, କିନ୍ତୁ ପରମ୍ପରାକୁ ଅତିକ୍ରମ କରିଯାଇଥାଏ । ପ୍ରକୃତପକ୍ଷେ ମଣିଷର ମୂଳ ଭାବାବେଗଗୁଡ଼ିକ ଚିରକାଳ ତିଷ୍ଠି ରହିଛି- ସ୍ନେହ, ପ୍ରେମ, କରୁଣା, ଈର୍ଷା, କ୍ରୋଧ ଇତ୍ୟାଦି । ଆଧୁନିକ ଯୁଗରେ ତା'ର ମୂଲ୍ୟାୟନ ଏକ ନୂତନ ପରିପ୍ରେକ୍ଷୀରେ ହେଉଛି, ନୂଆ ପ୍ରକାର ଧ୍ୱନିରେ ମୂଲ୍ୟାୟିତ ହେଉଛି । କିନ୍ତୁ ପ୍ରେମ ସେହିପରି ରହିଛି-ଦାବୀ କରିଛି ଆତ୍ମତ୍ୟାଗ, ବେଦନା ଜର୍ଜର ହୋଇରହିଛି । ଯାହାହେଲେ ବି ଆମେ ଏ ଯୁଗର ପୃଷ୍ଠପଟରେ ତାହାର ମୂଲ୍ୟାଙ୍କନ କଲାବେଳକୁ ଏକ ନୂତନ ଦୃଷ୍ଟିରେ ତାକୁ ପରୀକ୍ଷା କରୁଛୁ । ନୂତନ ପ୍ରୟୋଜନୀତାରୁ ବିଚାର

କରୁଛୁ । ମାତ୍ର କବିତା ସବୁକାଳେ ସର୍ବୋତ୍ତମର ଆବିଷ୍କାର କରେ ଓ ସୌନ୍ଦର୍ଯ୍ୟ ପ୍ରକଟିତ କରିଥାଏ । କବିତାରେ ରୂପାୟିତ ଭୂମି ଶସ୍ୟଶ୍ୟାମଳା ଭୂମି ହୋଇପାରେ । କାବ୍ୟସାଧକ ନିଜକୁ ସବୁଠାରୁ, ସକଳ ସଂସାରିକତା ଠାରୁ ପ୍ରତ୍ୟାହାର କରିନେବା ଆବଶ୍ୟକ । କାରଣ ଆତ୍ମାର ଏକପ୍ରକାର ବୈରାଗ୍ୟ କବିତା ରଚନା ପାଇଁ ନିତାନ୍ତ ଜରୁରୀ । ସେ ବୈରାଗ୍ୟର ସ୍ୱରୂପ 'ପ୍ରତ୍ୟାହାର' । ଭାଗବତକାର ଯଥାର୍ଥରେ କହିଥିଲେ - 'ଦୁର୍ଗମ ପଥ ଏ ଭଜନ/ ଭୟେ ଭାଜନ୍ତି ଯୋଗୀଜନ ।'

ଯେ ଯୋଗ ସାଧନା ସହଜ ନୁହେଁ । ନିଜକୁ ଏହି ସାଧନାର ଭୂମିରେ ନିବିଷ୍ଟ କରାଇ ମୁଁ କମ୍ ଛଟପଟ ହୋଇନାହିଁ । ମୋତେ ଯାହା ଅସାମାନ୍ୟ ଲାଗିଛି, ସଂସାରୀ ଲୋକ ପକ୍ଷେ ତାହା ସାମାନ୍ୟ । ମୋତେ ଯାହା ତୁଚ୍ଛ ଲାଗେ, ସଂସାରୀ ଲୋକ ପାଇଁ ତାହା ମହାର୍ଘ । ଅତଏବ ସଂସାରର ଚିରାଚରିତ ରାସ୍ତା ବାହାରେ ଠିଆହେବାରୁ, ସମୟ ସମୟରେ ତା'ର ବିରୁଦ୍ଧାଚରଣ କରିବାରୁ ମୋ ଉପରେ ସଂସାର କମ୍ କ୍ରୁଦ୍ଧ ହୋଇନାହିଁ । କମ୍ ଦଣ୍ଡ ଦେଇନାହିଁ ମୋତେ । ତଥାପି, ମନେ ହୋଇଛି ଏହି ଦଣ୍ଡଭୋଗ ଯଥେଷ୍ଟ ହୋଇପାରିନାହିଁ । ଜୀବନକୁ ମୁଁ ରାସ୍ତା ଉପରକୁ ଫିଙ୍ଗିଦେଇ ପାରିନାହିଁ । ସାହସ ଠୁଳ କରିପାରିନାହିଁ ଅଜଣା ରାସ୍ତାରେ ପାଦ ଦେବାକୁ । ଅତଏବ ଆବିଷ୍କାର କରିପାରିଛି ବା କ'ଣ ? ତେବେ ଅନେକ ଦ୍ୱନ୍ଦ୍ୱ ଓ କୌତୂହଳରେ ମୁଁ ଆନ୍ଦୋଳିତ ହୋଇଛି ।

ଅନ୍ୟଦିଗରେ ମୋର ଗତି ରହିଛି ଅବ୍ୟାହତ । ଦୃଶ୍ୟମାନ ଜଗତର ବ୍ୟାପ୍ତି ଅପେକ୍ଷା ଅଦୃଶ୍ୟ ବାସ୍ତବତାର ଗଭୀରତାର ଅତୁଳ ଆକର୍ଷଣ ମୋ କାବ୍ୟ ରଚନା ଓ ବ୍ୟକ୍ତିତ୍ୱ ପ୍ରତି ପ୍ରବଳତର ହୋଇ ଉଠିଛି । ଏକ ଉପଲବ୍ଧ ଜଗତ, ତା'ର ବାସ୍ତବତା ଓ ତନ୍ମଧ୍ୟରୁ ନିହିତ ସତ୍ୟକୁ ଆବିଷ୍କାର କରିବାର ଅଭୀପ୍ସା ମୋତେ ବଦ୍ଧ ପରିକର କରି ତୋଳିଛି । ଏହା ସହିତ ମୋର ଗତି ହୋଇଛି ଉନ୍ମୁଖ । ଜୀବନ ଓ ଜଗତର ଗଭୀରତା ଦିଗକୁ, ଅତଳକୁ ସ୍ପର୍ଶ କରିବାର ଅଦମ୍ୟ ଅନୁସନ୍ଧିତ୍ସା ଓ ନିରନ୍ତର ପ୍ରୟାସ ମୋର କାବ୍ୟ ଦୃଷ୍ଟିକୁ ଅନେକ ଆଲୋକ ଓ ସୁଗନ୍ଧରେ ଐଶ୍ୱର୍ଯ୍ୟମୟ କରିପାରିଛି । ସମୟକୁ, ସ୍ଥାନକୁ ଓ ମଣିଷକୁ ମୁଁ ଖୁବ୍ ଭିତରୁ, ମୂଳରୁ, ମଞ୍ଜ ଠାରୁ ଦେଖିଛି, ବିଚାର କରିଛି । ବୁଝିଛି-ଦେଶ କାଳ ଭେଦରେ ମଣିଷ ସମାନ, ଖୁବ୍ ବେଶୀ ପରିବର୍ତ୍ତନ ନାହିଁ ତା'ର-ମଣିଷପଣ ତା'ର ନିର୍ଭୁଲ - ଯଦିଓ ସେହି ମଣିଷପଣ ହ୍ରାସ ପାଇଚାଲିଛି - ବସ୍ତୁବାଦର ଅଗ୍ରଗତି ସହିତ କବିତାରେ ଶବ୍ଦର ଗୁରୁତ୍ୱ ଅସୀମ । କାରଣ କବିତାରେ ଧ୍ୱନି ହିଁ ମୁଖ୍ୟ-ଧ୍ୱନି ଶବ୍ଦ ଭିତରୁ ବାହାରି ଶବ୍ଦକୁ ଅତିକ୍ରମ କରିଥାଏ । ବୃକ୍ଷ ଆଉ ବୃକ୍ଷ ହୋଇ ରହେନା, ତା'ର ଅର୍ଥ ଅସଂଖ୍ୟ ଓ ଅପରିମିତ ହୋଇଯାଏ । ଚନ୍ଦ୍ର ମଧ୍ୟ ଏଠାରେ ଚନ୍ଦ୍ର ହୋଇ ରହେନା, ତା'ର ଅର୍ଥ ବିସ୍ତାର ଘଟେ, ତାହା ଚନ୍ଦ୍ରଠାରୁ ଅଧିକ ହୁଏ, ବହୁତ କିଛି ଅଧିକ । କବିତା ସେହି ଅନନ୍ତ ଅସୀମ ଆଡ଼କୁ ଠାରି ଦେଖାଇ ଦିଏ । କବିତାରେ ଯାହା ଅଭିବ୍ୟକ୍ତ ହୁଏ, ତାହା ତେଣୁ ଲିଖିତ ଶବ୍ଦମାନଙ୍କ ଠାରୁ ବହୁ ଭାବରେ ବୃହତ୍ତର । ଅଥଚ ସେହି ବୃହତ୍ତରକୁ ମୂର୍ତ୍ତ କରିବା ପାଇଁ, ଗଢ଼ି ତୋଳିବା

ପାଇଁ ଶବ୍ଦ ଭିନ୍ନ ଅନ୍ୟ ପନ୍ଥା ନାହିଁ । ଶବ୍ଦର ଚିରାଚରିତ ଅର୍ଥ ବି ରହିଛି । ତେଣୁ କବିକୁ ଶବ୍ଦରେ ଶାଣ ଦେବାକୁ ହୁଏ, ପଜେଇବାକୁ ହୁଏ ତୀକ୍ଷ୍ଣତା ଆଣିବାକୁ ହୁଏ । ନିଜର ଲକ୍ଷ୍ୟ ଅଭିମୁଖୀ କରିବା ନିମିତ୍ତ ପ୍ରଯତ୍ନ କରିବାକୁ ହେଉଥାଏ । ତାହା ହିଁ କବିର ଶୈଳୀ-ସାଧନା ଓ ଶୈଳୀର ସହଯୋଗରେ ବକ୍ତବ୍ୟ ଲକ୍ଷ୍ୟସିଦ୍ଧ ହୋଇଥାଏ । କବି ଏହି ଲକ୍ଷ୍ୟସିଦ୍ଧ କବିତାର ଉପାସନା କରିବାରେ ବିଶ୍ୱାସୀ ।

ମୋ କବିତାରେ ଉଚ୍ଚାରିତ ସ୍ୱପ୍ନ ଓ ବେଦନା ମୋର ବ୍ୟକ୍ତିଗତ ବୃତ୍ତ ଅତିକ୍ରମ କରି ସାରା ବିଶ୍ୱର ସ୍ୱପ୍ନ ଓ ବେଦନା ପର୍ଯ୍ୟନ୍ତ ପ୍ରସାରିତ ହୋଇଯାଏ । ଏତାଦୃଶ ସାର୍ବଜନୀନ ସ୍ୱପ୍ନ ଓ ବେଦନା ଯଥାର୍ଥରେ ପାଠକକୁ ଯନ୍ତ୍ରଣାରୁ ମୁକ୍ତି ଦିଏ ଓ ଆନନ୍ଦରେ ଅଭିଷିକ୍ତ କରେ । ସବୁଠାରୁ ବିଷାଦବାଦୀ କବି ମଧ୍ୟ ଭବିଷ୍ୟତର ଉଜ୍ଜ୍ୱଳ ଆଶାକୁ କଳ୍ପନା ମାଧ୍ୟମରେ ଆଙ୍କିଥାଏ ଓ ସେହି ଆଶାଠାରୁ ଦୂରରେ ରହିବାର ଦୁଃଖକୁ ଭୋଗୁଥାଏ । ସେଥିପାଇଁ କବିତା ଯନ୍ତ୍ରଣାର ସ୍ୱର ଉତ୍ତୋଳନ କରୁଥିଲା ବେଳେ ଚିରନ୍ତନ ଆନନ୍ଦ ଓ ଆଶାବାଦ ଦିଗରେ ଉନ୍ମୁଖତା ଜଣାଇଥାଏ ଓ ପାଠକଠାରେ ଯନ୍ତ୍ରଣାର ମୁକ୍ତି ନିମିତ୍ତ ସଚେତନତା, ଜାଗ୍ରତ କରିଥାଏ । କୁତ୍ସିତୋ ମଧ୍ୟ ସୌନ୍ଦର୍ଯ୍ୟ ଦିଗରେ ଦୃଢ଼ତର ଅଭୀପ୍‌ସାକୁ ସୂଚିତ କରେ । କାରଣ ବକ୍ତବ୍ୟର ସାର୍ଥକତା ହିଁ କବିତାର ସୌନ୍ଦର୍ଯ୍ୟ । ଅସ୍ଥିର ବର୍ଷଣ ମେଘ ଉପରେ ସ୍ଥିର ଭାବେ ଆଶ୍ରୟ କରିଥିବା ଇନ୍ଦ୍ରଧନୁ ପରି ସ୍ଥାନ ଓ ସମୟର ଆବର୍ତ୍ତ ବାହାରେ ବିଶୁଦ୍ଧ କଳାତ୍ମକ ଚେତନା ତିଷ୍ଠି ରହିଥାଏ । ଏହି କାଳଜୟୀ ଅଶରୀରୀ ସୌନ୍ଦର୍ଯ୍ୟ ହେଉଛି କଳାର ଦେହ, କବିତାର ଶରୀର । କବି ବଡ଼ ଅସହାୟ-କାରଣ ଅଶରୀରୀକୁ ଶରୀର ଦେବା ପାଇଁ ସେ ବଦ୍ଧପରିକର । ଏହିପ୍ରକାର ବିଡ଼ମ୍ବନା ଭିତରେ ବହୁବର୍ଷ ଧରି ଧନ୍ଦି ହୋଇଛି ମୁଁ । ଛାଡ଼ି ପାରିନାହିଁ ତା'ର ମାୟା । ପହଞ୍ଚି ପାରିନାହିଁ ତା'ଠାରେ, ଛୁଇଁପାରିନି ତାକୁ । ଅଥଚ ତା'ର ହେଇଛୁଁ, ହେଇଛୁଁ, ଖେଳ ଭିତରୁ ଖସିଯାଇ ପାରିନାହିଁ । ଲାଗିଛି, ସେହି ଇନ୍ଦ୍ରଧନୁକୁ ଠିଆ କରେଇ ଦେବି ହାତ ଧରି, ପ୍ରତିବିମ୍ବକୁ ମୁଠେଇ ଧରିବି ହାତରେ, ଆଜି ନ ହେଲେ କାଲି, ଆଉଦିନେ.... ।

ବେଳେବେଳେ ଏହି ମାୟାଖେଳରେ ଭାଙ୍ଗିପଡ଼ିବାର ପାଳି ଆସିନାହିଁ, ନୁହେଁ । ଲାଗିଛି, ଆକାଶ ସତକୁ ସତ ଶୂନ୍ୟ । ଯେପରି ଦେଖାଯାଉଛି, ଠିକ୍ ସେହିପରି, ସେଠାରେ ଶବ୍ଦ ନାହିଁ କି ଭିନ୍ନ କିଛିର ଅସ୍ତିତ୍ୱ ନାହିଁ । ଭାବସମୂହ ଉଙ୍କିମାରି ଲୁଚିଯାଇଛନ୍ତି ସହସା-ନା, ଆଉ ଯେମିତି କିଛି ନାହିଁ । ଏହି ବିଷାଦବୋଧ ସହ ହାତ ମିଳେଇଛନ୍ତି ଅପ୍ରସ୍ତୁତ ସମୟର ଯୁଗରୁଚି । ଆଜିର ବସ୍ତୁବାଦୀ ସମାଜ, ବସ୍ତୁର ଗହ ଗହ ଗହଳି, କୁଆପଥର ପରି ଅଜାଡ଼ି ହୋଇପଡୁଛି ବସ୍ତୁ । କେବଳ ବସ୍ତୁ, ହୃଦୟବୃତ୍ତି ଛିନ୍ନଭିନ୍ନ ହୋଇପଡୁଛି । ବର୍ତ୍ତମାନ ପ୍ରୟୋଜନ ଓ ଉଦ୍ଦେଶ୍ୟ ନେଇ ମଣିଷର ସବୁକିଛି ସଂପର୍କ, ସବୁକିଛି ଖୋଜାଲୋଡ଼ା । ହୃଦୟର ପ୍ରଶ୍ନ ଉଠୁନାହିଁ ଏଇଲେ । ଏତିକିବେଳେ ମୋର ଏଇ କବିତା, ହଁ, ମୋର ହୃଦୟର ଉଚ୍ଚାରଣ ହିଁ ଅପର ହୃଦୟ ନିକଟରେ ଆବେଦନ ଜଣାଉଛି । ଅଥଚ, ଏଇ ଆବେଦନକୁ ଗ୍ରହଣ କରୁଛି କିଏ ? ହୃଦୟ ପାଇଁ ଚାହିଦା ଅଛି କାହାଠାରେ ? ହୃଦୟକୁ

ଖୋଜୁଚି କିଏ ? ମନକଥା କହିବା ପାଇଁ ଓ ଶୁଣିବା ପାଇଁ ଏତେ ଯଦି ପରାଙ୍ମୁଖତା, ତେବେ କବିତାର ସ୍ଥିତି ରହିଲା କେଉଁଠି ?

ବିଜ୍ଞାପନଭିତ୍ତିକ, ସମ୍ବାଦଭିତ୍ତିକ ବାର୍ତ୍ତାଳାପ ଓ ସ୍ଲୋଗାନ ଭିତରେ ହୃଦୟର ଅକପଟ, ଅନୁଚ୍ଚ କଥାପଦକ ଶୁଣିବାକୁ ଗରଜ ଅଛି କାହାର ? ଯଦି ନାହିଁ, ଥାଉ, ପଡ଼ିଥାଉ, କ୍ଷେତବାଡ଼ି ଶୂନ୍ୟ ରହୁ, ନିଷ୍ଟୁପ ହୋଇଯାଉ ଆକାଶର ଶବ୍ଦଗୁଣ- ବାଙ୍ମୟ ନୀରବତା ହଜିଯାଉ ଅନନ୍ତ ନିରବତା ଭିତରେ ।

ତଥାପି ଶବ୍ଦ ମରିପାରେନା, ହୃଦୟବୃତ୍ତି ସ୍ତବ୍ଧ ହୋଇଯାଇପାରେନା । ମଣିଷ କବିତାକୁ ଖୋଜେ-ପଢ଼ିବା ଶୁଣିବା ପାଇଁ ବ୍ୟାକୁଳ ହୁଏ । ଯେ ବିଶ୍ୱାସ ଖୁବ୍ ସ୍ଥିର ଯେ, ଏପରି ଏକ ସମୟ ଆସିବ ଯେବେ ବସ୍ତୁବାଦର ତିକ୍ତତା ଭିତରେ ମଣିଷ କ୍ଳାନ୍ତ ହୋଇପଡ଼ିବ, ହୋଇପଡ଼ିବ ଶୁଷ୍କପ୍ରାଣ । ସେତେବେଳେ ସେ ହୃଦୟକୁ ସ୍ପର୍ଶ କରିବାକୁ ଲୋଡ଼ିବ, ନିଜ ହୃଦୟର ବାର୍ତ୍ତା ପ୍ରତି ଧ୍ୟାନଶୀଳ ହେବ, ସେ ଖୋଜିବ କବିତା ଓ ସେଥିରୁ ଆଶ୍ୱାସନା ପାଇବ । ଆମର ଦୈନନ୍ଦିନ ବସ୍ତୁବାଦୀ ଜୀବନ ଆମ ନିଜର ଅଭ୍ୟନ୍ତରକୁ ଦୃକ୍‌ପାତ କରିବା ନିମିତ୍ତ ଆମକୁ ପ୍ରାୟ ସୁଯୋଗ ଦିଏନାହିଁ । ତେଣୁ ପ୍ରଖର ବସ୍ତୁବାଦର ବାହାରେ ଠିଆହେଲେ ହିଁ କବିକୁ ଓ ପାଠକକୁ କବିତା ଆତ୍ମଅନ୍ୱେଷଣ ପଥରେ ହାତଧରି ନେଇଯିବ । ଜୀବନର ହସ ଓ ଲୁହକୁ ଚାଖି ଚାଖି ବଞ୍ଚିବା ପାଇଁ ସମର୍ଥ କରାଇବ । ଭଲ ପାଇବାର ଆବେଗ ଓ ଯନ୍ତ୍ରଣାର ଆକୁଳତାକୁ ଯଥାର୍ଥରେ ବୁଝିବା ସୁଯୋଗ ଆଣିଦେବ । ଅନ୍ୟ ଅର୍ଥରେ ଜୀବନକୁ ଅର୍ଥମୟ କରି ତୋଳିବ ।

କାବ୍ୟସାଧନା ଏକ ଦୁର୍ଗମ ପଥ । ନିଷ୍ଠାପରତା ଓ ବ୍ୟାପ୍ତି ଏଥିପାଇଁ ଖୁବ୍ ଦରକାର । ଅନ୍ୟ ପ୍ରକାରରେ କହିଲେ ବ୍ୟାପ୍ତି ଓ ଏକନିଷ୍ଠତା ପରସ୍ପରର ପରିପୂରକ । ସାଧନା ପଥରେ ଯେତିକି ଅଭିନିବେଶ ଆବଶ୍ୟକ, ସେତିକି ହୃଦୟକୁ ବିପୁଳର ଦିଗକୁ, ଆକାଶର ଦିଗକୁ ଖୋଲିଧରିବା ଆବଶ୍ୟକ - ନିଜର 'ମୁଁ'ଟି ଯେତିକି ପ୍ରସରିଯିବ, ଅନ୍ୟ ଅର୍ଥରେ କବିଚେତନା ସେତିକି ନିଜକୁ ପ୍ରତ୍ୟାହାର କରିନେବ । ନଚେତ୍ ଅହଂକାର ଏକ ଶିଖର । ଏହି ଶିଖରରେ ଜଳ ରହିପାରେ ନାହିଁ, ତେଣୁ ଶିଖର ବନ୍ଧ୍ୟା-ଶସ୍ୟ ଉପୁଜିପାରେ ନାହିଁ ସେଠାରେ । ଅଥଚ ନିମ୍ନଭୂମି, ଯାହା ଉର୍ବର, ଜଳସିକ୍ତ ଭୂମି, ତାହା ଫଳବତୀ ହେଲେ ହେଁ, ତାହା ନିମ୍ନରେ ଥାଏ ବୋଲି ଅହଂକାରୀ ତା'ପ୍ରତି ଦୃକ୍‌ପାତ କରେ ନାହିଁ । କିନ୍ତୁ ସାଧକକୁ ନିରହଂକାର ହେବାକୁ ହୁଏ । ତା'ହେଲେ ସେ ନିମ୍ନଦେଶର ଉର୍ବର ଶସ୍ୟଶ୍ୟାମଳା ଭୂମିହୁଏ । କବିର ଏହି ବରପ୍ରାପ୍ତି ସଂସାରୀର ଯାବତୀୟ ବରପ୍ରାପ୍ତିଠାରୁ ଶ୍ରେୟସ୍କର ।

ଏହିଠାରେ ମୋର ଖୁବ୍ ବ୍ୟକ୍ତିଗତ ଅବଶୋଷ କିଛି ପ୍ରକାଶ କରିଦେବା ଅପ୍ରାସଙ୍ଗିକ ହେବ ନାହିଁ ବୋଲି ଭାବୁଛି । ଜଣେ ନାରୀ ଭାବରେ ଏଯାବତ୍ ମୋରଜୀବନ ଓ କାବ୍ୟସାଧନା ପଥରେ ପ୍ରତିବନ୍ଧକ ନାନାବିଧ । ତନ୍ମଧ୍ୟରୁ ଯାହା ସାଧାରଣରେ ବୋଧଗମ୍ୟ, ତାହାହେଲା - ଅନୁଭବର ବ୍ୟାପକତା । କୈଶୋର କାଳରୁ ମୁଁ ଘର ଭିତରେ ଆବଦ୍ଧ । ଏକ

ଉନ୍ନତ ଗ୍ରାମୀଣ ପରିବେଶରେ ବଢ଼ିଥିବାରୁ ହୁଏ ତ ମୁଁ କିଛିଟା ସଚେତନ ହୋଇପାରିଛି- ସୁଯୋଗ ପାଇଛି ନାଚ, ଗୀତ ଶିଖିବାର, ଡ୍ରାମା, ସିଲେଇ, କବିତା ରଚନା ଏସବୁରେ ପୁରସ୍କାର ପାଇଛି । ହେଲେ, ସବୁଥିରେ ମୋତେ ହାତେ ମାପି ଚାଖଣ୍ଡେ ଚାଲିବାକୁ ହୋଇଛି । ନିଛାଟିଆ ଆମ୍ବତୋଟାରେ ଖରାଦିନର ଦ୍ୱିପହରର ଦକ୍ଷିଣାପବନ, କୋଇଲିର କୁହୁ ଶୁଣିପାରି ନାହିଁ ମନଭରି -ସନ୍ଧ୍ୟା ବା ସକାଳର ନିର୍ଜନତା ଭିତରେ ବନପଥ ବା ନଦୀଘାଟରେ ବୁଲିପାରିନାହିଁ ଏକା ଏକା । ସମୁଦ୍ର ବେଳାର ବାଲି ଉପରେ ଗଡ଼ିଯାଇପାରିନାହିଁ, ଅଧରାତିରେ ଚନ୍ଦ୍ରଚର୍ଚ୍ଚିତ ପ୍ରାନ୍ତରରେ ବସିରହି ନିଜକୁ ହଜାଇ ଦେଇପାରିନାହିଁ କେବେ ବି । ନିଜର ସବୁତକ ଆବେଗ ଓ ବିହ୍ୱଳତାକୁ ବାନ୍ଧିରଖି ବାଟ ଚାଲିବାକୁ ପଡ଼ିଛି । ବହିର୍ଜଗତର ବିସ୍ତାରଠାରୁ ଦୂରେଇ ରହିବାକୁ ହୋଇଛି । କେମିତି ଲାଗେ ଏସବୁ - ଏକା ଏକା ଗାଡ଼ି ଚଲାଇ ଅଚିହ୍ନା ରାସ୍ତାରେ ଖୁବ୍ ଦୂରକୁ ଚାଲିଗଲେ, ପଦ୍ମପୋଖରୀ କୂଳରେ ବସି ପାହାନ୍ତାର ମିଠା ମିଠା ବାସ୍ନା ଭୋଗିଲେ-କେମିତି ଲାଗେ ଅଦୌ ଭୟ, ସଂକୋଚ ନ ଲାଗିଲେ ? ଜାଣିପାରିନାହିଁ । ଭାବେ, ସେ ଦିଗରୁ ମୋର ଉପଲବ୍ଧି ବ୍ୟାପକ ନୁହେଁ ।

ତଥାପି ମୁଁ ସଚେତନ ଯେ, କବିତା ଲେଖି ମଣିଷର ଭାଗ୍ୟକୁ ମୁଁ ସାମାନ୍ୟ ଭାବେ ବଦଳାଇ ପାରିନାହିଁ । ଭୋକିଲା ମୁହଁରେ ଭାତ ମୁଠାଏ ଦେବା, ରୋଗୀର ଶୁଶ୍ରୁଷା କରିବା, କବିତା ରଚନାଠାରୁ ଯଥେଷ୍ଟ ବଡ଼ ଓ ମହତ କାର୍ଯ୍ୟ । -ଏହା ଆର୍ଷବାକ୍ୟ । ତଥାପି କବିତା ମାଧ୍ୟମରେ ମଣିଷର ହୃଦୟବୃତ୍ତିକୁ ଉଦ୍‌ବୁଦ୍ଧ କରିବା ମାତ୍ର କବିର କର୍ମ । କବିର କର୍ମ ମଧ୍ୟ ଦୃଶ୍ୟ ବାସ୍ତବତାକୁ (Seen reality) ଓ ଉପଲବ୍ଧ ବାସ୍ତବତାକୁ ସ୍ୱପ୍ନ ଓ କଳ୍ପନା ମାଧ୍ୟମରେ ରୂପ ପ୍ରଦାନ କରିବା । ସେ କେବଳ ଦୃଶ୍ୟ ବାସ୍ତବତାର ରୂପକାର ନୁହେଁ, ଅନ୍ତରାଳ ବାସ୍ତବତାର ମଧ୍ୟ ପ୍ରମୂର୍ତ୍ତକାରୀ । କାରଣ, ଆଖିକୁ ଯାହା ଦେଖାଯାଏ ସେ କେବଳ ଏକମାତ୍ର ସତ୍ୟ ନୁହେଁ । ଅନ୍ତରାଳରେ ମଧ୍ୟ ସତ୍ୟ ଅବସ୍ଥାନ କରିଥାଏ ? ଯିଏ କହିଥିଲେ ସେ ବୋଧେ ଏହା ଉପଲବ୍ଧ କରିଥିଲେ- 'ହିରଣ୍ମୟେନ ପାତ୍ରେଣ ସତସ୍ୟଂ ପିହିତଂ ମୁଖଂ'- ଅନ୍ତରାଳରେ ମଧ୍ୟ ସତ୍ୟ ଅଛି -ଦୃଶ୍ୟ ସତ୍ୟ ଅପେକ୍ଷା ଏହି ଅଦୃଶ୍ୟ, ଲୁକ୍କାୟିତ ସତ୍ୟ କମ୍ ବାସ୍ତବ ନୁହେଁ । କବି ତାହାର ସନ୍ଧାନ କରିବାରେ ବ୍ୟାପୃତ ରହିଥାଏ ।

ସେଥିପାଇଁ ମଣିଷର ଦୁଃଖ ବେଦନାର, ଆଶା ଓ ଅଭୀପ୍ସାର କଥା କହିଲା ବେଳେ ମୁଁ ନିଜେ ସେଥିରେ ସଂଯୁକ୍ତ ହୋଇଯାଏ । ବୋଧହୁଏ ମୋ ଭିତରେ ମୁଁ ସମଗ୍ର ବିଶ୍ୱର ମାନବର ଚିରନ୍ତନ ଅଭୀପ୍‌ସାକୁ ଲେଖି ରଖିଥାଏ । ଯାହା ପ୍ରତ୍ୟେକ କବି କରି ଲାଗିଥାଏ । କିଛି ଗୋଟିଏ ଗଢୁଥାଏ- ନୀରବତାକୁ ଧ୍ୱନିରେ ରୂପାନ୍ତରିତ କରୁଥାଏ - ଅର୍ଥମୟତାକୁ ତିଆରି କରୁଥାଏ । ତାହା ବାରମ୍ବାର ଭାଙ୍ଗିଯିବା ସତ୍ତ୍ୱେ ବି କବି କଦାପି କ୍ଲାନ୍ତ ହୁଏନାହିଁ, ତେଣୁ ଗଢ଼ିବାରୁ କ୍ଷାନ୍ତ ହୁଏନାହିଁ ମଧ୍ୟ ।



# ଲୋକପୂଜା ଓ ସଂସ୍କୃତି ନୀରାଜନା

କଲିକତାସ୍ଥିତ ରାମକୃଷ୍ଣମିଶନର ଆନ୍ତର୍ଜାତିକ ଅତିଥି ଭବନର କାଉଣ୍ଟର । ଆମେ ପହଞ୍ଚିଲାମାତ୍ରେ ସେଠାରେ ପୂର୍ବରୁ ବସିଥିବା ମେମ୍‌ଛବି (ତାଙ୍କ ନାମମେମ୍ ଚୌବି ଦେବୀ, ମଣିପୁରର) ହଠାତ୍ ଉଠିପଡ଼ି ତାଙ୍କ ଭାଷାରେ ମତେ 'ପ୍ରତିଭା ଶତପଥି' ବୋଲି କହି କୁଣ୍ଢାଇ ପକାଇଲେ । ''ମନେଅଛି, ୧୯୯୭ରେ ଭୁବନେଶ୍ୱର ଆମ ସହିତ ସାକ୍ଷାତ ? ସାହିତ୍ୟ ଏକାଡେମୀ ତରଫରୁ ଆମେ ଯାଇଥିଲୁ, ମୁଁ ଇବୋଞ୍ଚା ଓ ଅନ୍ୟମାନେ ?'' କି ଆଗ୍ରହ ଉଚ୍ଛଳ ତାଙ୍କ ସ୍ୱର ! ମେମ୍ ଛବି ହଁ, ଭୁବନେଶ୍ୱର ପୁସ୍ତକମେଳାରେ ବୁଲୁଥିବା ବେଳେ ମତେ କେହି ଡାକି ଦେଲେ, ଆସନ୍ତୁ ଆପଣଙ୍କୁ ଖୋଜୁଛନ୍ତି ଏମାନେ । ପୁସ୍ତକମେଳାରେ, ମଧ୍ୟଭାଗରେ ସେମାନେ ଠିଆହୋଇଥାନ୍ତି ''ଆମେ ଅପେକ୍ଷା କରିଥିଲୁ ଆପଣଙ୍କୁ । ଏଠିକା ସାହିତ୍ୟ ଏକାଡେମୀ କହିଲେ, ଏଠିକୁ ଆପଣ ନିଶ୍ଚୟ ଆସିବେ । ଆପଣଙ୍କ ଘର ଠିକଣା ବା ଫୋନ୍ ମିଳିଲା ନାହିଁ ତେଣୁ'' (ଅଳ୍ପଦିନ ତଳେ ମୁଁ ଅବଶ୍ୟ ଘରବଦଳ କରିଥିଲି) । ଖୁବ୍ ପ୍ରୀତ ହେଲି ସେମାନଙ୍କୁ ଦେଖି । ପୁସ୍ତକମେଳା ମଧ୍ୟଭାଗରେ ଥିବା କ୍ୟାଣ୍ଟିନ୍‌ରେ ବସି ଚା ଜଳଖିଆ ଖୁଆଇଲି । ଘଣ୍ଟାଏ ଖଣ୍ଡେ ବସିଲୁ । ପ୍ରତ୍ୟେକ ବ୍ୟାଗରୁ କାଢ଼ିଥିଲେ ପରିଚୟପତ୍ର ଓ କବିତା । କବିତାର ଇଂରାଜୀ ଅନୁବାଦ ବଢ଼ାଇଦେଇଥିଲେ । କେହି କିନ୍ତୁ ପଢ଼ି କି ଶୁଣାଇ ନଥିଲେ । ତାର କାରଣ ଏବେ ବୁଝିଲି । ମଣିପୁରର ସମସ୍ତଙ୍କ କବିତାର ଇଂରାଜୀ ଅନୁବାଦକୁ ପଢ଼ିଲେ ଜଣେ ମଣିପୁରୀ ନିମନ୍ତ୍ରିତ କବି । ସେ ଶିଲଂ ୟୁନିଭରସିଟିରେ ଇଂରାଜୀ ଅଧ୍ୟାପକ, ତାଙ୍କ ନାମ ରବିନ୍ ଏସ. ନଙ୍ଗମ୍ । ମେମ୍ ଛବି ସମସ୍ତଙ୍କୁ ଚିହ୍ନାଇଦେଲେ, ଇମ୍ଫାଲରୁ ଆସିଛନ୍ତି ଏସ୍. ଭାନୁମତୀଦେବୀ, ଇବୋପିସାକ୍ ସିଂ, ରବିନ୍ ଓ ଶରତ୍ ଥିୟାମ୍ । ମନେ ପଡୁଥିଲା ୧୯୯୮ରେ ମୋ ଘରକୁ ଫୋନ୍ କରି ଖୋଜି ଖୋଜି ପହଞ୍ଚିଥିଲେ ତ୍ରିପୁରାରୁ, ଅଗରତାଲାରୁ ଆସିଥିବା କେତେକ କବି, ସାହିତ୍ୟ ଏକାଡେମୀ ଲେଖକ ବିନିମୟ କାର୍ଯ୍ୟକ୍ରମରେ ।

ଯା'ହଉ, ଯା'ପରେ ଆମର ଅତିଥିଭବନରେ ରହିବା ବ୍ୟବସ୍ଥା ହେଲା । ପୂର୍ବରୁ ଆସାମୀ କବି ଅନୁପମାଙ୍କ ସହ ମୋର ରହିବା ବ୍ୟବସ୍ଥା ହୋଇଥିଲା । ଲିଫ୍ଟ୍‌ରେ ଗଲୁ, ୪ ମହଲାରେ ରୁମ୍ । ଅନୁପମା ବି ଖୁବ୍ ଗଦ୍ ଗଦ୍ - ଆସାମର ବୋଡ଼ୋ ସଂପ୍ରଦାୟର ଝିଅ ।

କେବେ ସାକ୍ଷାତ ହୋଇନି ସତ, ମାତ୍ର ପ୍ରାଣବନ୍ତ ଝିଅଟିଏ । ଇଂରାଜୀ କହିବା ଅବସ୍ଥା ଶୋଚନୀୟ । ଅବଶ୍ୟ ସାଧାରଣ ଭାବେ ଆଦାନପ୍ରଦାନର ପ୍ରତିବନ୍ଧକ ନ ଥିଲା । ୧୯୬୦ରେ ତାଙ୍କର ଜନ୍ମ । ସମସ୍ତଙ୍କ ସହ ଖୁବ୍ ଆତ୍ମୀୟତାରେ ମିଶୁଥାଏ ସେ । ଛୋଟ ଛୋଟ ପ୍ରେମକବିତା କେତୋଟି ଲେଖିଥିଲା । ରାତି ୧୨ଟା ଯାଏ ମତେ ଶୁଣାଇଲା । କେତୋଟି କବିତା ବି ଭଲ ଲାଗିଲା । ମଣିପୁରୀ ଓ ଆସାମୀ କବିମାନେ ମେଖଳା ପିନ୍ଧୁଥିଲେ । ଆଜୀବନ ୧୨ ହାତି ଶାଢ଼ୀ ଛନ୍ଦି ହେଉଥିବା ମତେ ମେଖଳା ପିନ୍ଧିବା ଦେଖିବାକୁ ଆମୋଦିତ ଲାଗୁଥାଏ । ୧୯୯୬ ରେ ଆମେ ରାଜ୍ୟ ସାହିତ୍ୟ ଏକାଡେମୀ ତରଫରୁ ଆସାମ ଯାଇଥିଲୁ । ସେଠାରେ ବି ସଂଭ୍ରାନ୍ତ ମହିଳାମାନେ, କବି ଓ ଲେଖକଙ୍କ ପତ୍ନୀଗଣ ମେଖଳା ପିନ୍ଧୁଥିବାର ଦେଖିଥିଲୁ । ଅନୁପମାଠାରୁ ତାର ମେଖଳା ପିନ୍ଧିବା କାଇଦାଟା ବି ମୁଁ ଶିଖିନେଲି ।

ଏଇଠି କହିରଖେ, ଆମ ନିବାସସ୍ଥଳୀକଥା । ଓଡ଼ିଶାର କେହି କେହି ନିଶ୍ଚୟ ସେଠାରେ ଅତିଥି ହେବାର ସୁଯୋଗ ଲାଭ କରିଥିବେ । କିନ୍ତୁ ମୋର ମତରେ, କୌଣସି ତ୍ରିତାରକା ହୋଟେଲଠାରୁ ତାର ସ୍ୱାଚ୍ଛନ୍ଦ୍ୟ କମ୍ ନୁହେଁ । ଗୋଲ୍‌ପାର୍କଠାରେ ଅବସ୍ଥିତ ଏହି ଅତିଥିଭବନ ବିଶାଳ, ପରିବ୍ୟାପ୍ତ, ପରିଚ୍ଛନ୍ନ ଓ ସବୁଠୁଁ ବଡ଼ କଥା ଏଠାରେ ରାଜୁତି କରୁଥିବା ନୀରବତା । ସତେ କି କଲିକତା ସହରର ସବୁତକ ନୀରବତା, କୋଳାହଳର ତୀବ୍ରତାଡ଼ନାରେ ଆସି ଏଇଠି ଶରଣ ପଶିଛନ୍ତି, ସ୍ୱୟଂ ଠାକୁର ରାମକୃଷ୍ଣଙ୍କର । ବିରାଟ ଫୁଲ ବଗିଚା, ସୁସଜ୍ଜିତ, ଯୋଜନାବଦ୍ଧ- ବିଭିନ୍ନ ରଙ୍ଗ ଓ ଆକାରର ଫୁଲ ମଧ୍ୟ, ଗନ୍ଧରେ ଭରପୂର । ଡାଇନିଂ ହଲ୍ ଅନୁରୂପ ଭାବେ ପରିଚ୍ଛନ୍ନ । ଖାଦ୍ୟ ଅତ୍ୟନ୍ତ ସ୍ୱାଦିଷ୍ଟ ଓ ସ୍ୱାସ୍ଥ୍ୟ-ସମ୍ମତ । କେବଳ ଏସବୁ ସମ୍ଭବ ହୋଇପାରିଛି ଏକ ଶୃଙ୍ଖଳା ମାଧ୍ୟମରେ । ଚା, ଜଳଖିଆ, ମଧ୍ୟାହ୍ନଭୋଜନ, ରାତ୍ରିଭୋଜନ ଏସବୁର ନିର୍ଦ୍ଦିଷ୍ଟ ଗୋଟେ ସମୟସୀମା ଅଛି । ସେଥିରୁ ଏପାଖ ସେପାଖ ହେଲା ଯଦି, ତୁମେ ଅଭୁକ୍ତ ରୁହ । ଅନ୍ତେବାସୀ ବ୍ୟତୀତ ବାହାର କୌଣସି ବ୍ୟକ୍ତି ଅତିଥିଭବନ ଭିତରକୁ ଯିବା ନିଷେଧ । ଏଥିରେ ଆମେ ଅବଶ୍ୟ ସାମାନ୍ୟ ବ୍ୟତିକ୍ରମ କରିଥିଲୁ । ଲୁଚାଇ ଲୁଚାଇ ଶ୍ରୀ ରାମକୃଷ୍ଣଙ୍କ ନିକଟରେ କ୍ଷମାପ୍ରାର୍ଥନା କରି । ଥରେ ଜଣେ କବିଙ୍କ ସଂପର୍କୀୟ ଭାଇ ଓ ଭାଉଜଙ୍କୁ ରୁମ୍ ଭିତରକୁ ନେଇଯାଇଥିଲୁ ଓ ପ୍ରାୟ ୩ ଘଣ୍ଟା ପରେ ରାତି ୧୦ଟାରେ ସେମାନେ ତାଙ୍କ ନିଜ ଘରକୁ ଫେରିଥିଲେ । ଯେହେତୁ ଆମେ ୨/୩ ଦିନର ଅତିଥି, ସେ ଯୋଗୁ ବି ନିୟମ କଡ଼ାକଡ଼ି ଲାଗୁ ହେଉ ନଥିଲା । କବି ସମ୍ମିଳନୀର ୨ୟ ଦିନ ଘଟଣା । ଅନୁପମା ଓ ମୁଁ ଦୁହେଁ ବିଳମ୍ବରେ ଶଯ୍ୟା ତ୍ୟାଗ କରୁ । ସେଦିନ ମୁଁ ୮ଟାରେ ଉଠିଲାବେଳକୁ ଅନୁପମା ତତ୍‌କ୍ଷଣାତ୍ ଗାଧୁଆ ଘରେ ପଶିଛନ୍ତି । ତେଣୁ ମୁଁ ଅଗତ୍ୟା ଅପେକ୍ଷା କରି ରହିଲି । ଆମକୁ ୯.୩୦ର ଗାଡ଼ିରେ ବସିବାକୁ ହବ, ଜୀବନତାରା ଭବନରେ ପହଞ୍ଚିବୁ । ଅନୁପମା ତାର ପ୍ରସ୍ତୁତ ହେଇ ମୋ ଆଗରୁ ଡାଇନିଂକୁ ଚାଲିଗଲା । ମୁଁ ଡାଇନିଂରେ ପହଞ୍ଚିଲା ବେଳକୁ ଘ୯.୨୦ମିନିଟ୍ । ଡାଇନିଂ ହଲ୍ ଲାଇଟ୍ ଲିଭିଛି । କେହି ନାହାନ୍ତି । କେବଳ ଅନୁପମା ପ୍ରାତରାଶ ସାରି ଚା ପିଉଚି ଏକା ଏକା । ମ୍ୟାନେଜର ଠିଆ ହୋଇଥିଲେ । "ମ୍ୟାଡାମ୍,

ଏବେ ତ ଆଉ ବ୍ରେକ ଫାଷ୍ଟ ଦିଆଯିବ ନାହିଁ। ୯ଟା ପରେ ବନ୍ଦ।'' ମୁଁ ଚା ବି ଖାଇନି। ଚା ଦିଆଯାଏ ରୁମ୍‌ରେ, ସକାଳ ୬ଟାରେ। ବୟ୍ ଚା ପାଇଁ ଡାକିଲେ ଅନୁପମା ଓ ମୁଁ ମନା କରିଦଉ - ''ଦରକାର ନାହିଁ, ଯାଆ।'' ତଥାପି, ମୁଁ କହିଲି, ଠିକ୍ ଅଛି, ମୁଁ ବିସ୍କୁଟ କିଣିନେବି। ସ୍ମିତହସି ମ୍ୟାନେଜର କହିଲେ ଆପଣ ସାହିତ୍ୟ ଏକାଡ଼େମୀର ଅତିଥି, ଏଠାରେ ନୂଆ। ଦୟା କରି ବସନ୍ତୁ। ଯାହା ଅଛି ମୁଁ ପଠାଉଛି।'' ମୋର ବାରଣ ସତ୍ତ୍ୱେ ସେ ପାଉଁରୁଟି ଓ କ୍ଷୀର ପଠାଇଲେ। ମୋର ବି ଯଥେଷ୍ଟ ହେଇଗଲା।

ଜାନୁଆରୀ ୧୦ ତାରିଖ ଦିନ ରାଜଧାନୀ ଏକ୍ସପ୍ରେସରୁ ଓହ୍ଲାଇ ମିଶନର ଅତିଥି ଭବନରେ ପହଞ୍ଚିଥିଲୁ ଆମେ ୩ ଜଣ, କବି ସୌରିନ୍ଦ୍ରବାରିକ, କବି ହରିହର ମିଶ୍ର ଓ ମୁଁ। ଏଥର ସାରାଭାରତର ୪ ଗୋଟି ଅଞ୍ଚଳରେ ଏହି ସଂସ୍କୃତି ନୀରାଜନା ଉତ୍ସବ ପାଳିତ ହେଉଥିଲା। ପୂର୍ବାଞ୍ଚଳ ଏକାଡେମୀ ମାଧ୍ୟମରେ ଜାନୁଆରୀ ତା ୧୧/୧୨ ଦୁଇ ଦିନ ଧରି କଲିକତାଠାରେ କବି ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା। ମୋ ମତରେ ଭାରତୀୟ ସାହିତ୍ୟ ଏକ ପଦ୍ମଫୁଲ ସଦୃଶ ଓ ଏହାର ୬ ଗୋଟି ନିକଟବର୍ତ୍ତୀ ପାଖୁଡ଼ା ହେଲା, ଓଡ଼ିଶା, ବଙ୍ଗଳା, ଆସାମୀ, ମୈଥିଳୀ, ମଣିପୁରୀ ଓ ନେପାଳୀ ଭାଷା। ପ୍ରତିଭାଷାରୁ ୫/୬ ଜଣ କବି ନିମନ୍ତ୍ରିତ ହୋଇ ଆସିଥାନ୍ତି। ଉଦ୍‌ଘାଟନ ଉତ୍ସବକୁ ବାଦ୍ ଦେଲେ ଛଅ ଗୋଟି ଅଧିବେଶନ ହେଲା। ଓଡ଼ିଆ କବିତାର ଅଧିବେଶନରେ ମୁଁ ଅଂଶଗ୍ରହଣ କରିବାକୁ ନିମନ୍ତ୍ରଣ ପାଇଥିଲି। ଭଲ ଲାଗିଥିଲା। ଏଇଥିପାଇଁ ଯେ, ପ୍ରାୟ ଅନେକବର୍ଷ ଧରି (୧୮ ବର୍ଷ ପ୍ରାୟ) କେନ୍ଦ୍ର ସାହିତ୍ୟ ଏକାଡେମୀ ମୋତେ କୌଣସି କବିତା/ସାହିତ୍ୟ କାର୍ଯ୍ୟକ୍ରମରେ ଭାଗନେବାକୁ ସୁଯୋଗ ଦେଇ ନଥିଲେ। ବୋଧହୁଏ ମୋତେ ପୂରାପୂରି ଭୁଲିଯାଇଥିଲେ।

ତା୧୧ରିଖ ୧୦ଟା ବେଳେ ଉଦ୍‌ଘାଟନ ଉତ୍ସବ ଅନୁଷ୍ଠିତ ହେଲା। ବଙ୍ଗଳାର ପ୍ରଖ୍ୟାତ କବି ସୁନୀଲ ଗଙ୍ଗୋପାଧ୍ୟାୟ ଉଦ୍‌ଘାଟନ କଲେ ଓ ସଭାପତିତ୍ୱ କରିଥିଲେ ଏକାଡେମୀର ସଭାପତି, ଅଗ୍ରଗଣ୍ୟ କବି ରମାକାନ୍ତ ରଥ। ସୁନୀଲ ଗଙ୍ଗୋପଧ୍ୟାୟ ନିଜେ ଜଣେ ସାମ୍ବାଦିକ, କବି ଓ ଔପନ୍ୟାସିକ ଭାବେ ଖ୍ୟାତି ଅର୍ଜନ କରିଥିଲେ ହେଁ, ସେ ନିଜକୁ ଜଣେ କବି ବୋଲି ଭାବିବାକୁ ଶ୍ରେୟ ମଣନ୍ତି, ଏହାଥିଲା ତାଙ୍କର ବକ୍ତବ୍ୟ। ମୁଁ ମଧ ତାଙ୍କ କବିତାର ଜଣେ ମୁଗ୍ଧପାଠିକା। କବି ରମାକାନ୍ତ ଏକ ସଂକ୍ଷିପ୍ତ ତଥା ସାରଗର୍ଭକ ଇଂରାଜୀ ଭାଷଣ ପାଠ କରି କହିଲେ ଯେ- ''କବି ପୂର୍ଣ୍ଣ ସ୍ୱାଧୀନ ହୋଇ ଲେଖିବା ସବୁଠାରୁ ଉତ୍ତମ। ମାତ୍ର ଅତ୍ୟଧିକ ସ୍ୱାଧୀନତା ମଧ କବିତା-ବିରୋଧୀ। ଯାହା ପ୍ରକୃତ କବିତା ନୁହଁ, ତାହା ଆପେ ଆପେ ପୋଛି ହୋଇଯିବ। ...କବି ଚାହେଁ ଏପରି କିଛି କବିତା ଲେଖିବ, ଯାହା ପାଠ୍ୟ (text) ବାହାରେ ହିଁ ରହିଥିବ, ଅବଶ୍ୟ ଏ ପ୍ରକାର କବିତା ପାଇଁ ପାଠକ ମଧ କବିତ୍ୱର ଅଧିକାରୀ ହୋଇଥିବା ଦରକାର। ...ଗୋଟିଏ କବିତାକୁ ଗ୍ରହଣ କଲା ବେଳକୁ, ଯାହା ହେଲେ ବି, ପାଠକ କବି ସହ ସମସ୍ତରର କଳ୍ପନାଶକ୍ତିର ଅଧିକାରୀ ହେବା ଚାହି। କବିତାଟିଏ ପଢ଼ିସାରି ''ମୁଁ ବରାବର ଏ ୟା କହିବାକୁ ଚାହୁଁଥିଲି ଓ''କବିଙ୍କ ଭାଷାାରେ ହିଁ କହିବାକୁ ଚାହୁଁଥିଲି, '' ଏକଥା ପାଠକ କହିବା ଉଚିତ। ଚିନ୍ତାର ବିଷୟ

ଆଜିର ପରିସ୍ଥିତିରେ ଉପରୋକ୍ତ ଶ୍ରେଣୀର ପାଠକଙ୍କ ସଂଖ୍ୟା ଶୋଚନୀୟ ଭାବେ ହ୍ରାସ ପାଇ ଯାଉଛି । କିଏ ଜାଣେ, ଆଜି ହଉ, କାଲି ହଉ, ଏ ପ୍ରକାର ପାଠକ ପୂରାପୂରି ନିଶ୍ଚିହ୍ନ ହୋଇଯିବେ । ପୂର୍ବେ ଶିକ୍ଷିତଙ୍କ ସଂଖ୍ୟା କମ୍ ଥିଲା, କିନ୍ତୁ କବିତାକୁ ଗ୍ରହଣ କରିବା ଲୋକଙ୍କ ସଂଖ୍ୟା ଯଥେଷ୍ଟ ଅଧିକ ଥିଲା । ** ଏସବୁ ସତ୍ତ୍ୱେ ମୁଁ ନିଶ୍ଚିତ ଯେ କବିତା ବଞ୍ଚିରହିବ । ** ବରଂ ଦୁଃଖ ଯାତନା ଲଦିଦେବା ପାଇଁ ପ୍ରଚୁର ବ୍ୟବସ୍ଥା ରହିଥିଲାବେଳେ କବିତା ହିଁ କେବଳ ଯନ୍ତ୍ରଣାକୁ ବୁଝିପାରେ । ମଣିଷ କେବେ ବି ଯନ୍ତ୍ରଣାକୁ ମୂଳପୋଛ କରିପାରିବ ନାହିଁ, ଅତଏବ, ତା ଯନ୍ତ୍ରଣାକୁ କେହି ବୁଝୁ ଓ ଭାଗକରି ନେଉ, ଏହା ସେ ନିଶ୍ଚୟ ଚାହିଁବ ।''*** ଏହି ବକ୍ତବ୍ୟ ପ୍ରଦାନ ପରେ ସେ ସ୍ୱରଚିତ ଓଡ଼ିଆ କବିତା 'ଗଣ୍ଡିଧନ' ଆବୃତ୍ତି କରିଥିଲେ ।

ଏହି ଅଧିବେଶନରେ ଅନ୍ୟମାନଙ୍କ ମଧ୍ୟରେ ଥିଲେ କବି ନୀରେନ୍ଦ୍ର ଚକ୍ରବର୍ତ୍ତୀ, ସୁଭାଷ ମୁଖୋପାଧ୍ୟାୟ, ଇବୋପିସାକ୍ ସିଂ, ହୀରେନ୍ ଭଟ୍ଟାଚାର୍ଯ୍ୟ, କବି ସୌଭାଗ୍ୟ ମିଶ୍ର, ଚନ୍ଦ୍ରଭାନୁ ସିଂ, ୟଶ ୟଂଜନ୍ । ନୀରେନ୍ଦ୍ର ଚକ୍ରବର୍ତ୍ତୀ ତାଙ୍କ ସଂକ୍ଷିପ୍ତ ସରସ ଭାଷଣ ପ୍ରଦାନ କରି, ଆଧୁନିକ ଜୀବନର ଅସହାୟତାକୁ ନେଇ ଫ୍ଲାଟ୍‌ଘର ସଂପର୍କୀୟ କବିତା ପଢ଼ିଥିଲେ । ପ୍ରତ୍ୟେକ କବିଙ୍କୁ ୧୫ ମିନିଟ୍ କରି ସମୟ ଦିଆଯାଇଥିଲା । ନିଜ ଭାଷାର କବିତା ଓ ପରେ ପରେ ତାର ଇଂରାଜୀ ଅନୁବାଦ ପଢ଼ିବାକୁ ହେଉଥିଲା । ଓଡ଼ିଆ ଓ ବଙ୍ଗଳା କବିଗଣ ନିଜ କବିତାର ଅନୁବାଦ ନିଜେ ପାଠକରୁଥିଲେ । କିନ୍ତୁ ଆସାମୀ, ମଣିପୁରୀ କବିମାନଙ୍କର କବିତାର ଇଂରାଜୀ ଅନୁବାଦ ପଢ଼ିଲେ ରବିନ୍ ଏସ୍. ନଙ୍ଗମ୍ । ମୁଁ ତାଙ୍କୁ କହିଲି, ୨ୟ ଦିନଟି ସବୁ ଅଧିବେଶନ ମଧ୍ୟରେ ତୁମଠାରୁ ହିଁ ଅଧିକ କବିତା ଶୁଣିବାକୁ ମିଳିଲା । So, This day is the day of Mr. Robin' ସେ ମଧ୍ୟ ଉପଭୋଗ କଲେ । ଅନୁପମାର ବନ୍ଧୁ ହୋଇଥିବାରୁ ମୋର ତାଙ୍କ ସହ ଯୋଗାଯୋଗ ମଧ୍ୟ ଅଧିକ ଥିଲା । ପ୍ରଥମ ଦିନ ପ୍ରଥମ ଅଧିବେଶନରେ ଓଡ଼ିଆ କବିତା ପାଠ କରାଗଲା । ସଭାପତିଥିଲେ କବି ସୀତାକାନ୍ତ ମହାପାତ୍ର । ଆମମାନଙ୍କ ପରିଚୟ ପ୍ରଦାନ କରି ସେ ୨/୩ଟି ଲେଖାଁ ବାକ୍ୟ କହିଲେ, ପ୍ରଥମେ ହରିବାବୁ, ତା'ପରେ ମୁଁ ଓ ପରେ ସୌରିନ୍ଦ୍ର ସାର୍ କବିତା ପଢ଼ିଲେ । ମୋର ୩ଟି କବିତାରୁ ୧ମ ଓ ୩ୟକୁ ଅନୁବାଦ କରିଥିଲେ ଯଶସ୍ୱୀକବି ଜୟନ୍ତ ମହାପାତ୍ର ଓ ୨ୟ କବିତାଟିର ଅନୁବାଦକ ଥିଲେ କବି ବିପିନ୍ ନାୟକ । ଆମର ଅଧିବେଶନ ୨/୩ଟାରୁ ପ୍ରାୟ ୪ଟା ଯାଏଁ ଚାଲିଲା । ସବୁ ଅଧିବେଶନ ଶେଷରେ ଧନ୍ୟବାଦ ଅର୍ପଣ କରୁଥିଲେ ପୂର୍ବାଞ୍ଚଳ ଏକାଡେମୀର ସମ୍ପାଦକ ଶ୍ରୀ ରାମକୁମାର ମୁଖୋପଧ୍ୟାୟ ଏବଂ ଅନ୍ୟାନ୍ୟ କାର୍ଯ୍ୟରେ ସହଯୋଗ କରୁଥିଲେ ଶାନ୍ତନୁ, ମିହିର ଓ ଅନ୍ୟମାନେ ।

ପରଦିନ ୫ଟି ଅଧିବେଶନ, ମଧ୍ୟାହ୍ନ ବିରତି ପୂର୍ବରୁ ନେପାଳୀ ଓ ଆସାମୀ ଅଧିବେଶନ ଚାଲିଲା । ପରେ ମୈଥିଳୀ ଓ ମଣିପୁରୀ ଅଧିବେଶନରେ କବିତା ପାଠ କରାଗଲା । ଦୁଇ ଦିନ ପାଇଁ ୧୦.୩୦ରୁ ୫.୩୦ ଯାଏଁ କବିତାର ମୂର୍ଚ୍ଛନାରେ ଭରି ଉଠୁଥିଲା ପ୍ରେକ୍ଷାଗୃହ । ମୁଁ ଗୋଟିଏ କଥା ଲକ୍ଷ୍ୟକଲି-ପୂର୍ବାଞ୍ଚଳ କବିମାନଙ୍କ ଭାବଓ ପ୍ରକାଶଭଙ୍ଗୀରେ ଗୋଟେ ଅଦ୍ଭୁତ ମେଳ ଅଛି । ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଭାବମୟତା ପାଇଁ

ବ୍ୟାକୁଳ ଜିଜ୍ଞାସା ଭରି ରହିଛି । ପ୍ରେମିକ ପ୍ରେମିକା, ପତିପତ୍ନୀ, ବନ୍ଧୁ, ବନ୍ଧୁ, ମାତା ସନ୍ତାନ ଏ ସମସ୍ତଙ୍କ ସଂପର୍କ ମଧ୍ୟରେ ପ୍ରଚୁର ଶ୍ରଦ୍ଧା ଓ ଆତ୍ମୀୟତାର ଚିତ୍ର ବିଭିନ୍ନ ପ୍ରତୀକ କଳ୍ପନା ମାଧ୍ୟମରେ ଉଚ୍ଚାରିତ ହୋଇଛି । ଦେଶର ସାଂପ୍ରତିକ ଅବସ୍ଥା, ଅସ୍ଥିରତା, ହିଂସା, ଦାରିଦ୍ର୍ୟ ଏସବୁକୁ ନେଇ ଗଭୀର ଉଦ୍‌ବେଗ, ସମବେଦନା ତଥା ଶପଥର କବିତା ମଧ୍ୟ ପାଠ କରାଗଲା । ସବୁଠାରୁ ଆଶ୍ଚର୍ଯ୍ୟ ଯେ, ପ୍ରତିଟି ଅଧିବେଶନରେ 'ମାଆ' ସଂପର୍କୀୟ କବିତା ଏକ ବା ଏକାଧିକ କବି ପାଠ କରିଥିଲେ । ମୁଁ ୩ ଗୋଟି କବିତାରୁ ଗୋଟିଏ କବିତା ମାଆ ଓ ଭାରତମାତାଙ୍କୁ ଏକଭୂତ କରି ସେଠାରେ ଉପସ୍ଥାପନ କରିଥିଲି । ଏହି କବିତାର ଶୀର୍ଷକ ଥିଲା 'ଜନନୀ' ଓ ଏହା ୧୩/୧୪ ବର୍ଷ ତଳର ଲେଖା- 'ମହାମେଘ' ସଂକଳନରେ ସ୍ଥାନିତ । ଏ କବିତାଟି ସେଠାରେ ଖୁବ୍ ଆଦୃତ ହେଲା । ଅନ୍ୟାନ୍ୟ ଅଧିବେଶନରେ ମାଆ ସଂପର୍କୀୟ କବିତାରେ କେଉଁଠି ଜନ୍ମଦାତ୍ରୀ ମାତା, ଦେଶମାତୃକା ବା ପ୍ରତୀକାତ୍ମକ ମୂଳ ଉତ୍ସକୁ ଗ୍ରହଣ କରାଯାଇଥିଲା । ମୋର ମନେ ହେଲା, ଏତେ ବେଶୀ ଆତ୍ମୀୟତାକୁ ବୁଝିଥିବା ଆମ ଭାରତର ଜନଗଣଙ୍କ ଭିତରେ ପୁଣି ଏତେ ନାରକୀୟ ଅନାତ୍ମୀୟତା କୋଉଠୁ ଆସୁଛି ? ଆସାମର କବି ନବକାନ୍ତ ବରୁଆଙ୍କ ସହ ସମୀର ତାନ୍ତି, ନୀଳିମକୁମାର ଓ ଅନୁପମା ବସୁମାତରି କବିତା ପାଠ କଲେ । ମାତୃତ୍ୱ ସଂର୍ପକୀୟ କବିତା ପଢ଼ିଥିଲେ ଦେବାରତି ମିତ୍ର, ନବନୀତା ଦେବସେନ, ଅନୁପମା, ମନ୍ଦାକ୍ରାନ୍ତା, ନେପାଳୀ କବି ଦେବିକା । ବଙ୍ଗଳା ଅଧିବେଶନରେ କବି ଦିବ୍ୟେନ୍ଦୁ ପାଲିତ, ପିନାକୀଠାକୁର, ଜୟଦେବ, ରଣଜିତ, ସୁବୋଧ କବିତା ପଢ଼ିଥିଲେ । ଏହାପରେ କବିତା ଉତ୍ସବ ଉଦ୍‌ଯାପିତ ହେଲା ।

ଆମେ ମିଶନକୁ ଫେରିଲୁ । ଅନୁପମା ତାଙ୍କ ବନ୍ଧୁଘରକୁ Salt lake ଯିବେ ବୋଲି ବାହାରିଲେ । ଗଲାବେଳକୁ କୋଳାକୋଳି ସମୟ ଭାନୁମତୀ, ମେମ୍‌ଛବି ଓ ମୋତେ କୁଣ୍ଢାଇଧରି ଅନୁପମା ଚୁମ୍ବନ କଲା । ଜାଣିଲି ଆସାମର ଯେ ଗୋଟେ ରୀତି । ଆମେ ଯେବେ ଆସାମ ଯାଇଥିଲୁ ଲେଖକ ବିନିମୟ କାର୍ଯ୍ୟକ୍ରମରେ, ସେତେବେଳେ କବି ନବକାନ୍ତ ବରୁଆ ଜ୍ୟୋତ୍ସ୍ନା ରାଉତରାୟଙ୍କୁ ଚୁମ୍ବନ କରିଥିଲେ । ଏଠାରେ ମଣିପୁରର କବି ଇବୋପିସାକ୍ ସିଂ ମୋତେ ସ୍ମରଣ କରାଇଦେଲେ ଯେ ୧୯୮୧ ମସିହାରେ ଆମେ ଏହିପରି ପୂର୍ବାଞ୍ଚଳ ସମ୍ମିଳନୀରେ କଲିକତାରେ ପରସ୍ପରକୁ ଭେଟିଥିଲୁ । ଇବୋପିସାକ୍ ଖୁବ୍ ଚୁପ୍‌ଚାପ, କିନ୍ତୁ ଭଲକବିତା ଲେଖନ୍ତି । ତେବେ, ଅନୁବାଦ ମାଧ୍ୟମରେ ତ ଆମେ ପରସ୍ପରକୁ ଜାଣିବା କଥା । କବିତା ସବୁଠୁ ବେଶୀ ଆଞ୍ଚଳିକତା, ସ୍ଥାନୀୟତା (Local) ଦ୍ୱାରା ପରିପୁଷ୍ଟ । ଅତଏବ ଏହାର ଅନୁବାଦ ଏକ ବିଡ଼ମ୍ବନା । ଏମିତିରେ, ଅନୁବାଦରେ 'loss in transition' ପରିବର୍ତ୍ତନଜନିତ ହ୍ରାସ ପଦ୍ଧତି ତ ଅଛି ତଥାପି, ଅନ୍ୟ ଉପାୟ ଯେତେବେଳେ ନାହିଁ, ଲିଖିତ କବିତା ମଧ୍ୟ ଦେଇ ବିଭିନ୍ନ ସଂସ୍କୃତି ଓ ଉପଲବ୍ଧିର ଜଗତ ଭିତରକୁ ପ୍ରବେଶ କରିବାକୁ ହେବ । ସେହି ଅର୍ଥରେ ସାଧାରଣତନ୍ତ୍ରର ସୁବର୍ଣ୍ଣଜୟନ୍ତୀ ଉପଲକ୍ଷେ ଆୟୋଜିତ ଏହି ଉତ୍ସବ ସାର୍ଥକ ହୋଇଥିଲା ନିଶ୍ଚୟ ।

ଆମେମାନେ ମିଶନର ମଧୁର ସ୍ମୃତିକୁ ଧରି, ହୃଦୟକୁ କବିତାର ନିନାଦରେ ଗୁଞ୍ଜରିତ କରି ଫେରିବା ଅଭିମୁଖେ ପ୍ରସ୍ତୁତ ହେଲୁ ।



# ଭାରତୀୟତାର ଉଦ୍‌ଘୋଷଣା

ଅଗଷ୍ଟ ମାସ ୧୦।୧୧।୧୨ ତାରିଖ-୩ ଦିନର ସର୍ବଭାରତୀୟ ସମ୍ମିଳନୀ ପାଇଁ ତିନି ମାସର ପ୍ରସ୍ତୁତି । ବାରମ୍ବାର ଚିଠି ଆସୁଥାଏ- ସାରନାମା (Synopsis) ଲେଖି ପଠାଇଲେ ସ୍ମରଣିକା ଛପା ହେବ। ଓଡ଼ିଆ ସାହିତ୍ୟ ସମ୍ପର୍କର ପ୍ରବନ୍ଧ ଲେଖି ମୋତେ ପଢ଼ିବାକୁ ହବ, କେଉଁ ଟ୍ରେନ୍‌ରେ ପହଞ୍ଚିବା କଥା ଇତ୍ୟାଦି । ମୁଁ ଏତେ ଦୂରକୁ ଏକା କେବେ ଯାଇ ନଥାଏ । ଓଡ଼ିଶାରୁ ଅହମ୍ମଦାବାଦ ରାସ୍ତାରେ ପଡୁଥିବା ଜଲ୍‌ଗାଓଁ ସହରରେ ଅବସ୍ଥିତ ଉତ୍ତର ମହାରାଷ୍ଟ୍ର ବିଶ୍ୱବିଦ୍ୟାଳୟ- ସେ ଆୟୋଜନ କରିଥାନ୍ତି ଉପରୋକ୍ତ ସର୍ବଭାରତୀୟ ସମ୍ମିଳନୀ । ସବୁ ଭାଷାରୁ ମିଶି ପ୍ରାୟ ୨୦।୨୫ ଜଣ ପ୍ରତିନିଧି ଆସିଥାନ୍ତି । ନିକଟବର୍ତ୍ତୀ ରାଜ୍ୟମାନଙ୍କରୁ ୨/୩ ଜଣ କରି ପ୍ରତିନିଧି ମଧ୍ୟ ଆସିଛନ୍ତି । ଓଡ଼ିଶାରୁ ଏକମାତ୍ର ମୁଁ । ତେବେ ମୋ ସହିତ ନେଇଯାଇଥାଏ ଡଃ ଅପର୍ଣ୍ଣା ମହାନ୍ତିଙ୍କୁ । ଆମର ବଡ଼ ଚିନ୍ତା-ଆସନ୍ନ ବର୍ଷା ଭିତରେ ଆମେ ଜଲଗାଓଁରେ ଓହ୍ଲାଇ କେଉଁ ଦିଗକୁ ଯିବା । ନିମନ୍ତ୍ରଣକର୍ତ୍ତା ଯେ ଷ୍ଟେସନରେ ରିସେପ୍‌ସନ୍ କାଉଣ୍ଟର ଖୋଲିଥାନ୍ତି, ଏ କଥା ଆମେ ଜାଣି ନଥାଉ । ଭାରତୀୟତାର ଉଦ୍‌ଘୋଷଣା ଆଲୋଚନାଚକ୍ରର ବିଷୟବସ୍ତୁ ଥାଏ "ଷଷ୍ଠ ଦଶକୋତ୍ତର ସାହିତ୍ୟରେ ଭାରତୀୟତା" ଟ୍ରେନ୍‌ରୁ ଓହ୍ଲାଇ କୁଲି ଧରି ଆମେ କେଇପାଦ ଆଗେଇଛୁ ଆୟୋଜକମାନେ ଆମକୁ ଅଭିବାଦନ ଜଣେଇଲେ । ସମ୍ପାଦକଙ୍କ ସମେତ ବିଶ୍ୱବିଦ୍ୟାଳୟର ଡେପୁଟି ରେଜିଷ୍ଟ୍ରାର ଓ କେତେକ ବ୍ୟକ୍ତି ଆସିଥାନ୍ତି । ସେମାନଙ୍କ ଅଭ୍ୟର୍ଥନାରେ ଆମର ସବୁତକ କ୍ଲାନ୍ତି ଦୂର ହେଇଗଲା । ସେଇ ଟ୍ରେନ୍‌ରେ ଆସିଥାନ୍ତି ଆଉ କେତେକ ଅତିଥି । ବିଶ୍ୱବିଦ୍ୟାଳୟର ଗାଡ଼ି ଆମକୁ ସହରର ଏକ ସୌଖୀନ ମୋଟେଲ୍ କୋଜିକଟେଜ୍‌କୁ ନେଇଗଲା । ଗାଧୁଆ ପାଧୁଆ ସାରି ବାହାରିଗଲୁ ଅଜନ୍ତା ଅଭିମୁଖେ । ମେଘ ଘୋଡ଼ା ଘୋଡ଼ା କରିଥାଏ । ରାସ୍ତା ଦୁଇ ପାଖରେ କେଉଁଠି ଅନୁଚ୍ଚ ପାହାଡ଼ ତ କେଉଁଠି ପରିଚ୍ଛନ୍ନ ଶସ୍ୟକ୍ଷେତ୍ର । ଦୁଇ ଘଣ୍ଟାର କାର୍ ଯାତ୍ରା ପରେ ଆମେ ପହଞ୍ଚିଲୁ ଔରଙ୍ଗାବାଦ ଜିଲ୍ଲାର ଅଜନ୍ତାରେ ଏବଂ ସନ୍ଧ୍ୟାସୁଦ୍ଧା ଫେରି ଆସିଲୁ । ଆମ ରହିବା ସ୍ଥାନ ମୋଟେଲ୍ ଖୁବ୍ ସଂଭ୍ରାନ୍ତ ଓ ସୁସଜ୍ଜିତ । ସେଠାରେ ଆମେ ରହିଥାଉ ଡଃ ବାଲାସୌରୀ ରେଡ୍ଡୀ, ଶ୍ରୀ ଭଟ୍ଟନାଗର, ଶ୍ରୀ ତ୍ରିବେଦୀ, ନୃତ୍ୟଶିଳ୍ପୀ ସୁଲଭାଠକର ଓ ଶ୍ରୀମତୀ

ପୁଣ୍ଟାର୍ବେକର ଓ ଡଃ ଆନନ୍ଦ ପ୍ରକାଶ ଦୀକ୍ଷିତଜୀ ।

୧୦ ତାରିଖ ସକାଳ ୧୦ଟାରେ ଥାଏ ଉଦ୍‌ଘାଟନ ଉତ୍ସବ । ତିନିଜଣ ବିଶିଷ୍ଟ ହିନ୍ଦୀ ସାହିତ୍ୟିକ ଆସିବାର ସମ୍ମତି ଜଣାଇଲେ ବି, ନିମନ୍ତ୍ରଣ ପତ୍ରରେ ସେମାନଙ୍କ ନାମୋଲ୍ଲେଖ ଥିଲେ ବି ଆସି ପାରି ନ ଥାନ୍ତି । ସେମାନେ ହେଲେ ଡଃ ବିଦ୍ୟାନିବାସ ମିଶ୍ର, ଡଃ ଗଙ୍ଗାପ୍ରସାଦ ବିମଲ୍, ଡଃ ଭୋଳାଭାଇ ପଟେଲ୍ । ସକାଳ ୯ଟା ପୂର୍ବରୁ ଗାଡ଼ି ଆମକୁ ପ୍ରାୟ ୧୦ କି.ମି. ଦୂରରେ ଥିବା ବିଶ୍ୱବିଦ୍ୟାଳୟ ପରିସରକୁ ନେଇଗଲା । ସେଠାରେ ପ୍ରଶାସନ ଭବନରେ ସମ୍ମିଳନୀ ହେଉଥାଏ । ଭବନଟି ତ୍ରିତଳ ବିଶିଷ୍ଟ । ତଳ ମହଲାରେ ଖିଆପିଆ, ମଝି ମହଲାରେ କେତେକ ଅତିଥି ରହୁଥାଆନ୍ତି ଓ ସବା ଉପର ମହଲାରେ ସମ୍ମିଳନୀ କକ୍ଷ । ଭବନଟିର ପ୍ରବେଶ ଦ୍ୱାର ଅଜନ୍ତା ଢ଼ାଞ୍ଚାରେ ନିର୍ମିତ ଓ ସୁଉଚ୍ଚ ତୋରଣମାନଙ୍କରେ ଶୋଭିତ । ଅତି ପରିଚ୍ଛନ୍ନ । ଖିଏ ଧୂଳି ବି କେଉଁଠି ଦେଖିବାକୁ ମିଳିବ ନାହିଁ । ଉଜ୍ଜ୍ୱଳ ଚକ୍ ଚକ୍ ଚାରିଆଡ଼ । ପାହାଚ ଗୁଡ଼ିକ ପରିଚ୍ଛନ୍ନ- ଆମ ଏଠିକା ଭଳି ପାନପିକ, ଛେପ, ଖଙ୍କାର ପକାଇବାର ଡଷ୍ଟବିନ୍ ନୁହେଁ । ଆମେ ତ ସେ ପରିଚ୍ଛନ୍ନତା କଳ୍ପନାରେ ଆଣିପାରିବା ନାହିଁ । ମଝିରେ ମଝିରେ ପ୍ରଶସ୍ତ ବାରଣ୍ଡାର କୋଣମାନଙ୍କରେ ରଙ୍ଗ କରାଯାଇଥିବା ବଡ଼ ବଡ଼ ଗଛର ଚେର ଓଲଟ ଭାବେ ରଖାଯାଇ ଏକ ସୁନ୍ଦର ଡେକୋରେଟିଭ୍ ପିସ୍ ଭଳି ଦିଶୁଥାଏ । ଏହି ବିଶ୍ୱବିଦ୍ୟାଳୟ ମାତ୍ର ୮ ବର୍ଷ ତଳେ ଆରମ୍ଭ । ଅଥଚ ଏହାର କୃତିତ୍ୱ ଓ ସମୃଦ୍ଧି ଅନେକ । ଏଠାର ଜଙ୍ଗଲ କଟାଯାଇ ବଡ଼ ବଡ଼ ଗଛର ଚେରକୁ ଏପରି ତିଆରି କରାଯାଇଛି । ଅର୍ଥର ପ୍ରାଚୁର୍ଯ୍ୟ ଅଛି । କୁଳପତି ଡଃ ନିମ୍ବାକୃଷ୍ଣ ଠାକ୍‌ରେ  କହନ୍ତି, ଛାତ୍ରମାନଙ୍କ ପରୀକ୍ଷା ଫିସ୍ ଗ୍ରହଣ ତାରିଖଠାରୁ ପରୀକ୍ଷାର ତାରିଖ ମଧ୍ୟରେ ପ୍ରାୟ ୨/୩ମାସ ବ୍ୟବଧାନ ଥାଏ । ଆମେ ପରୀକ୍ଷା ଫିସ୍ ତକ ବ୍ୟାଙ୍କରେ ଫିକ୍ସଡ଼୍ ଡିପୋଜିଟ୍ ରଖି ଦେଉ । ସେଥିରୁ କେତେ କୋଟି ଟଙ୍କା ପାଇଯାଉ, ଯାହା ବିଶ୍ୱବିଦ୍ୟାଳୟର ଉନ୍ନତିକଳ୍ପେ ବ୍ୟୟ ହୁଏ ।''

ସେଦିନ ଉଦ୍‌ଘାଟନ ଉତ୍ସବରେ ମଞ୍ଚାସୀନ ହେବାକୁ ସେମାନେ ମୋତେ ଅନୁରୋଧ କରିଥାଆନ୍ତି ଯଦିଚ ମୋର ପ୍ରବନ୍ଧ ପାଠ ଥାଏ ଅପରାହ୍ନର ଅଧିବେଶନରେ । ମତେ ପୁଣି କିଛି କହିବାକୁ ହେବ ବୋଲି ସକାଳ ୮ଟାରେ ମୋଟେଲ୍‌କୁ ଫୋନ୍‌କରି ଅନ୍ୟତମ ଉଦ୍ୟୋକ୍ତା ଡଃ ଉର୍ମିଳା ପାଟିଲ୍ କହିଥାନ୍ତି । ହିନ୍ଦୀ ଭାଷାରେ ମୁହଁରୁ କିଛି ବକ୍ତବ୍ୟ ପ୍ରକାଶ କରିବାର ପ୍ରଶ୍ନ ଉଠୁନାହିଁ--ପୁଣି ଏପରି ଗୁଣୀଜନମାନଙ୍କ ସମାବେଶରେ । ତେଣୁ ମୋର ବକ୍ତବ୍ୟକୁ ଲେଖି ପଢ଼ିବାର ବ୍ୟବସ୍ଥା କଲି । ସେମାନଙ୍କୁ ଅନୁରୋଧ କଲି ଯେ- ''ମୁଁ ଓଡ଼ିଆ ସାହିତ୍ୟର ଅଧ୍ୟାପିକା ଓ ଓଡ଼ିଆ ଭାଷାର ଜଣେ କବି । ଆପଣମାନେ ମୋର ତ୍ରୁଟିପୂର୍ଣ୍ଣ ହିନ୍ଦୀକୁ ସହୃଦୟତାର ସହିତ ଗ୍ରହଣ କରିବେ । ମରାଠୀର ଗୋଟିଏ ଅଶିକ୍ଷିତା ଗ୍ରାମ୍ୟ ବାଳିକାର ହିନ୍ଦୀ ଓ ମୋର ହିନ୍ଦୀ ଭିତରେ ବିଶେଷ ପାର୍ଥକ୍ୟ ନ ଥିବ ବୋଲି ମୁଁ ବୁଝି ପାରୁଛି ।'' ସେମାନେ ପସନ୍ଦ କରି କରତାଳି ଦେଲେ ।

ଉଦ୍‌ଘାଟନର ମଞ୍ଚ ଉପରେ ଡଃ ଦୀକ୍ଷିତ, ଡଃ ବିଜୟ ବାହାଦୂର ସିଂ, ଡଃ

ଉପାଧ୍ୟାୟ, ଡଃ ଚାନ୍ଦି ଚଢ଼େକର, ରେଜିଷ୍ଟ୍ରାରଜୀ ଓ ମୁଁ । ମଞ୍ଚର ଏକ କୋଣରେ ପର୍ଦ୍ଦା ଆଢୁଆଳରେ ଥାଆନ୍ତି ସଂଯୋଜକ ଓ ସଂଯୋଜିକା । ମୁଖ୍ୟତଃ ହିନ୍ଦୀ ପ୍ରଫେସରମାନେ ଓ ଅଳ୍ପ କେତେକ ଇଂରାଜୀ ପ୍ରଫେସର ଆସିଥାଆନ୍ତି । ପ୍ରଥମେ ଗୋଟିଏ କଂସା ଥାଳିରେ ବଡ଼ ଗୋଟେ ନଡ଼ିଆ, ଗୋଟିଏ ଅଙ୍ଗବସ୍ତ୍ର ଓ ପଦ୍ମଫୁଲ ପରି ବଡ଼ ବଡ଼ ରକ୍ତ ଗୋଲାପର ତୋଡ଼ାଟିଏ ଦିଆଯାଇ ମଞ୍ଚାସୀନମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଦିଆଗଲା । ବେଦପାଠ ଓ ସଙ୍ଗୀତ । ତାପରେ ଭାରତୀୟତାର ଅନୁସନ୍ଧାନର ଯୁଗୋପଯୋଗିତା ସମ୍ବନ୍ଧରେ ମତର ଆଦାନ ପ୍ରଦାନ ଚାଲିଲା । ମଧ୍ୟାହ୍ନ ଭୋଜନ ଖୁବ୍ ସୁସ୍ୱାଦୁ । ବିବିଧ ବ୍ୟଞ୍ଜନ ଅନ୍ନ-ନିରାମିଷ । ପୁଣି ପ୍ରାତରାଶ ମଧ ସେହିପରି । ମହାରାଷ୍ଟ୍ରର ସ୍ୱତନ୍ତ୍ର ଖାଦ୍ୟ ସବୁ ବିଭିନ୍ନ ଭାବରେ ପରିବେଷଣ କରାଯାଉଥାଏ ।

ଆମର ପରମ୍ପରା ଓ ସଂସ୍କୃତିର ପଥଭୁଲି ଆମେ ଯେ କିଛିଦିନ ପଶ୍ଚିମୀ ଭାବନା ଆଡ଼କୁ ଢ଼ଳିଥିଲୁ ଓ କ୍ରମଶଃ ବର୍ତ୍ତମାନ ନିଜସ୍ୱତା ଓ ନିଜ ବିଶେଷତ୍ୱ ପ୍ରତି ଧ୍ୟାନଶୀଳ ହୋଇଛୁ- ବେଦ, ଉପନିଷଦ, ପୁରାଣ, ଗୀତା, ଭାଗବତ ଇତ୍ୟାଦିର ଦର୍ଶନକୁ ଆଧାର କରୁଛୁ, ସମାଜ ରାଜନୀତି କ୍ଷେତ୍ରର ବୈଷମ୍ୟକୁ କଳାଗତ ରୂପ ଦେଉଛୁ, ନିଜୁ ଚିହ୍ନୁଛୁ ଓ ଚିହ୍ନାଉଛୁ- ଏହା ହିଁ ଥିଲା ସେହି ତିନି ଦିନର ଆଲୋଚନାର ସାରାଂଶ । ଆମେ ନିଜକୁ ଖୋଜିଛୁ, ପାଇଛୁ ଏବଂ ଆହୁରି ନିଜ ମୂଳକୁ ଦୃଢ଼ କରି କିପରି ନିଜକୁ ପ୍ରତିଷ୍ଠା କରି ପାରିବୁ ସେ ସମ୍ପର୍କରେ ବିଚାର ବିମର୍ଶ ଚାଲିଥିଲା । ସେହି ସମ୍ମିଳନୀର ସ୍ମରଣିକା 'ଋଚା' (ସୁକ୍ତ) ସେଠାରେ ଉଦ୍‌ଘାଟିତ ହେଲା । ଏଥିରେ ମୋ ପ୍ରବନ୍ଧର ସାରନାମା ସହିତ ଅନ୍ୟ କେତୋଟି ପ୍ରବନ୍ଧ ମଧ ଛପା ହୋଇଥିଲା । ମୁଁ ପ୍ରବନ୍ଧ ପଢ଼ିଲି- ନିଜ ଭାଷାର କାବ୍ୟ-କବିତା, ଗଳ୍ପ-ଉପନ୍ୟାସ ଓ ନାଟକ ସମ୍ବନ୍ଧରେ ମୋର ପ୍ରସ୍ତୁତି । ସେମାନେ ମଧ ଆମର କେତେକ ସାହିତ୍ୟିକ ଯଥା ଶ୍ରୀ ମନୋଜ ଦାସ, ଶ୍ରୀ ରମାକାନ୍ତ ରଥ ଓ ଶ୍ରୀ ସୀତାକାନ୍ତ ମହାପାତ୍ରଙ୍କ ସମ୍ପର୍କରେ କିଛି କିଛି ଜାଣିଥାନ୍ତି ।

ତା'ପରଦିନ ସକାଳେ କୋଜିକଟେଜ୍‌ରୁ ବାହାରିଲା ବେଳେ ଡଃ ଆନନ୍ଦ ପ୍ରକାଶ ଦୀକ୍ଷିତ ପଚାରିଲେ- ''ଆପଣ କେଉଁଠୁ ହିନ୍ଦୀ ଶିଖିଲେ, ଏତେ ଭଲ କହି ପାରୁଛନ୍ତି ତ ?'' ମୁଁ ଉତ୍ତରରେ ମୋର ଅଯୋଗ୍ୟତା ବହୁତ ବେଶୀ ବୋଲି ଜଣାଇଲି । ସ୍କୁଲରେ ପଢ଼ିଲାବେଳେ 'ରାଷ୍ଟ୍ରଭାଷା ପରିଚୟ' ପରୀକ୍ଷା ଦେଇଥିଲି । ମାତ୍ର ଅନଭ୍ୟାସ ଯୋଗୁଁ ବେଶି କିଛି ଆୟତ୍ତରେ ରଖିପାରିନି । ଯେତେବେଳେ ଓଡ଼ିଶା ବାହାରକୁ ଯାଏ ମୋର ହିନ୍ଦୀ ଶିକ୍ଷକଙ୍କୁ ମନେ ମନେ ପ୍ରଣାମ ଜଣାଏ । ତେବେ ମୋର ଏଇ ପ୍ରବନ୍ଧଟି ଡଃ ଶଙ୍କରଲାଲ ପୁରୋହିତ ଅନୁବାଦ କରିଛନ୍ତି ବୋଲି ଜଣାଇଲି । ସେମାନଙ୍କ ମଧ୍ୟରୁ କେହି କେହି ଡଃ ପୁରୋହିତଙ୍କୁ ଜାଣିଥିଲେ । ଶ୍ରୀ ଭଟ୍ଟନାଗର କହିଲେ, ''ଆପଣ କାହିଁକି ସଂକୋଚ କରୁଛନ୍ତି- ଏତେ ଭଲ ହିନ୍ଦୀ କହୁଛନ୍ତି ଅଥଚ ଆମେ ଓଡ଼ିଆ ପଦେ ବି ଜାଣିନାହୁଁ ।'' ଯା'ହଉ, ଭାଷା ପ୍ରତିବନ୍ଧକଟିଏ ସତ, ମାତ୍ର ଆଗ୍ରହ ଥିଲେ ତାକୁ ବି କେତେକାଂଶରେ

ଅତିକ୍ରମ କରାଯାଇପାରେ। ତୃତୀୟ ଦିନ ମୁଖ୍ୟତଃ ସଙ୍ଗୀତ ଓ ନୃତ୍ୟ କ୍ଷେତ୍ରରେ ଭାରତୀୟତାର ଉଜ୍ଜୀବନ ସମ୍ପର୍କରେ ଆଲୋଚନା ବାସ୍ତବ ପ୍ରୟୋଗ ଅନୁଷ୍ଠିତ ହେଲା। ଡଃ ସୁଲଭାଠକାର ଓ ସଙ୍ଗୀତଜ୍ଞ ଦୁହେଁ ଆଲୋଚନାରେ ନୃତ୍ୟର ଅଙ୍ଗଭଙ୍ଗୀ, ମୁଦ୍ରା ଓ ସଙ୍ଗୀତର ସ୍ୱର ମୂର୍ଚ୍ଛନା ଉପସ୍ଥାପନ କଲେ। ସେଦିନ ବିଶ୍ୱବିଦ୍ୟାଳୟର କୁଳପତି ଡଃ ନିମ୍ବାକୃଷ୍ଣ ଠାକ୍‌ରେ (ସେ ଗଣିତର ପ୍ରଫେସର ଓ ଜଣେ କବି ମଧ) ମରାଠୀ ଭାଷାରେ ବକ୍ତବ୍ୟ ପ୍ରଦାନ କଲେ। ଯଦିଓ ମୋ ସମେତ କେତେ ଲୋକ ମରାଠୀ, ଆଦୌ ବୁଝୁ ନଥିଲେ। ଶେଷକୁ କହିଲେ, 'ଜୟ ମହାରାଷ୍ଟ୍ର'। ମତେ ଲାଗିଲା ଆମର କୁଳପତିଗଣ କେବେ ଓଡ଼ିଆ ଭାଷାକୁ ଏତେ ଗୁରୁତ୍ୱ ଦେବେ ? ଜଲ୍‌ଗାଓଁର ଏହି ଉତ୍ତର ମହାରାଷ୍ଟ୍ର ବିଶ୍ୱବିଦ୍ୟାଳୟ ତା'ର ସାଜସଜ୍ଜା ଓ ଶୃଙ୍ଖଳା ତଥା ସୌନ୍ଦର୍ଯ୍ୟ ପ୍ରଦର୍ଶନରେ ଆଦର୍ଶ ସ୍ଥାନୀୟ ମନେହେଲା। ସବୁ ୪ର୍ଥ ଶ୍ରେଣୀ କର୍ମଚାରୀଙ୍କର ୟୁନିଫର୍ମ ପୋଷାକ। ପୁଣି କୁଳପତିଙ୍କଠାରୁ ଚପ୍ରାଶି ପର୍ଯ୍ୟନ୍ତ ସମସ୍ତେ ଅତିଥିମାନଙ୍କ ପ୍ରତି ପ୍ରଚୁର ଶ୍ରଦ୍ଧା ଓ ସଂଭ୍ରମ ପ୍ରଦର୍ଶନ କରୁ ଥାଆନ୍ତି। ମୁଁ କୁଳପତି ଠାକ୍‌ରେଙ୍କୁ ପଚାରିଲି ଆମ କୁଳପତି ଡଃ ଗୌରକିଶୋର ଦାସଙ୍କ କଥା। ମାତ୍ର ସେ ତାଙ୍କୁ ଚିହ୍ନି ନଥିବାର କହିଲେ। ପୂର୍ବର କୁଳପତି ପ୍ରଫେସର ଆଚାର୍ଯ୍ୟଙ୍କୁ ସେ ଜାଣନ୍ତି ବୋଲି କହିଲେ।

ଜଲ୍‌ଗାଓଁ ଛାଡ଼ିବାର ବେଳ। ୩ୟ ଦିନର ଅପରାହ୍ନ। ଜଲ୍‌ଗାଓଁ ସ୍ଥାନଟି ନିମ୍ନଭୂମି ବିଶିଷ୍ଟ, ଖାଲୁଆ, ଅନେକ ଜଳାଶୟ ରହିଥିବାରୁ ଏପରି ନାମ ପାଇଛି। ତେବେ ପାହାଡ଼ ପର୍ବତ ବି କମ୍ ନୁହେଁ। ମୁଁ ଓ ଅପର୍ଣ୍ଣା ଏବଂ ଡଃ ରେଜ୍ଞୀ ଓ ଡଃ ସିଂ ନବଜୀବନ ଏକ୍ସପ୍ରେସ ଧରିବାକୁ ଆସଲୁ- ୪/୩୦ରେ। ସାଙ୍ଗରେ ବିଶ୍ୱବିଦ୍ୟାଳୟର କିରାଣୀ ଓ ଚପ୍ରାଶି ମିଶି ୪/୫ ଜଣ ଆସିଥାଆନ୍ତି। ବିଦାୟ କାଳରେ ଅତିଥିମାନଙ୍କ ଗହଣରେ ସର୍ବଦା ଉପସ୍ଥିତ ଥିବା କୁଳପତି କର୍ମଚାରୀଙ୍କୁ କହିଥାନ୍ତି- ''ମ୍ୟାଡାମ୍‌ଙ୍କର ବିଶେଷ ଯତ୍ନ ନେବ-ତାଙ୍କର ଯେପରି କୌଣସି ଅସୁବିଧା ନ ହୁଏ।''

ଗୋଟିଏ ଅପେକ୍ଷକୃତ ନୂତନ ବିଶ୍ୱବିଦ୍ୟାଳୟ ଏକ ସର୍ବଭାରତୀୟ ସମ୍ମିଳନୀ ଏପରି ଶୃଙ୍ଖଳା ଓ ମର୍ଯ୍ୟାଦା ସହକାରେ ଅନୁଷ୍ଠିତ କରାଇବାର ଦୃଷ୍ଟାନ୍ତ ନିଶ୍ଚୟ ବିରଳ। ଆମେ ଭାବୁଥାଉ, ଆମର କୌଣସି ବିଶ୍ୱବିଦ୍ୟାଳୟ ଏହିପରି ଉଚ୍ଚମାନର ଶୃଙ୍ଖଳା ଓ ସଂଭ୍ରମ ସହ ସର୍ବଭାରତୀୟ ସମ୍ମିଳନୀଟିଏ କରିପାରନ୍ତା ଯଦି। ସମୟ ବଦଳିଲାଣି। ଏଣିକି ଆମ ବିଶ୍ୱବିଦ୍ୟାଳୟ ଗୁଡ଼ିକ ମଧ ନିଜର ପରାକାଷ୍ଠା ପ୍ରଦର୍ଶନ କରିବେ। ଯାହାହେଉ ଅନେକଗୁଡ଼ିଏ ଭାଷାରେ ନିଜନିଜ ସାହିତ୍ୟ ସମ୍ପର୍କରେ ପ୍ରବନ୍ଧ ଗୁଡ଼ିକୁ ପଢ଼ି ଓ ଆଲୋଚନା ଶୁଣି ମୋତେ ଖୁବ୍ ଉଦ୍‌ବୁଦ୍ଧ ମନେ ହେଲା। ଓଡ଼ିଶା ବିଷୟରେ, ତାର ପ୍ରାକୃତିକତା, ପୁରୀ, ସମୁଦ୍ର, ଜଗନ୍ନାଥଙ୍କ ବିଷୟରେ ସେଠାରେ କେତେକ ଲୋକଙ୍କର ପ୍ରତ୍ୟକ୍ଷ ଅଭିଜ୍ଞତା ଥିଲା- ଅନ୍ୟ କେତେକଙ୍କର ଥିଲା ପ୍ରଚୁର ଆଗ୍ରହ। ଏକ ମଧୁର ସାରସ୍ୱତ ସ୍ମୃତି ଧରି ମୁଁ ଫେରିଲି। ଭାବିଲି, ଅନ୍ୟମାନଙ୍କୁ ବି ଏଇ ମଧୁରତାରୁ କିଛି ବାଣ୍ଟିପାରିବି।

# ମୂଲ୍ୟବୋଧର ଅବକ୍ଷୟ ଓ ଆଧୁନିକ କବିତା

ତୀବ୍ରବେଗରେ ସମ୍ମୁଖଦିଗକୁ ଛୁଟିଚାଲିଥିବା ମାନବସଭ୍ୟତା ଯେ ନିର୍ଘାତ ମୂଲ୍ୟବୋଧ-ଅବକ୍ଷୟର ଶିକାର ହେଉଛି, ଏହା ସ୍ୱୀକାର ନ କରି ଉପାୟ ନାହିଁ। ଏହି ଅବକ୍ଷୟକୁ ଚିତ୍ରଣ କରି କେତେ ଉପନ୍ୟାସ, ନାଟକ, କାବ୍ୟକବିତା ପ୍ରବନ୍ଧ, ଚିତ୍ରକଳା ସୃଜନଶୀଳ ଜଗତରେ ସୃଷ୍ଟିହୋଇ ଚାଲିଛି, ତା'ର ଇୟତ୍ତା ନାହିଁ। ମୂଲ୍ୟବୋଧର ସଙ୍କଟ ପ୍ରତ୍ୟେକ ସଚେତନ ବ୍ୟକ୍ତିର ଅଙ୍ଗେ ନିଭାଉଥିବା ଘଟଣା। ଏହି ସଙ୍କଟ ସୃଷ୍ଟି ହୋଇଛି ସଂପର୍କର ଅବମୂଲ୍ୟାୟନରୁ, ସଂସ୍କୃତିର ଅବମୂଲ୍ୟାୟନରୁ।

କବିତା ହୃଦୟରୁ ହୃଦୟକୁ ସଂଚରଣଶୀଳ ଉପଲବ୍ଧି - କବି ଓ ପାଠକ ଏକାତ୍ମ ହେଲେ ଏହାର ରସ ନିଷ୍ପତ୍ତି ହୋଇଥାଏ। କବିତା ଭିତରେ ପାଠକ ନିଜକୁ ଆବିଷ୍କାର କରେ। ତେଣୁ କବି ସହ ପାଠକର ଏକ ସତ୍ୟନିଷ୍ଠ ଯୋଗସୂତ୍ର ରହିଥାଏ। ଏଭଳି ସଂପର୍କ ପ୍ରତିଷ୍ଠା ପଥରେ ଆଜି ଅନେକ ଅନ୍ତରାୟ। ଆଜି ପ୍ରତ୍ୟେକ ସଂପର୍କ ପ୍ରୟୋଜନ ଭିତ୍ତିକ। ମଣିଷ କପଟାଚାରୀ, ତାର ଉଦ୍ଦେଶ୍ୟ ଗୋପନୀୟ। ସ୍ୱାର୍ଥ ଲିପ୍‌ସା ବ୍ୟତିରେକେ ସସ୍ନେହ ସଂପର୍କ ଆଜି କ୍ୱଚିତ୍ ଦେଖାଯାଉଛି। ପାଠକ ଆତ୍ମଅନ୍ୱେଷା ପଥର ପଥିକ ହେବାକୁ ଚାହୁଁନାହିଁ। ଏହି ବସ୍ତୁ ସର୍ବସ୍ୱ ଜଗତର ଅନ୍ଧାବର୍ତ୍ତ ଭିତରେ ନିଜକୁ ସମର୍ପି ଦେବାକୁ ଶ୍ରେୟ ମନେ କରୁଛି। ନିଜକୁ ଗୋଟିଏ ଏକକ ବ୍ୟକ୍ତିକରି ଠିଆ କରାଇବା, ନିଜ ଅନ୍ତରାତ୍ମାର ନିର୍ଦ୍ଦେଶକୁ ଶୁଣିବାକୁ ଉତ୍କର୍ଣ୍ଣ ରହିବା ତାପକ୍ଷରେ ସମ୍ଭବ ହେଉନାହିଁ। ଦୃଶ୍ୟ ବାସ୍ତବତାର ଅନ୍ତରାଳରେ ଉଜ୍ଜୀବିତ ଅନାହତ ଧ୍ୱନିପ୍ରତି ତାର ଭ୍ରୂକ୍ଷେପ ନାହିଁ। ଗଭୀର ଭାବୋଦ୍‌ବୋଧକ, ଅନ୍ତର୍ଲୋକକୁ ଆନ୍ଦୋଳିତ କରିବାକୁ ସମର୍ଥ କୌଣସି ଚିତ୍ର କିମ୍ବା ବାର୍ତ୍ତା ପାଇଁ ତାର ଆଗ୍ରହ ନାହିଁ। ହଁ, ସାହିତ୍ୟ, କଳା, କବିତା, ନାଟକ ସବୁକିଛି ତା'ର ହୁଏତ ଦରକାର। ମାତ୍ର ସେସବୁର ଆବେଦନ ସୀମିତ-ତାର ମନୋରଞ୍ଜନ ଆବଶ୍ୟକ। ତାକୁ ନେଇ ଖୁବ୍ ଭାବିବା, ଧନ୍ଦିହେବାକୁ ସେ ପସନ୍ଦ କରେନା। ଅତଏବ ଗଭୀରତର ଉପଲବ୍‌ଧିର ସ୍ୱରକୁ ସେ ଆଡ଼େଇଯିବା ସ୍ୱାଭାବିକ। କବିର ସ୍ୱାନୁଭୂତ ସତ୍ୟୋଚ୍ଚାରଣକୁ ପାଠକ ଗ୍ରହଣ କରିବାକୁ ପ୍ରସ୍ତୁତ ହେଉନାହିଁ।

ଲେଖକ ସ୍ୱର୍ଗତ ଗୋପିନାଥ ମହାନ୍ତିଙ୍କ 'ଦାନାପାଣି'ର ଏଂକଟ୍ରାଓ ଓ ବଳିଦତ୍ତର ସଂପର୍କ ଆଜି ସାଧାରଣ ଅଫିସିଆଲ୍ ସଂପର୍କର ନମୁନା । କେବଳ ବୃତ୍ତିକ୍ଷେତ୍ରରେ ନୁହେଁ କଳାସାଧନା କ୍ଷେତ୍ରରେ ଏହିପରି ଅହଂକାର, ଶଠତା ଓ ଆତ୍ମମ୍ଭରିତା ଆଜି ଯୋଗ୍ୟକୁ ଯୋଗ୍ୟସମ୍ମାନ ଦେବାରେ ବାଧା ସୃଷ୍ଟି କରୁଛି । ଏହି ଅବକ୍ଷୟ ଭିତରେ ତଥାପି ସତ୍ୟର ବୀଜଟିଏ ଖୋଜି ତାହାର ଅଂକୁରୋଦ୍‌ଗମ ପାଇଁ କବି ପ୍ରୟାସ କରୁଛି । କଳା ଆଉ ସାଧନାର ସିଦ୍ଧି ବୋଲି ପ୍ରତୀତ ହେଉ ନାହିଁ । କେତେକ ଚତୁରବ୍ୟକ୍ତି ଜବର୍‌ଦସ୍ତ ଅକ୍ତିଆର ଭିତରେ କଳାକୁ ବାନ୍ଧି ରଖିବାକୁ ତତ୍‌ପର ହୋଇ ଉଠିଛନ୍ତି । ଉପଭୋକ୍ତା ସମାଜ ମଧ ସାଧନାକୁ ସ୍ୱୀକୃତି ଦେବାକୁ ଶ୍ରେୟ ମଣୁନାହିଁ ।

ଅପରପକ୍ଷରେ ବିଭିନ୍ନ ଗୋଷ୍ଠୀ ଓ ଦଳର ଅନ୍ତର୍ଭୁକ୍ତ ହୋଇ ମଣିଷ ତାର ଏକକତ୍ୱକୁ ଜଳାଞ୍ଜଳି ଦେବାକୁ ପସନ୍ଦ କରୁଛି । କବିତା କେଉଁ ରାଜନୀତିକ ଦଳ, ଧାର୍ମିକ ଗୋଷ୍ଠୀ ବା ସାମୟିକ ମନୋରଞ୍ଜନ ପାଇଁ ଅଭିପ୍ରେତ ନଥିଲା, ଏବେ ମଧ ନାହିଁ । ଜୀବନକୁ ବୁଝିବୁଝି, ଯନ୍ତ୍ରଣାକୁ ଭୋଗିବାରେ ଶକ୍ତି ସଂଚୟ କରିବା, ସୁଖଭୋଗକୁ ଉଲ୍ଲାସର ସହ ଅନୁଭବ କରିବାରେ ଏବଂ ସ୍ମୃତିକୁ ବାଙ୍ମୟ କରି ଆୟୁଷ୍ମାନ କରିବାରେ କବିତା ସହାୟକ ହୋଇଥାଏ ।

ଆଧୁନିକ କବିତା ସେହି, ଯାହା ପରମ୍ପରାକୁ ସଂଜାତ ହୋଇ ପରମ୍ପରାକୁ ଅତିକ୍ରମ କରିଯାଇଥାଏ । ଆଧୁନିକତା ଏକ ଦୃଷ୍ଟିଭଙ୍ଗୀ, ଜୀବନକୁ ଓ ପରିପାର୍ଶ୍ୱକୁ ଦେଖିବାର, ଗ୍ରହଣ କରିନେବାର ଏକ ନୂଆ ପ୍ରକାର ପ୍ରବଣତା । ଆଧୁନିକ କବି T.S. Eliot ସାରାବିଶ୍ୱରେ ସ୍ୱୀକୃତ । ସେ ତାଙ୍କର Wasteland ପୁସ୍ତକରେ ଜୀବନର ବିଭଂଗତା, ବିଶ୍ୱାସର ପରାଜୟ, କପଟାଚାରର ପ୍ରାଚୁର୍ଯ୍ୟ ମଧରେ ଅବକ୍ଷୟର ଚିତ୍ର ଆଙ୍କିଛନ୍ତି । ଅଥଚ ଶେଷେ ଅଂଶରେ ପୁଣି ଆଶାବାଦର ଶରଣ ନେବାକୁ ପ୍ରୟାସ କରିଛନ୍ତି । ନଚେତ୍ ବେଦ ଉପନିଷଦ୍‌ର ସତ୍ୟକୁ ସେ କାହିଁକି ଉଚ୍ଚାରଣ କରି ଥାନ୍ତେ ? 'ଦତ୍ତମ୍, ଦୟଧ୍ୱଂ, ଦାମ୍ୟତାମ୍' ଉଚ୍ଚାରଣ ମଧରେ ଆଧୁନିକ ବ୍ୟକ୍ତିର ସଂଶୟାଚ୍ଛନ୍ନତା ପ୍ରତି ସେ ଆଶ୍ୱାସନା ପ୍ରଦାନ କରିଥିବାର ମନେ ହୁଏ । ତେଣୁ ଆଧୁନିକତା ମଧ ଏକ ନୂତନ ଭାବ ପ୍ରତି ଆଙ୍ଗୁଳି ନିର୍ଦ୍ଦେଶ କରିଥାଏ । ଏହା ଅବଶ୍ୟ ପରବର୍ତ୍ତୀ କାଳରେ ଉତ୍ତର ଆଧୁନିକତା ବା ଆଧୁନିକୋତ୍ତର ରୂପରେ ସ୍ୱୀକୃତି ପାଏ ।

ପ୍ରାଚୀନ ଓ ଆଧୁନିକ ରୂପେ ଆମେ କାଳବିଭାଜନ କରିଥାଉଁ, ମାତ୍ର କବିତାର ଭାବସଂପଦ ଅନାଦିକାଳରୁ ଅବ୍ୟାହତ ରହିଛି । ଯୁଗ ପରିବର୍ତ୍ତନର ପରିପ୍ରେକ୍ଷୀରେ ସେ ଭାଷାରେ, ଅଳଂକାରର ଆବରଣ ପରିବର୍ତ୍ତନକରେ, ତା'ପ୍ରତି ଭିନ୍ନ ଭାବେ ଅନାଇଁବାର ଉଦ୍‌ବୋଧନ ଦିଏ, ଭାବସଂପଦକୁ ବିଭିନ୍ନ ଆଲୋକରେ ବିଶ୍ଳେଷଣ କରେ । ଭଞ୍ଜଯୁଗର ଲାବଣ୍ୟବତୀ, ଆଧୁନିକ ଯୁଗର ଅଳକାସାନ୍ୟାଲ୍ ଉତ୍ତର ଆଧୁନିକ ଯୁଗର ଶ୍ରୀରାଧା ମଧରେ ମୂଳ ଭାବାବେଗରେ ସେଇଥିପାଇଁ ବିଶେଷ ପରିବର୍ତ୍ତନ ପରିଲକ୍ଷିତ ହୁଏନା- ପ୍ରେମ

ଓ ବିଭଙ୍ଗତାକୁ କେବେ ବା ତାର ଉତ୍ତୁଙ୍ଗତାକୁ କାବ୍ୟକବିତା ମଧ୍ୟରୁ ଉପଲବ୍ଧି କରିହୁଏ । କେତେକ ବିଶିଷ୍ଟ ଆଲୋଚକ କହନ୍ତି "କବିତା ବୁଝିଯିବା ପାଇଁ ଲେଖାଯାଏନା," ପ୍ରକୃତରେ କବିତା ବୁଝିବା ଏକ ଭିନ୍ନ ପ୍ରକାର ବୁଝିବା । କବିର ବକ୍ତବ୍ୟ ଓ ପାଠକର ଅବବୋଧ ମଧ୍ୟରେ ଏକ ଆଲୌକିକ ଯୋଗାଯୋଗ ପ୍ରତିଷ୍ଠା କବିତାର ଯୋଗ୍ୟତା ରୂପେ ସ୍ୱୀକୃତ ହୁଏ । କବିର ଯାହା କହିବାକଥା, ସେ କହିପାରୁନଥିବାରୁ ବର୍ଷ ବର୍ଷ ଲେଖିଚାଲୁଛି ଓ ପ୍ରତିଥର ନିଜକୁ ଆଂଶିକ ଭାବେ ବ୍ୟକ୍ତ କରୁଛି । ବକ୍ତବ୍ୟ ସକଳ ସଂଜୀବିତ ରହି ପ୍ରକାଶ ଲୋଡ଼ୁଥିବାର ଅନୁଭବ କବିର ଆସେ, ମାତ୍ର ସେ ବକ୍ତବ୍ୟକୁ ସମୁଦାୟ ରୂପ ଦେଇ ପାରେ ନାହିଁ । ଅଥଚ, ଉପଲବ୍ଧିଶୀଳ ପାଠକ, କବିର ଅଭିବ୍ୟକ୍ତି ଲାଭ କରିଥିବା ବକ୍ତବ୍ୟ ଭିତରେ ଅନୁଚ୍ଚାରିତ, ରୂପ-ବିହର୍ଭୂତ ଅନଭିବ୍ୟକ୍ତକୁ ଶୁଣି ପକାଏ । ତାହାହିଁ ସଫଳ କବିତାର ସାମର୍ଥ୍ୟ ।

କାବ୍ୟିକଭାଷା ଆମରି ସାଧାରଣ ଭାଷାକୁ ନେଇ ଗଠିତ । ଗଠନକଳାଟି କବିର ବାହାଦୂରୀ । ସାଧାରଣ ବ୍ୟବହାରିକ ଭାଷାକୁ ନେଇ ତାହାଠାରେ ବିଶେଷ ଶକ୍ତି ସଂଚାର କରିପାରେ କବି । ସାଧାରଣ ଭାଷାରୁ ଶବ୍ଦଟିଏ ଓପାଡ଼ି ନେଇ ଅର୍ଥଯୁକ୍ତ କରି କବି ନିଜ କବିତାରେ ରୋପଣ କରିଦିଏ । କବିତା ଶବ୍ଦ ଗଢ଼ା ଏକ ଜ୍ୟୋତିରେ ପରିଣତ ହୋଇଯାଏ । ଏହି ଜ୍ୟୋତି ଗୋଟିଏ ଭାଷାକୁ ଶୁଦ୍ଧ ଓ ପରିମାର୍ଜିତ କରେ । କାବ୍ୟିକଭାଷାର ଶକ୍ତିକୁ ମୁଖ୍ୟତଃ ଦୁଇଟି ଦିଗରୁ ବିଶ୍ଳେଷଣ କରାଯାଇପାରେ । ଭାଷାର ୧ମ-ଚିତ୍ରନିର୍ମାଣ କ୍ଷମତା, ୨ୟ ରହସ୍ୟମୟତା ।

**୧-ଚିତ୍ରନିର୍ମାଣ କ୍ଷମତା** - ସମସ୍ତେ ଦେଖିଥିବା ଦୃଶ୍ୟକୁ ପୁଣି ନୂଆ କରି ଅଧିକ ଅର୍ଥମୟ କରି ଦେଖାଇଦିଏ କବି । ମନେକରନ୍ତୁ କବି ରମାକାନ୍ତ ରଥଙ୍କ କବିତା 'ଜହ୍ନରାତି' । ଜହ୍ନରାତିର ମନଉନ୍ମାଦକାରୀ ଶକ୍ତି ବିଷୟରେ କିଏ ନ ଜାଣେ ? ପୂର୍ଣ୍ଣିମୀର ଦିଗ୍‌ବିଦିଗ ଜ୍ୟୋସ୍ନାକୁ ଦେଖି କିଏ ବା କ୍ଷଣେ ଆନମନା ହୋଇନାହିଁ, ନିଜକୁ ଭୁଲିଯାଇ ନାହିଁ ? ମାତ୍ର କବି ସେହି ଜହ୍ନରାତିକୁ ଅଲଗାଭାବେ ନୂଆ ଭାବେ ଦେଖାଇଲେ, ଏହି ନୈସର୍ଗିକ ଦୃଶ୍ୟଟି ଆଙ୍କିବା ନିମନ୍ତେ ତାଙ୍କ ନିକଟରେ ଶବ୍ଦ ହିଁ ଏକମାତ୍ର ପୁଞ୍ଜି । ଏହି ପ୍ରକାର ଚିତ୍ର ନିର୍ମାଣ ପାଇଁ, କବି ଲୌକିକ ଜଗତରେ ଚିତ୍ରଟି ଦେଖେ, ମାତ୍ର ଆଲୌକିକ ରୀତିରେ ପ୍ରତ୍ୟକ୍ଷକରେ, ଏକ ଅଲୌକିକ ଭୂମିରେ ମଧ୍ୟ । ଶବ୍ଦଗତ କଳାବେଳକୁ ସେହି ଆଲୌକିକକୁ ଲୌକିକ ସ୍ତରକୁ ସଂପୂର୍ଣ୍ଣ ଭାବେ ନହେଲେ ମଧ୍ୟ ଅଧିକାଂଶଭାବରେ ଓହ୍ଲେଇ ଆଣିବାର ପ୍ରଯତ୍ନ କରିଥାଏ । ଚିତ୍ରଟି ତେଣୁ ଲୌକିକ ଓ ଅଲୌକିକର ଆନୁପାତିକତାରେ ମହାର୍ଘ ଓ ଅସାଧାରଣ ହୋଇଉଠେ ।

**୨ କାବ୍ୟିକ ଭାଷାର ରହସ୍ୟମୟତା** - ଏହି ରହସ୍ୟମୟତା ହେତୁ କବିତା ସାଧାରଣ କଥାବାର୍ତ୍ତାଠାରୁ ଅଲଗା । ଏଥିରେ ପୁଂଖାନୁପୁଂଖ ବର୍ଣ୍ଣନା ଅପେକ୍ଷା ସୂଚନାରେ ଦୁଇଧାଡ଼ି କହିଦେବା ଶ୍ରେୟସ୍କର । ଠାରିଦେବା, ସୂଚନାଦେବା, ଇଙ୍ଗିତ କରିବା, ନ କହି

କହିବା କବିତାର ରୀତି । ପୁଣି 'କଣ୍ଟା'କୁ କବି 'ଫୁଲ' କହିପାରେ । କବିତାରେ ବସ୍ତୁମାତ୍ର ଗୁରୁତ୍ୱପୂର୍ଣ୍ଣ ନୁହେଁ, ବସ୍ତୁ ସହ ଜଡ଼ିତ ଆବେଗ ଗୁରୁତ୍ୱପୂର୍ଣ୍ଣ । ବସ୍ତୁର ଧାରଣା, ପରିଣତି ଓ ପ୍ରଭାବ ହିଁ ଗୁରୁତ୍ୱପୂର୍ଣ୍ଣ । 'କଣ୍ଟା' ଯଦି ଫୁଲଠାରୁ ଅଧିକ ମଧୁର ରୂପେ ପ୍ରତୀତ ହୋଇ ପାରିଲା, ତେବେ ତାହା 'ଫୁଲ' ହେବାରେ ବାଧା କେଉଁଠି ? ଅପଯଶ ଯେଉଁଠି ଆନନ୍ଦ ଓ ବିହ୍ୱଳତାର ଆଧାର ହୁଏ, ସେଠାରେ ରାଧା କହନ୍ତି "ଏ ଅପଯଶ ମୋତେ ଲାଗିଥାଉ"- ଏହା ମୋର ମସ୍ତକର ଭୂଷଣ" ସେଠାରେ ଅପଯଶ ନିନ୍ଦନୀୟ ନ ହୋଇ ଶିରୋଭୂଷଣ ପରି ମହାର୍ଘ ଓ ଗୌରବ ସୂଚକ ହେବ ନାହିଁ କାହିଁକି ?

ଏ ଯୁଗରେ କବିତାର ଏହି ଧର୍ମ ପ୍ରତି ଅଧିକାଂଶ ପାଠକଙ୍କର ଲକ୍ଷ୍ୟ ରହୁନାହିଁ । ଗଣମାଧ୍ୟମର ମନୋରଞ୍ଜନଧର୍ମୀ ପରିବେଷଣ ବ୍ୟକ୍ତିକୁ କିଛି ଭାବିବା, ଅନୁଭବ କରିବାକୁ ସୁଯୋଗ ଦେବା ପରିବର୍ତ୍ତେ କିଛି ସମୟ ଆରାମରେ କଟାଇବାକୁ ସୁଯୋଗ ଦେଉଛି । ମାତ୍ର ଏହି ଉପରଠାଉରିଆ, ମନୋରଞ୍ଜନ ମାଧ୍ୟମରେ କାବ୍ୟ ଉପଲବ୍ଧିର ଆନନ୍ଦଲୋକକୁ ଯିବାର ରାସ୍ତା ନାହିଁ । ଏକ ଦୀର୍ଘସ୍ଥାୟୀ ଉପଲବ୍ଧିରେ ଆବିଷ୍ଟ ହେବାର ଉପାୟ ନାହିଁ । ତେଣୁ ମନରେ ଆଶଙ୍କା ଉପୁଜିପାରେ, କବିତାର ଗ୍ରାହକ ବଞ୍ଚି ରହିବେ ତ ? ଅବଶ୍ୟ ଏକଥା ସତ ଯେ ଗଣମାଧ୍ୟମର ମନୋରଞ୍ଜନର ପ୍ରାବଲ୍ୟ ଦିନେ ଏତେ ବିରକ୍ତି ଓ ଶୂନ୍ୟତା ଆଣିଦେବ ଯେ, ମଣିଷ ତାର ଏକକ ସତ୍ତାକୁ ଖୋଜିବସିବ । ଖୋଜି ବସିବ ରହସ୍ୟାନୁଭବର ଆନନ୍ଦକୁ ଓ ଚେତନାର ଶୁଦ୍ଧତାକୁ । ନିଜଠାରୁ ମୁକୁଳିଯାଇ ନିଜକୁ ନିରୀକ୍ଷଣ କରିବାର ଆବଶ୍ୟକତା ଅନିବାର୍ଯ୍ୟ ମନେ ହେବ ତା'ର । ସେଦିନ ସେ କବିତାକୁ ଖୋଜିବ ଏବଂ କବିତା ଠିକ୍ ସେତିକିବେଳେ ତା ସାମ୍ନାରେ ଠିଆ ହୋଇଯିବ, ଠିକ୍ ଜଣେ ସମମର୍ମୀପରି ନତୁବା ପ୍ରେମାସ୍ପଦ ପରି ।



# ସହୋଦରା ଭାଷା ଓ ଭୂମି

ଖବର ମିଳିଲା ସାହିତ୍ୟ ଏକାଡେମୀ ତରଫରୁ ଆସାମ ଯିବାକୁ ହେବ। ଆସାମ ଓଡ଼ିଶାର ଭଗିନୀ, ଦୂରବର୍ତ୍ତୀ ଅବଶ୍ୟ। ତଥାପି ଭାଷାରେ, ଚଳଣିରେ ନିକଟତର-ଏବେ ତାକୁ ଆଖିରେ ଦେଖିବି, ମନରେ ଘେନିବି। ଖୁସି ଲାଗିଲା। ବିଗତ କିଛି ବର୍ଷ ଧରି ଆଲ୍‌ଫା ଓ ବୋଡ଼ୋମାନଙ୍କ ଦ୍ୱାରା ଉପଦ୍ରୁତ ନ ହେଉଥିଲେ ମୁଁ ମଧ୍ୟ ସପରିବାର ଯାଇ ଘୁରି ଆସନ୍ତିଣି। ଏହି ଅରଣ୍ୟମୟ ଭୂମି ଉଗ୍ରପନ୍ଥୀଙ୍କ ଦ୍ୱାରା ଉପଦ୍ରୁତ ହୋଇଥିବା ହେତୁ, କେତେକ ବନ୍ଧୁ କହିଲେ, ''ସାବଧାନ, ସମୟ ଭଲ ନାହିଁ। ନଗଲେ ହବନି।'' ତଥାପି ଯିବାର ଆଗ୍ରହ ହେଲା ଅପ୍ରତିହତ। ଆମେ ପାଞ୍ଚଜଣ ସାହିତ୍ୟିକ-ବିନିମୟ କାର୍ଯ୍ୟକ୍ରମରେ ଆସାମ ଯିବୁ। ଆମର କାମ ହେବ ଆସାମର ସାହିତ୍ୟିକମାନଙ୍କୁ ସାକ୍ଷାତ କରିବା, କବିତା ପାଠ ସାହିତ୍ୟାଲୋଚନା କରିବା ଓ ମାର୍ଚ୍ଚ ମାସ ୮/୯ ତାରିଖରେ ଅନୁଷ୍ଠିତ ହେଉଥିବା ଆସାମ ସାହିତ୍ୟ ସଭାରେ ଯୋଗଦେବା।

ଏଥର ପ୍ରଥମ ଥର ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ବାହାର ରାଜ୍ୟକୁ ୫ ଜଣଙ୍କୁ ଏକାଠି ପଠାଉଛି। ଏ ଦିଗରେ ଆମର ସଚିବ କବି ଡକ୍ଟର ହରପ୍ରସାଦ ପରିଚ୍ଛା ପଟ୍ଟନାୟକଙ୍କ ଉତ୍ସାହ ଉଲ୍ଲେଖଯୋଗ୍ୟ। ସେ ମହାଶୟ ପୂର୍ବାଞ୍ଚଳ କବି ସମ୍ମିଳନୀରେ ଯୋଗ ଦେବାକୁ ଆସାମ ଯାଇ ସେହି ଅବସରରେ ଆମମାନଙ୍କ ଗ୍ରସ୍ତ ନିମିତ୍ତ ସବୁ ପ୍ରକାର ସୁବନ୍ଦୋବସ୍ତ କରିଆସିଥିଲେ। ତାଙ୍କ ଉଦ୍ୟମରେ ଆମେ ରାଜ୍ୟପାଳଙ୍କ ଅତିଥି ହେବା ସ୍ଥିରୀକୃତ ହୋଇଥିଲା। ମାର୍ଚ୍ଚ ୩ ତାରିଖ ସନ୍ଧ୍ୟାରେ ଆମେ ୫ ଜଣ ଦଳର ମୁଖ୍ୟାଭାବେ ସୁଲେଖିକା ଶ୍ରୀମତୀ ବୀଣାପାଣି ମହାନ୍ତି ଓ କବି ସରୋଜ ରଞ୍ଜନ ମହାନ୍ତି, ମୁଁ, କବି ବିପିନ ନାୟକ ଓ ସାମ୍ବାଦିକ ଗାଳ୍ପିକା ଜ୍ୟୋତ୍ସ୍ନା ରାଉତରାୟ ପୁରୀ ଏକ୍‌ସପ୍ରେସରେ ଉଠିଲୁ। ସେଠାରୁ ୪ ତାରିଖ ଉଡ଼ାଣରେ ଆମେ ଦମ୍‌ଦମ୍‌ରୁ ଗୌହାଟୀ ଯିବୁ। ଷ୍ଟେସନରେ ଆମକୁ ସାହିତ୍ୟ ଏକାଡେମୀ ସଚିବ ଓ କର୍ମକର୍ତ୍ତାଗଣ ହୃଦ୍ୟ ବିଦାୟ ସମ୍ବର୍ଦ୍ଧନା ଜଣାଇଥିଲେ। ଷ୍ଟେସନକୁ ଆସିଥିଲେ କବି ଅପର୍ଣ୍ଣା ମହାନ୍ତି ଓ ସାମ୍ବାଦିକ ଜୀମୂତ ମଙ୍ଗରାଜ। ଆମେ ୪ ତାରିଖ ଦିନ ୧୨ଟା ବେଳେ ଗୌହାଟୀରେ ପହଞ୍ଚିଲୁ। ଆସାମ ସାଂସ୍କୃତିକ ବିଭାଗର ଜଣେ ଅଫିସର ଓ କେତେକ କର୍ମକର୍ତ୍ତା ଆମକୁ ଏଆରପୋର୍ଟରେ ଅଭ୍ୟର୍ଥନା ଜଣାଇଲେ। ୨ଟି

ଗାଡ଼ିରେ ଆମେ ୫ ଜଣ ବସି ସର୍କିଟ ହାଉସ ଅଭିମୁଖେ ଚାଲିଲୁ । ସବୁଠୁଁ ନୂଆ ଲାଗିଲା ଆମ ଆଗେ ଆଗେ ନାଲିପତାକା ଯୁକ୍ତ ଜିପ୍‌ଗାଡ଼ି (ସିକ୍ୟୁରିଟି) ଚାଲିଚି ଜଣେ, ଡ୍ରାଇଭର, ୫ ଜଣ ବନ୍ଧୁକଧାରୀ ଜଗୁଆଳ । ଭିଡ଼ ଜାଗାରେ ଗାଡ଼ି ସାଇରେନ ବଜାଉଛି । କୌତୁକ ପୂର୍ଣ୍ଣ ମନେ ହେଲା ଆମକୁ - କେବେଠଉଁ ଆମେ ଏତେ ଗୁରୁତ୍ୱପୂର୍ଣ୍ଣ ହେଲୁ ଯେହେତୁ ଆମେ ରାଜ୍ୟପାଳଙ୍କ ଅତିଥି, ରାଜ୍ୟର ନିରାପତ୍ତା ପାଇବାକୁ ହକ୍‌ଦାର ।

ଏବେ ଶ୍ୟାମଳ ଅରଣ୍ୟାନୀ ଶୋଭିତ ରାସ୍ତାରେ ଉଡ଼ାଜାହାଜ ପଡ଼ିଆରୁ ଗଲୁ ସର୍କିଟ ହାଉସକୁ (ଆସାମୀ ଭାଷାରେ ଲେଖା ହୋଇଥାଏ 'ଆବର୍ତ୍ତ ଭବନ') । ରାସ୍ତା ଦୁଇ କଡ଼ରେ ପ୍ରଚୁର ଗୁଆଗଛ, ନଡ଼ିଆଗଛ । ଏ ଯାଏଁ ମୋର ଧାରଣା ଥିଲା ଉପକୂଳ ଅଞ୍ଚଳରେ କେବଳ ଗୁଆ, ନଡ଼ିଆ ପ୍ରଚୁର ହୁଏ । ଲୋକମାନଙ୍କ ଭିତରେ ବେଶି କିଛି ତଫାତ୍ ଦିଶୁନଥିଲା । ଆମରି ଲୋକଙ୍କ ପରି, ଦୁଇ କଡ଼ରେ ଭୂମି ସତେ କି ଆମର ଓଡ଼ିଶାର । ସେମିତି ଖାଲ, ଗାଡ଼ିଆ, ଧାନକ୍ଷେତ । ଅବଶ୍ୟ ଅଳ୍ପଦୂରରେ ପାହାଡ଼ ପର୍ବତ ଓ ତା'ପୂର୍ବରୁ ଗୌହାଟୀ ଘେରି ବହି ଯାଉଛି ବ୍ରହ୍ମପୁତ୍ର ନଦୀ । ପ୍ରାୟ ଆମରି ଭଳି ପୋଷାକ ପରିହିତ ମହିଳା ଓ ପୁରୁଷ । ମାତ୍ର ସ୍କୁଲ ଛାତ୍ରୀମାନଙ୍କ ପରିଚ୍ଛଦ ନିଆରା । ସେମାନଙ୍କ ନିଜସ୍ୱତାର ପରିଚୟ-ମେଖଳା, ୟୁନିଫର୍ମ । ଗୋଟିଏ ରଙ୍ଗର ଘାଗରା, ସେଇ ରଙ୍ଗ ବା ଭିନ୍ନ ରଙ୍ଗରର ବ୍ଲାଉଜ ଓ ଲମ୍ୱା ଓଢ଼ଣୀ । ଭଲ ଲାଗିଲା ଦେଖି, ଗୋଟେ ଜାତିର ନିଜସ୍ୱ ପୋଷାକ ତ ଅଛି ।

ସର୍କିଟ ହାଉସର ଅବସ୍ଥିତି ଅତି ମନୋରମ । ବ୍ରହ୍ମପୁତ୍ର କୂଳରେ, ନଦୀ ବକ୍ଷରେ ସକାଳୁ ରାତି ଅଧଯାଏ ଘୁଡୁ ଘୁଡୁ ଶବ୍ଦ କରି ମଟର ଲଞ୍ଚର ଯାତାୟାତ, ରାତିରେ ଲଞ୍ଚମାନଙ୍କ ଚଳମାନ ଆଲୋକର ନିଷ୍ପ୍ରଭ ଧାରା- ପ୍ରକୃତରେ ଖୁବ୍ ନୂଆ ଓ ସୁନ୍ଦର ଲାଗୁଥିଲା । ସର୍କିଟ ହାଉସର ୩ଟି ବ୍ଲକ, ମଝିରେ ଫୁଲବଗିଚା ଓ ବଡ଼ ବଡ଼ ଗଛ- ଅଂସଖ୍ୟ ପକ୍ଷୀଙ୍କର ଭିଡ଼ । ସନ୍ଧ୍ୟାବେଳେ ସର୍କିଟ ହାଉସ୍ ବାଲକୋନି ତଳେ, ମାଛି ଅନ୍ଧାରରେ ମାଟିଆ ରଙ୍ଗର କ'ଣ ଗୋଟେ ହଲିଲା ପରି ଦିଶୁଥିଲା-ସାପର ମୁଣ୍ଡକି ? କିଛି ସମୟ ନିରୀକ୍ଷଣ କଲାପରେ ସ୍ପଷ୍ଟ ହେଲା ଯେ, ଗାଢ଼ ମାଟିଆ ରଙ୍ଗର ବିରାଟ ଏକ ଚିଲର ମୁଣ୍ଡ- ସମ୍ଭବତଃ ଚିଲଟି ଆହତ ହୋଇ ତଳେ ଭଙ୍ଗା ଇଟା ଗଦା ପାଖରେ ପଡ଼ିଚି, ମୁଣ୍ଡ ଉଠାଉଚି । ମନେ ପଡ଼ିଲା, ଶ୍ରୀ ଲକ୍ଷ୍ମୀନନ୍ଦନ ବୋରାଙ୍କ ଉପନ୍ୟାସଟି ପଢ଼ିଥିଲି, ଖୁବ୍ କରୁଣ, ନାରୀ ଜୀବନର କାହାଣୀ "ଗଙ୍ଗା ଚିଲାନିର ପାଖି"। ପରବର୍ତ୍ତୀ ଦିନମାନଙ୍କରେ ଅପରାହ୍ନରେ ବ୍ରହ୍ମପୁତ୍ର କୂଳରେ ଅସଂଖ୍ୟ ଗଙ୍ଗାଚିଲଙ୍କ ଆକୃତି ଓ ଉଡ଼ାଣ ତଥା କୂଜନ ଶୁଣିବାକୁ ମିଳିଲା । ଏମାନେ ଆମ ମାଟିଆ ଚିଲଙ୍କଠୁ ନିଆରା ।

ପହଞ୍ଚିଲା ପରେ ଆମେ ଖାଇପିଇ ବିଶ୍ରାମ ନେଉଛୁ । ଆମ ରୁମ୍‌କୁ ଆସିଲେ ଆସାମ ସାହିତ୍ୟ ସଭାର କର୍ମକର୍ତ୍ତା, ସମ୍ପାଦକ ସତୀଶଚନ୍ଦ୍ର ଚୌଧୁରୀ ପଠାଇଥିବା ନିମନ୍ତ୍ରଣ ପତ୍ର ଧରି । ଗୋଟିଏ ବ୍ଲକ୍‌ରେ ରହୁଥାଉ, ପାଖ ପାଖ ୨ଟି ରୁମ୍‌ରେ ବୀଣା'ପା ଏକା ଓ ଜ୍ୟୋସ୍ନା

ଆଉ ମୁଁ । ଟିକେ ଛାଡ଼ି ଅନ୍ୟ ଏକ ବ୍ଲକରେ ସରୋଜବାବୁ ଓ ବିପିନ । ସେମାନେ ଆମକୁ ନିମନ୍ତ୍ରଣ ଜଣାଇଲେ ୮/୯ ତାରିଖ ଅପରାହ୍ନରେ ଅତିଥି ସାହିତ୍ୟିକ କବି ଭାବରେ ସେଠାରେ ଆମକୁ ସମ୍ବର୍ଦ୍ଧନା ଦେବେ । ସେଦିନ ପୁଣି ସନ୍ଧ୍ୟାବେଳେ ରାଜ୍ୟପାଳଙ୍କ ଘରେ ଆମର ରାତ୍ରିଭୋଜନର ନିମନ୍ତ୍ରଣ । ଆସାମ ସାହିତ୍ୟ ସଭାକୁ ଉପରାଷ୍ଟ୍ରପତି ଆସିବେ ଓ ରାଜ୍ୟପାଳ ତାଙ୍କ ପାଇଁ ଆୟୋଜନରେ ବ୍ୟସ୍ତ ରହିବେ । ଆଜି ରାତିଟି ଆମ ପାଇଁ । ସନ୍ଧ୍ୟା ପରେ ରାଜ୍ୟପାଳଙ୍କ ଘରେ ପହଞ୍ଚିଲୁ । ପାହାଡ଼ ଉପରେ ଘର, ସୁଉଚ୍ଚ ଡ୍ରଇଁରୁମ୍‌ରେ ସୁସଜ୍ଜିତ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ମୂର୍ତ୍ତି । ରାଜ୍ୟପାଳ ଆମକୁ ସାଦର ସ୍ୱାଗତ ଜଣାଇଲେ । ସେ ପ୍ରଖ୍ୟାତ କବି, ଦେଶ ସେବକ, ରାଜନୀତିଜ୍ଞ ସ୍ୱର୍ଗତ ଗୋଦାବରୀଶ ମିଶ୍ରଙ୍କ ସୁପୁତ୍ର, ସଂସ୍କୃତିପ୍ରେମୀ, ନ୍ୟାୟମୂର୍ତ୍ତି ଶ୍ରୀ ରଙ୍ଗନାଥ ମିଶ୍ରଙ୍କ ଭ୍ରାତା ଶ୍ରୀ ଲୋକନାଥ ମିଶ୍ର । ସେଠାରେ ଆସାମ ସାହିତ୍ୟ ସଭା କଥା ପଡ଼ିଲା । ଆମେ ୮ ତାରିଖ ସେଠାକୁ ଯିବୁ- ତାହା ଏଠାରୁ ୫ ଘଣ୍ଟାର ଗାଡ଼ି ରାସ୍ତା, ବିଳାସୀ ପଡ଼ାରେ ଅନୁଷ୍ଠିତ ହେଉଛି ଓ ଆମପାଇଁ 'ବଅାଁଇ ଗାଓଁ'ଠାରେ ରହିବାର ବ୍ୟବସ୍ଥା ହୋଇଛି । ବିଳାସୀ ପଡ଼ା ସେଠାରୁ ଅଧଘଣ୍ଟାକର ବାଟ । ମୁଁ ଆଗରୁ ଜାଣିଥିଲି ଯେ ଆସାମୀମାନଙ୍କର ଜାତୀୟ ଆତ୍ମ ପରିଚୟ ଓ ଭାଷାର ସ୍ୱାତନ୍ତ୍ର୍ୟ ରକ୍ଷା ପାଇଁ ଆନ୍ଦୋଳନରୁ ଆସାମ ସାହିତ୍ୟ ସଭା ଜନ୍ମ ନେଇଥିଲା । ଏହାର ସଭାପତି ଓ ସମ୍ପାଦକ ଏକ ବର୍ଷ ପାଇଁ ନିର୍ବାଚିତ ହୁଅନ୍ତି । ଏବେ ସଭାପତି ଅଛନ୍ତି ଶ୍ରୀ ଲକ୍ଷ୍ମୀନନ୍ଦନ ବୋରା । ରାଜ୍ୟପାଳଙ୍କଠାରୁ ଜାଣିଲୁ ବିଳାସୀପଡ଼ାଟି ବୋଡ଼ୋ ଅଞ୍ଚଳ ପାଖାପାଖି । ବୋଡ଼ୋମାନେ ସାହିତ୍ୟ ସଭା ପାଇଁ 'ବନ୍ଦ' ଡାକରା ଦେଇଛନ୍ତି । ତଥାପି ଆଶା ଅଛି, ଏହି ଡାକରା  ପ୍ରତ୍ୟାହୃତ ହେବ । ଯେ ତ ସାହିତ୍ୟ ସଭା ନୁହେଁ- ଏକ ବିରାଟ ମେଳା- ଆସାମର ସାଧାରଣଲୋକ ଏଥିରେ ଭାଗ ନିଅନ୍ତି । ଲକ୍ଷାଧିକ ଲୋକ ହୁଅନ୍ତି । କବି ନବକାନ୍ତ ବରୁଆଙ୍କ ଠାରୁ ପରେ ଶୁଣିଲୁ ଯେ ସାହିତ୍ୟ ସଭା ପାଇଁ ଗୋଟେ ମୁଗ୍ଧବୋଧ ଲୋକଙ୍କୁ ଘେରିଥାଏ । ସବୁ ସ୍ତରର ଆସାମୀ ଲୋକେ ଏହି ସଭାକୁ ଆପଣାର ବୋଲି ଭାବନ୍ତି । କିଛି ଲୋକ ସଭାମଣ୍ଡପ ଘେରି ରହନ୍ତି- ଆଉ ବେଶି ଭାଗ ମେଳାରେ ମାତିଥାଆନ୍ତି- ଆମ ବାଲିଯାତ୍ରା ପରି । ୨/୩ଦିନ ସେଠାରେ ରହନ୍ତି- ବହି ଦୋକାନ ଆସେ ଓ ବହୁତ ବହି ବିକ୍ରୀ ହୁଏ । ସାହିତ୍ୟିକ , ଅସାହିତ୍ୟିକ, ଶିକ୍ଷିତ, ଅଶିକ୍ଷିତ ସମସ୍ତେ କିଛି ନା କିଛି କିଣନ୍ତି । ଏହାର ସତ୍ୟତା ବି ପ୍ରମାଣିତ ହେଲା । ୯ ତାରିଖରେ ଆମ ଡ୍ରାଇଭର ରାଜୁ ସାହିତ୍ୟ ସଭାର ୨ ଗୋଟି ପତ୍ରିକା କିଣିଲା । ଗୋଟେ ସାହିତ୍ୟ ପତ୍ରିକା ଓ ଅନ୍ୟଟି ଶିଶୁ ସାହିତ୍ୟ ପତ୍ରିକା । ତାକୁ ଜ୍ୟୋସ୍ନା କହିଲେ ''ସାହିତ୍ୟ ପତ୍ରିକାଟି ଆମକୁ ଦେଇଦେ- ଆମେ ତା'ର ଦାମ୍ ତୋତେ ଦେଇ ଦଉଚୁ । ଆମେ ପଢ଼ିବୁ, ଦେଖିବୁ ।'' ସେ ନାସ୍ତି କଲା ଓ କହିଲା, ''ଘରକୁ ଦି'ଖଣ୍ଡ ପତ୍ରିକା ନ ନେଲେ ଘର ଲୋକେ ମତେ କ'ଣ କହିବେ ? ସାହିତ୍ୟ ସଭାକୁ ଯାଇଥିଲୁ ବହି କି ପତ୍ରିକା ଖଣ୍ଡେ ଆଣିଲୁ ନାହିଁ ।'' ଆମେ ଚମତ୍କୃତ ହେଲୁ । ଭାବିଲୁ, ଓଡ଼ିଶାରେ ଏମିତି ହୁଅନ୍ତା ନାହିଁ ।

ପ୍ରଥମରୁ ଆମେ ଇଂରାଜୀ, ହିନ୍ଦୀ ବା ବଙ୍ଗଳାରେ ସେଠାରେ କଥା ଆରମ୍ଭ କଲୁ। ପରେ ପରେ ଜାଣିପାରିଲୁ ଯେ ଆସାମର ଶିକ୍ଷିତ ଅଶିକ୍ଷିତ ସମସ୍ତେ ଓଡ଼ିଆ ଭାଷାକୁ ଊଣା ଅଧିକେ ବୁଝନ୍ତି। ଭଉଣୀ ଭଲା ଭଉଣୀକୁ ନ ବୁଝନ୍ତା କିପରି ? ପୂର୍ବମାଗଧୀ ଅପଭ୍ରଂଶରୁ ଆମ ଓଡ଼ିଆ, ବଙ୍ଗଳା ଓ ଆସାମୀ ଭାଷାର ସୃଷ୍ଟି। ଆଉ ଦୁଇ ଭଉଣୀ, ଆସାମୀ ଓ ବଙ୍ଗଳା-ଏମାନଙ୍କ ଲିପି ପୁଣି ଏକା; ସାକ୍ଷାତ ଯାଆଁଳା ଭଉଣୀ ପରି ଏକା ରୂପ।

୫ ତାରିଖ ସନ୍ଧ୍ୟାରେ ଗୌହାଟୀ ୟୁନିଭରସିଟି ଇଂରାଜୀ ପ୍ରଫେସର କବି ଡକ୍ଟର ଭବେନ ବରୁଆଙ୍କ ସହିତ ଆମର କବିତା ପାଠୋତ୍ସବ ଓ ଆଲୋଚନା ଚାଲିଲା- ଆଲୋଚନାରେ ଆସାମର ତରୁଣ କବିଙ୍କ କଥା ବିଶେଷ ଭାବରେ ଚର୍ଚ୍ଚା ହେଲା। ଆମେ ଓଡ଼ିଆରେ ଓ ଡଃ ବରୁଆ ଆସାମୀରେ କବିତା ପଢ଼ିଲେ। ଆସାମୀ ବଙ୍ଗଳା ଭଳି ଆମକୁ ଏତେ ସହଜ ନ ଲାଗିଲେ ବି ଅନେକାଂଶରେ ବୁଝି ହେଉଥାଏ। ଆସାମୀ କଥା ଭାଷା ଆମେ ଯେତେ ସହଜରେ ବୁଝିପାରୁଥିଲୁ- କବିତା ବୁଝିବା ଯେତେ ସହଜ ଲାଗୁ ନଥିଲା। କବିତା ଭାଷାର ନିର୍ଯ୍ୟାସରେ ଗତା- ଅତିମାତ୍ରାରେ ସ୍ଥାନୀୟତା ଦ୍ୱାରା ଆକ୍ରାନ୍ତ। ସୂଚନାତ୍ମକତା ହିଁ କବିତାର ପ୍ରାଣ। ତେଣୁ କବିତା ବୁଝିବା ପାଇଁ ଭାଷା ସହ ଅଧିକତର ନିବିଡ଼ତା ଆବଶ୍ୟକ। ତଥାପି କବିତାର ସାମଗ୍ରିକତାର ସଂପ୍ରେଷଣରେ ବିଶେଷ ଅସୁବିଧା ହେଉ ନଥିଲା।

୬ ତାରିଖ ଗଲୁ ଶିଲଂ। ବାଟ ସାରା ଜ୍ୟୋତ୍ସ୍ନା ଓ ବିପିନ୍ ଗୀତ ଗାଇଲେ-ମଝିରେ ମଝିରେ ସରୋଜବାବୁ ମିଳାଇଲେ ତାଙ୍କର ବେତାଳିଆ ସ୍ୱର। ତେବେ ସର୍ବତ୍ର ବୀଣା'ପା ଓ ସରୋଜବାବୁ ଆମକୁ ସୁସଂହତ କରି ଆବଶ୍ୟକ ଦିଗ ଦର୍ଶନ ଦେଉଥାନ୍ତି। ୭ ତାରିଖରେ ଆମର କାର୍ଯ୍ୟକ୍ରମ ଥିଲା ଆସାମର ୩/୪ ଜଣ ବିଶିଷ୍ଟ ସାହିତ୍ୟିକଙ୍କ ସହ ସାକ୍ଷାତ କରିବା। 'ଆସାମ ଟ୍ରିବ୍ୟୁନ'ର ସଂପାଦକ ଚନ୍ଦ୍ର ପ୍ରସାଦ ସାଇକିଆ, କବି ନବକାନ୍ତ ବରୁଆ ଓ ଜ୍ଞାନପୀଠ ପୁରସ୍କାର ବିଜେତା, 'ମୃତ୍ୟୁଞ୍ଜୟ' 'ପ୍ରତିପଦ' ଓ 'ଇୟାରୁଇଙ୍ଗମ' ଉପନ୍ୟାସର ସଂରଚକ ଡଃ ବୀରେନ୍ଦ୍ର କୁମାର ଭଟ୍ଟାଚାର୍ଯ୍ୟଙ୍କ ସହ ସାକ୍ଷାତର ଯୋଜନା। ଆସାମ ଟ୍ରିବ୍ୟୁନ୍ ଅଫିସରେ ଶ୍ରୀଯୁକ୍ତ ସାଇକିଆଙ୍କ ଆତିଥେୟତା, ଓଡ଼ିଶା ସହ ତାଙ୍କ ଆତ୍ମୀୟ ସଂପର୍କର ପରିପ୍ରକାଶ ଖୁବ୍ ଭଲ ଲାଗିଲା। ସେ ମଧ୍ୟ ଆମମାନଙ୍କ କବିତାର ଇଂରାଜୀ ଅନୁବାଦ ଟ୍ରିବ୍ୟୁନ୍‌ରେ ଛପାଇବେ ଓ ଆସାମୀ ଅନୁବାଦ କରାଇବେ ବୋଲି ଆଗ୍ରହର ସହିତ କହିଲେ।

କବି ନବକାନ୍ତ ବରୁଆଙ୍କ ଘର ଅତି ସଂକୀର୍ଣ୍ଣ ଏକ ରାସ୍ତା ଉପରେ। ଘରଟି ସାହିତ୍ୟିକଙ୍କ ଘର ଭଳି। କବି ଓ କବିପତ୍ନୀ ଆମକୁ ସମ୍ବର୍ଦ୍ଧନା ଜଣାଇଲେ। ମେଖଳା ପରିହିତା ଶ୍ରୀମତୀ ବରୁଆ ଆମକୁ ଖାଦ୍ୟପେୟରେ ଆପ୍ୟାୟିତ କରିବାକୁ ଲାଗିଲେ। କବି ବରୁଆ ହସ ହସ ହୋଇ ହୃଦୟ ଖୋଲା କାବ୍ୟାଲୋଚନାରେ ମଜ୍ଜିଗଲେ। ସେ ଓଡ଼ିଶାକୁ ଆପଣାର ଭାବନ୍ତି- 'କବି ଗଙ୍ଗାଧର ମେହେର ସମ୍ମାନ' ଦ୍ୱାରା ସେ ନିକଟ ଅତୀତରେ

ସମ୍ମାନିତ ହୋଇଥିଲେ । ପୁଣି ୧୯୮୦ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ ତରଫରୁ କଲିକତାଠାରେ ଅନୁଷ୍ଠିତ ଏକ କବିତା କର୍ମଶାଳାରେ ମୁଁ ତାଙ୍କୁ ଭେଟିଥିଲି । ସେ ସ୍ମରଣ କଲେ, କହିଲେ, ''ଆପଣ ଅଳ୍ପ ବୟସ୍କା ଥିଲେ ସେତେବେଳେ ।'' ମୂଳତଃ ଆସାମୀ କବିତାର ସ୍ୱର ସଂପର୍କରେ ତାଙ୍କ ସହିତ ଆମର ଆଲୋଚନା ହେଲା । ତାଙ୍କଠାରୁ ବୁଝିଲୁ ଆସାମୀ କବି ସନନ୍ତ ତାନ୍ତୀ ମୂଳତଃ ଓଡ଼ିଆ-ଅଳ୍ପ କେତେପୁରୁଷ ପୂର୍ବରୁ ସେମାନେ ଆସାମରେ ବସବାସ କରିଛନ୍ତି । ତାଙ୍କ ଭାଇ ସମୀର ତାନ୍ତୀ ବି ଲେଖନ୍ତି । 'ବର୍ଣ୍ଣମାଳା'କୁ ଆସି ଥିବା ନୀଲିମ କୁମାରଙ୍କ କଥା ମଧ କହିଲେ । ଆଧୁନିକ କବିତାରେ ଲୋକ ଉପାଦାନ ଓ ଲୋକଶୈଳୀର ଉପଯୋଗିତା ଉପରେ ଆଲୋଚନା ହେଲା । କବି ବରୁଆ କାଳ୍ପନିକ ଅଭିଜ୍ଞତା (Imaginary Experience) ଉପରେ ଗୁରୁତ୍ୱ ଦେଲେ । ପଚାରିଲେ ଆମ କବି ରମାକାନ୍ତ, ସୀତାକାନ୍ତ ଓ ରାଜେନ୍ଦ୍ରଙ୍କ କଥା । ୨ ଘଣ୍ଟା ଆଳାପ ଆଲୋଚନା ପରେ ଆମେ ଫେରିଲୁ । ଡଃ ବରୁଆ ଆମକୁ ଓଡ଼ିଶାର ଜଣେ ପ୍ରିୟ କବି ପରି ଆପଣାର ମନେ ହେଲେ ।

ଗୋଟେ ପାହାଡ଼ ଉପରେ ଘୂରି ଘୂରି ଉଠିଲୁ ଖାର୍‌ଗୁଲିରେ ଥିବା ଡଃ ବୀରେନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ଘରେ । ସ୍ୱାମୀ, ସ୍ତ୍ରୀ ଆମକୁ ପାଛୋଟି ନେଲେ । ଦାମୀ ସିଲ୍‌କ୍‌ର ମେଖଳା ପରିହିତା ଶ୍ରୀମତୀ ଭଟ୍ଟାଚାର୍ଯ୍ୟ । ଶାରଳା ପୁରସ୍କାର ଉତ୍ସବକୁ ଡଃ ଭଟ୍ଟାଚାର୍ଯ୍ୟ ଆସିଥିବା କାଳରେ ତାଙ୍କ ପରିବାର ଓ ମୋ ପରିବାର ଗୋଟିଏ ଦିନ ଏକତ୍ର କଟାଇଥିଲୁ । ସେ ଥିଲେ ସେତେବେଳକାର କେନ୍ଦ୍ର ସାହିତ୍ୟ ଏକାଡେମୀର ସଭାପତି । ତା'ପରେ ଥିଲେ ହରିଆଣାରେ । ଅଳ୍ପ କେତେ ମାସ ହେବ ଗୌହାଟୀ ଆସିଛନ୍ତି ଓ ଏଣିକି ଏଠାରେ ରହିବେ । ଓଡ଼ିଶା ଓ ଓଡ଼ିଆ ସାହିତ୍ୟ ପ୍ରତି ସେମାନଙ୍କର ସମ୍ମାନବୋଧ ଯଥେଷ୍ଟ । ତାଙ୍କ ବାଲ୍‌କୋନିରୁ ଦିଶୁଚି ବ୍ରହ୍ମପୁତ୍ର ନଦୀ-ଘରସାରା ଉଚ୍ଚା ଉଚ୍ଚା ଆଲମାରି ଥାକରେ ବହି ଭର୍ତ୍ତି । ଆସାମୀ ଓ ଓଡ଼ିଆ ଗଦ୍ୟ ସାହିତ୍ୟ ଉପରେ ଆମର ଆଳାପ ଆଲୋଚନା ଚାଲିଲା । କଲଂ ନଦୀ, ଦିଗ୍‌ବୋଇ ଓ ୧୯୪୦/୪୨ର ଆନ୍ଦୋଳନ,ତାଙ୍କ ଉପନ୍ୟାସର ଧରାତଳ ବିଷୟରେ ମୁଁ ଉଖାରି ଉଖାରି ପଚାରୁଥିଲି । ସେମାନେ ଆମକୁ ଛାଡୁ ନଥିଲେ ଓ ପରିଦିନ ୮ ତାରିଖ ପ୍ରାତରାଶ ପାଇଁ ନିମନ୍ତ୍ରଣ ଜଣାଇଲେ । ଆସନ୍ତାକାଲି (ତା୮ରିଖ) ଡଃ ଭଟ୍ଟାଚାର୍ଯ୍ୟ ଓ ତାଙ୍କ ଝିଅ 'ଝୁରି' ଆମକୁ ବିଦାୟ ସଂବର୍ଦ୍ଧନା ଜଣାଇବାକୁ ଆସୁଛନ୍ତି ବୋଲି ଫୋନ୍ କଲେ । ମୁଁ ବିନୀତ ଭାବେ ବାରଣ କଲି । ଆମେ ଜିନିଷପତ୍ର ବନ୍ଧାରେ ବ୍ୟସ୍ତ । ମୁଁ ଟିକେ ଅସୁସ୍ଥ ହୋଇ ପଡ଼ିଥାଏ । ଏତେ ଦୂରରୁ କାହିଁକି ଆସିବେ ସେ ? ତାଙ୍କ ଆନ୍ତରିକତାକୁ ସମ୍ମାନ ଜଣାଇ ଫୋନ୍‌ରେ ବିଦାୟ ନେଲୁ । ଜୁଲାଇ ମାସରେ ଏହାର ଠିକ୍ ୪ ମାସ ପରେ ଶ୍ରୀ ଭଟ୍ଟାଚାର୍ଯଙ୍କର ଦେହାନ୍ତ ହେବାର ଖବର ମିଳିଲା ।

ଓଡ଼ିଶାଠାରୁ ଆସାମୀ ଲୋକଙ୍କ ଜୀବନଧାରା କଠିନତର ନିଶ୍ଚୟ । ପାହାଡ଼ ଉପରେ ଘର ମଝିରେ ରାଜ୍ୟକୁ ଦୁଇଭାଗ କରୁଥିବା ବ୍ରହ୍ମପୁତ୍ର ନଦୀ- ଏବେ ସିନା କଳକଳ ନାଦିନୀ

'ଲୁଇଟ' (ତା'ର ଅନ୍ୟ ନାମ) କିନ୍ତୁ ବର୍ଷାଦିନେ ହୋଇ ଉଠେ ଅପରିଚିତ, ଭୀମ, ଭୟଙ୍କର। ତଥାପି ଅର୍ଥନୀତିରେ ସେମାନେ ଓଡ଼ିଶାଠାରୁ ଆଗୁଆ। ସେଠାକାର ପାନଦୋକାନୀଟି ବି ଓଡ଼ିଶାକୁ ଜାଣେ- ଓଡ଼ିଆ ଭାଷା ବୁଝେ- ବାରିପଦାର ନିଗମାନନ୍ଦ ଭକ୍ତ ସମ୍ମିଳନୀରେ ନିଆଁ ଲାଗିଥିବାର ଖବର ରଖେ।

ଏତେ ଦୁର୍ଗମ ବଣ ପାହାଡ଼ ଘେରା କାମରୂପ ରାଜ୍ୟକୁ କେମିତି ପୂର୍ବେ ଓଡ଼ିଆମାନେ ଆସୁଥିଲେ କେଜାଣି। କାଉଁରୀ କାମାକ୍ଷା ଦେଶ ଯେ- ସତରେ। ଓଡ଼ିଶାରୁ ଭେଣ୍ଡାଟେ ଆସିଲେ ଏଠାରୁ ଆଉ ଫେରିଯିବା ସମ୍ଭବ ହଉ ନଥିବ। ଲୋକେ ବିଶ୍ୱାସ କରୁଥିବେ ଯେ, ଯେ ପାହାଡ଼ୀଲୋକ କେହି ତାକୁ କିମିଆ କରି ମେଣ୍ଢାଟେ କରି ରଖି ଦେଇଛି।

୧୦ ତାରିଖ ସକାଳ ୧୦ଟାରେ 'ଆବର୍ତ୍ତ ଭବନ' ଛାଡ଼ିଲୁ। ବିଦାୟ ନେଲୁ କଳନାଦୀ 'ଲୁଇତ'ଠାରୁ, ଉପରେ ଚକକ୍ର କାଟୁଥିବା ଗଙ୍ଗା ଚିଲମାନଙ୍କ କୂଜନଠାରୁ, ପାହାଡ଼ ପର୍ବତଘେରା ପ୍ରାୟ ଓଡ଼ିଶାର ସମତଳ ଓ ମାଳଅଞ୍ଚଳ ପରି ପ୍ରତୀତ ହେଉଥିବା ଭୂମିଠାରୁ, ସହୋଦରା ଭାଷାର ଆଳାପଠାରୁ, ସ୍କୁଲ ଯାଉଥିବ ମେଖଳା ପରିହିତା ଝିଅମାନଙ୍କ ଠାରୁ, ସର୍ବୋପରି ଗୌହାଟୀ ସହରରରୁ। ଗୌହାଟୀ ସହର- ଆମ ନିଜର ଏକ ଅଂଶ, ଅଥଚ କେତେ ଦୂରର! ପ୍ରାକୃତିକ ପ୍ରତିରୋଧର ପରିଧି ଭିତରେ ରହିଛି। ଭାଗ୍ୟରେ ଥିଲେ ମଣିଷ ନିଜ ଅନ୍ତରର ଏକ ଅଂଶ ସହ ଏକାତ୍ମ ହୋଇଥାଏ ଏ ସିନା!



# ନାରୀର ରଚନାତ୍ମକତା

ସେଦିନ ପ୍ଲେନ୍ ଏକଘଣ୍ଟା ବିଳମ୍ବରେ ଭୁବନେଶ୍ୱର ଛାଡ଼ିଲା । ମୋର ଓଡ଼ିଶା ନିବାସରେ ରହିବା ବ୍ୟବସ୍ଥା । କେନ୍ଦ୍ର ସାହିତ୍ୟ ଏକାଡେମୀ ସମସ୍ତ ଲେଖିକାଙ୍କର ରହିବା ବ୍ୟବସ୍ଥା କରିଥାନ୍ତି, Hotel city International ରେ । ପୂର୍ବରୁ ସୁଚେତା ମିଶ୍ର ଯାଇଥିଲେ ତାଙ୍କ ଭାଇଙ୍କ ପାଖକୁ ଏବଂ ସମ୍ମିଳନୀ ଦିନତକ ସେ Hotel C. I. ରେ ରହିବେ । କଥାଥିଲା ମୋ ପାଇଁ ଡବଲ୍ ସିଟେଡ଼ ତ ରୁମ୍ ରଖିଥିବେ ସେ । ଅଥଚ , ମୁଁ ସେଠାକୁ ଗଲିନାହିଁ । ଓଡ଼ିଶା ନିବାସ ଅଧିକ ଆପଣାର ଲାଗିବ ବୋଲି ସେଠାରେ ରହିଲି । ସୁଚେତାଙ୍କୁ ଜଣାଇ ପାରିଲିନାହିଁ । ସାକ୍ଷାତରେ ଅବଶ୍ୟ ''ଆପଣଙ୍କ ସହ ମୁଁ କଥା କହିବି ନାହିଁ ଭାବିଥିଲି, ମତେ କହିଲେ, ମୁଁ ଅପେକ୍ଷାକଲି, ଆସିଲେ ନାହିଁ'' । ଅଭିମାନବ୍ୟଞ୍ଜକ କଥା ଶୁଣିବାକୁ ମିଳିଲା । ମୋ ତରଫରୁ ମୁଁ ଆଗ ସୁଚେତାଙ୍କ ସହ କଥାହେଲି । ଯା'ହଉ ଥଣ୍ଡାରୋଗଟା ଏବର୍ଷ ଶୀତଦିନ ସାରା ଦାଉସାଧିଲା ଯେ ଆଉ କାହାସହିତ ଏକାରୁମ୍‌ରେ ରହିବା ସୁବିଧାଜନକ ହୋଇନଥାନ୍ତା । ୩୦ ବର୍ଷର ପୁରୁଣା ଥଣ୍ଡା ଆଲର୍ଜି ମୋର, ତା'ର କାରଣ ଜଣାପଡୁନାହିଁ କି ଭଲ ବି ହଉନାହିଁ । ଚିକିତ୍ସା କାଟୁ କରୁନାହିଁ ।

ଫେବୃଆରୀ ୨୨ ତାରିଖ ସକାଳ ୧୦ଟା ବେଳେ I. I. Centre ରେ ଆଲୋଚନାଚକ୍ରର ଉଦ୍‌ଘାଟନ । ବହୁ ଜନସମାଗମ ହୋଇଥାଏ । ମଣ୍ଡପଟି ସୁସଜ୍ଜିତ ଓ ଭରପୂର । ଉଦ୍‌ଘାଟନ କରନ୍ତି ବଙ୍ଗଳାର ପ୍ରସିଦ୍ଧ ଲେଖିକା ମହାଶ୍ୱେତା ଦେବୀ । ପୂର୍ବରୁ ମୁଁ ତାଙ୍କୁ କଲିକତାରେ ଓ ଭୁବନେଶ୍ୱରରେ ଦେଖିଥାଏ ଓ ତାଙ୍କର କେତେକ ପୁସ୍ତକ (ଗଳ୍ପ, ଉପନ୍ୟାସ) ପଢ଼ି ଚମତ୍କୃତ ହୋଇଥାଏ । ସେ ମହାଶୟା ସ୍ୱବକ୍ତବ୍ୟରେ ବଙ୍ଗଳାର ଲେଖିକାମାନଙ୍କ ସଂପର୍କରେ ସୂଚନାଦେବା ସହିତ, ନିଜ ସୃଜନଶୀଳତା ସଂପର୍କରେ ମଧ୍ୟ ଅନେକ କଥା କହିଲେ । ବଙ୍ଗଳା ଭାଷାରେ ଗୋଟିଏ ପ୍ରବାଦ ପ୍ରଚଳିତ, ଯାହାର ଅର୍ଥ ''ସ୍ତ୍ରୀ ଲୋକ ଜଳିପୋଡ଼ିଗଲେ, ତା'ର ଧୂଆଁ ଚାରିଦିଗରେ ଉଡ଼ିଲେ ହିଁ, ସେହି ଧୂଆଁ ସହିତ ତା'ର ଯଶ ଚାରିଆଡ଼େ ବ୍ୟାପୀ ଯାଏ ।'' ଯୁଗ ଯୁଗ ଧରି ଏଇଭଳି କଥା କହି, ନାରୀକୁ ଭୁଲାଇ, ନିର୍ଯ୍ୟାତିତ କରିବା ହେଉଛି ଯେ ପୁରୁଷପ୍ରଧାନ ସମାଜର ଚାଲ୍ । ତେବେ ତାଙ୍କର ଉଦ୍‌ବୋଧନର ଶକ୍ତି ଥିଲା । ଅପୂର୍ବ । ଅନ୍ୟତମ ବଙ୍ଗଳାଲେଖିକା ନବନୀତା ଦେବସେନ୍ ବି

କି’ ନୋଟ୍ (ବୀଜ) ବକ୍ତବ୍ୟ ପ୍ରଦାନ କଲେ । ମୁଖ୍ୟତଃ ବଙ୍ଗଦେଶୀୟ ଲେଖିକାଙ୍କ ବିଷୟ ସେ ଆଲୋଚନା କଲେ । ସଂପାଦକ ଓ ସଭାପତିଙ୍କ ବକ୍ତବ୍ୟ ଯଥା ସମୟରେ ଉପସ୍ଥାପିତ ହୋଇଥିଲା । ଅନ୍ୟତମ ଲେଖିକା କୁରୁତୁଲ୍ ଏନ୍ ହାଇଦର୍ ଓ କ୍ରିଷ୍ଣା ସୋବ୍ତୀ ନିଜ ନିଜ ବକ୍ତବ୍ୟ ପ୍ରଦାନ କଲେ । ଶ୍ରୀମତୀ ସୋବ୍ତୀ ନିଜ ସୃଜନଶୀଳତାର ପୃଷ୍ଠଭୂମି ସହ. ସାହିତ୍ୟର ଚରିକାଳୀନତା ସଂପର୍କରେ ସାରଗର୍ଭକ ଭାଷଣ ଦେଲେ । କୁର୍ ତୁଲ୍ ଏନ୍ ହାଇଦର, ଯେ କି ବାର୍ଦ୍ଧକ୍ୟ, ରୋଗ ଗସ୍ତ । ଜଣେ ମହିଳାଙ୍କ ସାହାଯ୍ୟରେ ଧୀରେ ଧୀରେ ଚାଲୁଥାନ୍ତି, ତାଙ୍କୁ ପ୍ରଥମ ଦେଖିଲି । ଖୁବ୍ ସୁନ୍ଦରୀ ଏବେ ମଧ ଅଛନ୍ତି ଓ ସ୍ୱର ତୀବ୍ର ଆଉ ମୂର୍ଚ୍ଛନାମୟ । ସମସ୍ତଙ୍କ ବକ୍ତବ୍ୟରୁ ସ୍ପଷ୍ଟ ହେଉଥିଲା ଯେ, ନାନାବଞ୍ଚନା ଓ ଯନ୍ତ୍ରଣା ମଧରେ ଭାରତୀୟ ମହିଳାମାନେ ଜୀବନଯାପନ କରି ମଧ ବହୁପୂର୍ବକାଳରୁ ସାହିତ୍ୟସାଧନାରେ ନିମଜ୍ଜିତ ରହିଛନ୍ତି । ମୀରାବାଈ ଗୀତ ଲେଖିଲେ ବୋଲି ପରିବାର ଓ ସମାଜ ତାଙ୍କୁ କମ୍ ଲାଞ୍ଛନା ଦେଇନାହିଁ । ଆଜି ଏକବିଂଶ ଶତାବ୍ଦୀର ମୋଡ଼ ଉପରେ ନାରୀମାନେ ଯେ ସକଳ କ୍ଷେତ୍ରରେ ଉନ୍ନତ ମେଧା ଓ ସୃଜନଶୀଳତାର ଅଧିକାରିଣୀ ହୋଇ ପାରିଛନ୍ତି- ଏହା ସେମାନଙ୍କ ବକ୍ତବ୍ୟ ଥିଲା ।

ଉଦ୍‌ଘାଟନ ଉତ୍ସବର ସ୍ୱାଗତ ଅଭିଭାଷଣ ପ୍ରଦାନ କରିଥିଲେ ଏକାଡେମୀର ସଂପାଦକ ପ୍ରଫେସର ସଚ୍ଚିଦାନନ୍ଦନ୍ । ତାଙ୍କ ବକ୍ତବ୍ୟରୁ କିଛି ଅଂଶ ଏଠାରେ ଉଦ୍ଧାର କରିବା ପ୍ରାସଂଗିକ ହେବ ବୋଲି ମନେ କରୁଛି । ‘‘ଏହି ଐତିହାସିକ ସମ୍ମେଳନରେ ଆପଣମାନଙ୍କୁ ସ୍ୱାଗତ ଜଣାଇବା କାଳରେ ମୁଁ ଗଭୀର ଆନନ୍ଦ ଅନୁଭବ କରୁଛି । ଭାରତରେ ଏ ପ୍ରକାର ସମ୍ମେଳନ ନିଶ୍ଚୟ ନୂତନ । ଏହା ନାରୀମାନଙ୍କ ସୃଜନଶୀଳତାର ଏକ ଆଲୋଚନା ଚକ୍ର । ଅନ୍ତତଃ ପକ୍ଷେ ତିନି ହଜାର ବର୍ଷର ମହାନ୍ ପରମ୍ପରାର ଏହା ଏକ ଉତ୍ସବାନୁଷ୍ଠାନ । ବିରାଟ, ବହୁଭାଷିକ ଭାରତୀୟ ପରମ୍ପରାର ସାହିତ୍ୟିକ ଉତ୍ତରାଧିକାରର ଏହା ଏକ ବିଭିନ୍ନ ଦିଗାଭିମୁଖୀ, ଚଳମାନ ଅଂଶ । ଏହା କାଳକ୍ରମେ ସଜୀବ, ବିକଶିତ, ବର୍ଦ୍ଧିତ ଓ ପୁଷ୍ପିତ ହୋଇ ଚାଲିଛି ।’’

ଖ୍ରୀଷ୍ଟପୂର୍ବ ୬ଷ୍ଠ ଶତାବ୍ଦୀର ‘ଥେରିଗାଥା’ ସଂପର୍କରେ ଉଲ୍ଲେଖ କରି କହିଲେ ଯେ ବୌଦ୍ଧ ଭିକ୍ଷୁଣୀମାନଙ୍କ ରଚିତ ଏହା ଭାରତର ସର୍ବପ୍ରଥମ ସଂକଳନ ।

ଏହାପରେ ଭକ୍ତିଆନ୍ଦୋଳନ ରଚୟିତ୍ରୀ ଦକ୍ଷିଣର ଅଲ୍‌ହ, ଆଭାୟାର ଅକ୍କା ମହାଦେବୀ, ଉତ୍ତରର ମୀରାବାଈ, ଜନାବାଈ, ଗଙ୍ଗାଦେବୀ ଆଦି ନାରୀମାନେ ଆଧ୍ୟାତ୍ମ ଅନ୍ୱେଷଣରେ ଗୃହତ୍ୟାଗୀ ହୋଇଥିଲେ । ଏହି କ୍ରମରେ ନାରୀ-ସନ୍ଥକବିମାନଙ୍କ ପରମ୍ପରା ୬ଷ୍ଠରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଚଳି ଆସିଛି । ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ମହିଳାଗଣ ଅନେକ ଗଦ୍ୟ ଓ ପଦ୍ୟ ରଚନା କରିଛନ୍ତି । ରାସସୁନ୍ଦରୀଦେବୀ, ସ୍ୱର୍ଣ୍ଣକୁମାରୀ ଦେବୀ, ମୁକ୍ତାବାଈ, ସାବିତ୍ରୀବାଈ ଫୁଲେ, ପଣ୍ଡିତା ରମାବାଈ ସରସ୍ୱତୀ, ବିନୋଦିନୀ ଦାସୀଦେବୀ, ସରୋଜିନୀନାଇଡୁ ନିରୁପମାଦେବୀ ଆଦି ଲେଖିକାଗଣ

ସମାଜସଂସ୍କାର ଓ ଜାତୀୟ ସ୍ୱାଧୀନତା ନିମିତ୍ତ ସାମାଜିକ କୁସଂସ୍କାର ତ୍ୟାଗ କରି ଲେଖନୀ ଧାରଣ କରିଛନ୍ତି । ଲେଖିକା ବିଭାବରୀ ସିରୁରକର, କୁନ୍ତଳାକୁମାରୀ ସାବତ, ସୁଭଦ୍ରା କୁମାରୀ ଚୌହାନ, ମହାଦେବୀ ବର୍ମା, ଆଶାପୂର୍ଣ୍ଣାଦେବୀ, ଇସ୍‌ମତ ଚୁଘ୍‌ତାଇ, ଅମ୍ରିତା ପ୍ରୀତମ୍, ଲଳିତାମ୍ବିକା ଆନ୍ତର୍ଜନମ୍, କେ. ସରସ୍ୱତୀ ଆମ୍ମା, ମହାଦେବୀ ବର୍ମା, ମହେଶ୍ୱେତା ଦେବୀ, କ୍ରିଷ୍ଣାସୋବ୍‌ତୀ, କୁରତୁଲଏନ୍ ହାଇଦର ନିଜ ସୃଜନଶୀଳତା ଦ୍ୱାରା ପ୍ରତିଷ୍ଠା ପ୍ରାପ୍ତ ହୋଇଛନ୍ତି । ଭାରତର ମୁଖ୍ୟ ଭାଷାମାନଙ୍କରେ ସୃଜନକଳାର ଅଧିକାରିଣୀ ମହିଳାମାନଙ୍କ ମଧ୍ୟରେ କମଳାଦାସ, ସୁଗତାକୁମାରୀ, ଗୌରୀଦେଶପାଣ୍ଡେ, ଜିଲାନିବାନୋ, ବୀଣାପାଣି ମହାନ୍ତି, ମନ୍ନୁଭଣ୍ଡାରି, ଜୟା ମେହେଟ୍ଟା, ଆବୁରିଛାୟାଦେବୀ, ପ୍ରତିଭା ଶତପଥୀ, ପ୍ରତିଭା ରାୟ, ତ୍ରିବେଣୀ, ବୈଦେହୀ, ସାରା ଜୋସେଫ, ନବନୀତା ଦେବସେନ ଉଲ୍ଲେଖଯୋଗ୍ୟ । ଏମାନଙ୍କ ସହ ନୂତନ ପୀଢ଼ିର ଅସଂଖ୍ୟ ଲେଖିକା ସାହିତ୍ୟ ସାଧନାରେ ବ୍ରତୀ ଅଛନ୍ତି ।''

ଉପରୋକ୍ତ ସ୍ୱାଗତ ଭାଷଣରେ ଲେଖିକାମାନଙ୍କ ଐତିହାସିକତାକୁ ସମ୍ମାନିତ କରିଥିଲେ ସମ୍ପାଦକ । ଏକାଡେମୀର ସଭାପତି ଉଦ୍‌ଘାଟନ ଉତ୍ସବର ସଭାପତି ଅଭିଭାଷଣରେ ଭାରତୀୟ ଲେଖିକାମାନଙ୍କ ସଂପର୍କରେ ସ୍ୱବକ୍ତବ୍ୟ ପ୍ରଦାନ କରିଥିଲେ । ସଭାପତି, ଓଡ଼ିଶାର ଗୌରବ, ଦେଶର ବିଶିଷ୍ଟ କବି ଶ୍ରୀ ରମାକାନ୍ତ ରଥଙ୍କ ବକ୍ତବ୍ୟରୁ କିଂଚିତ୍ ଉପସ୍ଥାପନ କରବା ଅପ୍ରାସଙ୍ଗିକ ହେବ ନାହିଁ । ସେ କହିଲେ ଯେ, ''ଏହି ଭଳି ଏକ ଆଲୋଚନାଚକ୍ର ଆପଣମାନଙ୍କ ପରସ୍ପର ମଧ୍ୟରେ ଯୋଗାଯୋଗ ସ୍ଥାପନ କରିବା ସହ ଆମ ସମସ୍ତଙ୍କୁ ଆପଣମାନଙ୍କ ରଚନା ମଧ୍ୟକୁ ପ୍ରବେଶ କରିବା ନିମିତ୍ତ ସୁଯୋଗ ଦେଇଛି । ଭାରତରେ ମହିଳାମାନଙ୍କ ରଚନାର ଏକ ସୁଦୀର୍ଘ ଇତିହାସ ରହିଛି । ପୂର୍ବକାଳର ଉଦାର, ସ୍ୱାଧୀନଚେତା ସାମାଜିକ ଦୃଷ୍ଟି କାଳକ୍ରମେ ବଦଳିଯାଇ ଏକ ସୀମିତ, ଅସମାନ ସମାଜ ଦୃଷ୍ଟିରେ ପରିଣତ ହୋଇଛି, ଯେଉଁଥିରେ ନାରୀମାନଙ୍କ ସ୍ଥିତି ଯଥେଷ୍ଟ ଉନ୍ନତ ହୋଇପାରିନାହିଁ। କିନ୍ତୁ ଭାରତୀୟ ଧର୍ମଚେତନାରେ ଯେଉଁ ୩ଟି ମୁଖ୍ୟଦେବୀଙ୍କୁ ସ୍ୱୀକାର କରାଯାଏ, ତନ୍ମଧ୍ୟରୁ ଐଶ୍ୱର୍ଯ୍ୟ ଓ ଶାନ୍ତିର ପ୍ରତୀକ ଲକ୍ଷ୍ମୀ, ସୂକ୍ଷ୍ମ କଳାଚେତନା ଓ ଜ୍ଞାନର ଅଧିକାରିଣୀ ଦେବୀ ସରସ୍ୱତୀ ଏବଂ ମନ୍ଦର ସଂହାରକାରିଣୀ ଶକ୍ତିମତୀ ଦୁର୍ଗା-ନାରୀ ଶକ୍ତିର ପ୍ରତୀକତା କରନ୍ତି । ଏକଥା ସ୍ପଷ୍ଟ ଯେ ନାରୀ କାଳକ୍ରମେ ତାର ଆତ୍ମପ୍ରକାଶର ସ୍ୱାଧୀନତା ହରାଇଛି, ଏବଂ ଶିକ୍ଷାହୀନତା ଏହାର ଏକ ମୁଖ୍ୟ କାରଣ । ଲୋକସାହିତ୍ୟର ସ୍ରଷ୍ଟା ଅନେକତ୍ର ନାରୀ ହେଲେହେଁ, ସାହିତ୍ୟର ଇତିହାସରେ ସେମାନଙ୍କ ନାଆଁ ନାହିଁ । ନାରୀମାନଙ୍କ ସୃଜନଶୀଳତାର ମୌଳିକତା ଓ ଗଭୀରତା ନିଃସନ୍ଦେହରେ ତୀବ୍ର ଓ ଶକ୍ତିଶାଳୀ । କେତେକ ଭାଷାର କେତୋଟି ସାହିତ୍ୟ ବିଭାଗରେ ବର୍ତ୍ତମାନ ସୃଜନଶୀଳା ନାରୀମାନଙ୍କ ସହ, ସୃଜନଶୀଳ ପୁରୁଷମାନେ ପ୍ରତିଯୋଗିତା କରିବାର ଆବଶ୍ୟକତା ଅନୁଭୂତ ହେଲାଣି । ନାରୀମାନଙ୍କୁ ଭିନ୍ନ ଶ୍ରେଣୀର ଲେଖକ ଭାବିବାରେ ମୁଁ ବିରୋଧୀ । ସେଇ ଏକା ପୃଥିବୀରେ ବାସ କରି, ଏକାଭାଗ୍ୟକୁ ଆମେ ସମସ୍ତେ ଭୋଗ କରୁଛେ ।

କି'ନାରୀ ପୁରୁଷ, ସକଳ ଲେଖକ ଏହି ପୃଥ୍ୱୀକୁ ଆବିଷ୍କାର କରିବା ଓ ଭାଗ୍ୟକୁ କଳନା କରିବା ନିମନ୍ତେ ପ୍ରୟାସ କରିଥାନ୍ତି।''

ଉଦ୍‌ଘାଟନ ଉତ୍ସବର ପରବର୍ତ୍ତୀ ଅଧିବେଶନରେ ତେଲେଗୁ ହିନ୍ଦୀ, ମଲୟାଲମ୍ ଓ ଓଡ଼ିଆ କବି ଲେଖକ ଭାଗ ନେଇଥାନ୍ତି। ପ୍ରବାସିନୀ ମହାକୁଡ଼ ଏହି ଅଧିବେଶନରେ କବିତା ପାଠ କରନ୍ତି। ପରବର୍ତ୍ତୀ ଅଧିବେଶନରେ ହିନ୍ଦୀ, ପଂଜାବୀ, ଆସାମୀ ଓ ଓଡ଼ିଆ ଲେଖିକା ନିଜର ସୃଜନଶୀଳତା ସଂପର୍କରେ ପ୍ରବନ୍ଧ ପାଠ କରନ୍ତି। ଏହି ଅଧିବେଶନରେ ଲେଖିକା ପ୍ରତିଭାରାୟ ନିଜ ସ୍ରଷ୍ଟା ଜୀବନର ତଥ୍ୟାଶ୍ରୟୀ ଏକ ରଚନା ପାଠ କରନ୍ତି। ୨ୟ ଦିବସରେ ୪ ଗୋଟି ଅଧିବେଶନ ମଧ୍ୟରୁ ଗୋଟିକରେ ଯଶୋଧାରା ମିଶ୍ର ତାଙ୍କର ଗୋଟିଏ ଲୋକପ୍ରିୟ ଗଳ୍ପର ହିନ୍ଦୀ ଅନୁବାଦ ପଢ଼ନ୍ତି। ଅନ୍ୟ ଗୋଟିକରେ କବିତା ପାଠ କରୁ ମୁଁ ଓ ସୁଚେତା ମିଶ୍ର। ୩ୟ ଦିନର ଶେଷ ଅଧିବେଶନରେ ରଂଜିତା ନାୟକ କବିତା ପାଠ କରନ୍ତି।

ତେବେ, ୨ୟ ଦିନ ସକାଳେ, ପ୍ରାୟ ୯ଟା ବେଳେ ମୋ ଚଷମାଟି ହାତରୁ ତଳେ ପଡିଗଲା ଓ ତା'ର ରେଜିନେଲନ୍ସ ଖସିପଡିଲା। ତାହା ଭାଂଗିଛି କି ଫାଟିଛି, ମୁଁ ଜାଣିପାରିଲି ନାହିଁ। କୌଣସି ଅକ୍ଷର ମୋତେ ଦିଶୁ ନାହିଁ। ଆଜି ମୋର କବିତାପାଠ କରିବାର କଥା। ସହଜେ ଇଂରାଜୀ ଓ ହିନ୍ଦୀରେ ପଢ଼ିବାକୁ ପଡ଼ିବ। କାନ୍ଦିବି ନାଁ ମୁଣ୍ଡ କୋଡି କୋଡିବି ? ମୁଁ ଏମିତି ଅଣହୁସିଆର ହୋଇ କେତେ ଯେ ଦୁଃଖ ଭୋଗେ। ପସ୍ତେଇଲା ବେଳକୁ ଆଉ କିଛି ବାକୀ ନଥାଏ। ନିଜକୁ ନିନ୍ଦିଲି। କ'ଣ କରିବି ? ଓଡ଼ିଶା ନିବାସ ରିସେପ୍‌ସନ୍‌କୁ ଫୋନ୍‌କଲି। ''ମୋତେ ଟାକ୍ସିଟେ କରି ଦିଅନ୍ତୁ, ଚଷମା ଦୋକାନ ଯିବି, ତୁରନ୍ତ....'' ସେ ଦିନ ବ୍ରଜବନ୍ଧୁପ୍ରଧାନ ଥାଆନ୍ତି। ସେ ବହୁତ ଆଶ୍ୱାସ ଦେଲେ ଓ ୧୦ଟା ବେଳକୁ ମୁଁ ମୋତିବାଗ ଚଷମା ଦୋକାନରେ ପହଂଚି, ରେଜିଲେନ୍‌ସଟି ଲଗାଇନେଲି। ସେଦିନକୁ ମିଶାଇ ସମୁଦାୟ ୧୧ଟି ଅଧିବେଶନର କାର୍ଯ୍ୟକ୍ରମ ରହିଥିଲା। ବିଭିନ୍ନ ଅଧିବେଶନରେ ସଭାପତିତ କରିଥିଲେ ବିଶିଷ୍ଟ ଲେଖିକା ଓ ଲେଖକମାନେ। ସେମାନଙ୍କମଧ୍ୟରେ ଥିଲେ ପ୍ରଫେସର୍ ନାମଓ୍ୱିର୍ ସିଂହ ଜୀ। ହିନ୍ଦୀ ସାହିତ୍ୟ ଜଗତରେ ସେ ଏକ ପ୍ରଖ୍ୟାତ ବ୍ୟକ୍ତିତ୍ୱ, ମୁଁ ମଧ୍ୟ ୧୯୮୧ ମସିହାରେ ତାଙ୍କ ହସ୍ତରୁ ବିଷୁବ କବିତା ପୁରସ୍କାର ଗ୍ରହଣ କରିଥିଲି। ସେ ଏତେ ଉଦାର ଯେ, ତାହା ସ୍ମରଣ ରଖିଥିଲେ ଓ ଏଥି ପୂର୍ବରୁ ଓଡ଼ିଶା ଆସିବା ଅବକାଶରେ ତାଙ୍କ ସହ ମୋର ସାକ୍ଷାତ ହୋଇଥିଲା ଓ ମୋର ୨ଖଣ୍ଡ ହିନ୍ଦୀ କବିତା ପୁସ୍ତକକୁ (ଚୁନୀହୁଇ କବିତା ଏଁ ଓ ଶବରୀ) ସେ ଖୁବ୍ ପସନ୍ଦ କରିଥିଲେ। ସେ ତାଙ୍କର ସଂକ୍ଷିପ୍ତ ବକ୍ତବ୍ୟରେ କହିଲେ ଯେ, ''ସମାଜ ଜଂଜିର, ନାରୀ ଉପର ସ୍ତରର ସମାଜରେ ସ୍ୱତନ୍ତ୍ର ନୁହେଁ। ଦାସୀପ୍ରାୟ। ବରଂ ତଳସ୍ତରର ସମାଜରେ ନାରୀମାନଙ୍କର କିଛିଟା ସ୍ୱତନ୍ତ୍ରତା ଅଛି। କେବଳ ସାହିତ୍ୟ କାହିଁକି, ଇତିହାସ, ଦର୍ଶନ, ଓ ବିଜ୍ଞାନରେ ମଧ୍ୟ ନାରୀମାନେ ସମର୍ଥ ଭାବେ ରଚନାଶୀଳ ହେବା ଉଚିତ୍। ପୁରୁଷ ସହ ସମସ୍ପର୍ଦ୍ଧୀ ଭାବରେ ସକଳ ସଂରଚନା କ୍ଷେତ୍ରରେ ନାରୀ ଆଗେଇଲେ ହିଁ ନୂତନ କ୍ରାନ୍ତି

ଆସିବ । ସେ ବିଶେଷ ଗୁରୁତ୍ୱ ଦେଇ କହିଲେ ଯେ, ଖୁବ୍ ଅଳ୍ପ ସଂଖ୍ୟକ ନାରୀ ଆତ୍ମଜୀବନୀ ଲେଖିଛନ୍ତି ଏହି ଦିଗରେ ସେମାନେ ଲକ୍ଷ୍ୟ ଦେଇନାହାନ୍ତି କି ?''

ଅଧିବେଶନ ବାହାରେ ଆଳାପ ଆଲୋଚନା ପ୍ରସଙ୍ଗରେ ମୁଁ କହିଲି ଯେ, ''ମୁ ସ୍ମୃତିଲିପି ଲେଖୁଛି, ସେଗୁଡ଼ିକ ପ୍ରକାଶ ପାଉଛି । ସେ ଖୁବ୍ ଆନନ୍ଦିତ ହୋଇ ପଚାରିଲେ ବହି ବାହାରିଲାଣି କି ?'' ମତେ ବହୁତ ଭଲ ଲାଗିଲା । ଆଜି ସିନା ଲେଖା ସରିନି, କାଲି ତ ବହି ବାହାରିବ । ମୁଁ ଅବଶ୍ୟ ଅଳସୋଈ ଓ ମନୋଈ । (ଅଳସୁଆ ଓ ମନୁଆର ସ୍ତ୍ରୀଲିଙ୍ଗ ଏହିପରି ହେବ କି ?) ନ ହେଲେ ବହି ବାହାରିସାରନ୍ତାଣି ।

ମୋର ନିଜ ଅଧିବେଶନ ସମ୍ପର୍କରେ ଦି ଧାଡ଼ି ଲେଖିବାକୁ ଗଲାବେଳେ, ମତେ ଭଲ ଲାଗିଥିବା ଲେଖିକା ମଲ୍ଲିକା ଅମରଶେଖରଙ୍କ ପ୍ରବନ୍ଧ ସଂପର୍କରେ କିଛି କହିବି । ଏହି ଆଲୋଚନା ଚକ୍ରରେ କବି ଲେଖିକା, ସମ୍ପାଦିକା, ପ୍ରାବନ୍ଧିକା, ଅଧ୍ୟାପିକା ଓ ଡକ୍ଟର ସୁମନ୍ୟୁ ଶତପଥୀ ତଥା ଡକ୍ଟର ସଚ୍ଚିଦାନନ୍ଦ ମହାନ୍ତି, ଓଡ଼ିଶାର ଆଲୋଚକ ଭାବେ ଯୋଗଦେଇଥିଲେ । ଫେମିନିଜମ୍ ସଂପର୍କରେ ମଧ୍ୟ ଏହି ଅଧିବେଶନମାନଙ୍କ ମଧ୍ୟରୁ ଗୋଟିଏ ଦୁଇଟିରେ ଆଲୋଚନା ହୋଇଥିଲା । କିନ୍ତୁ ଯଥାର୍ଥରେ ପାଶ୍ଚାତ୍ୟ ବାମାବାଦ ଓ ଭାରତୀୟ ବାମାବାଦ ମଧ୍ୟରେ ଯେ ମୌଳିକ ପାର୍ଥକ୍ୟ ରହିଛି, ଏହା ଆଲୋଚିତ ହେଲା । ପାଶ୍ଚାତ୍ୟ ଫେମିନିଷ୍ଟମାନଙ୍କ ଧାରଣା ମଧ୍ୟରେ ମୀରାଙ୍କ ସହ ରାଇଦାସଙ୍କ ସଂପର୍କ କିମ୍ବା ମହାଦେବୀ ଆକ୍କା ବା ସୁଗତା କୁମାରୀଙ୍କ 'ଦେବକୀର ସ୍ୱପ୍ନ'ର ଅନ୍ତର୍ଗତ ମେଳ ରହିପାରିବ ନାହିଁ । ଭାରତୀୟ ଫେମିନିଷ୍ଟମାନେ ଉଗ୍ରନୁହନ୍ତି । ସେମାନଙ୍କର ପ୍ରତିବାଦ ଅଛି ମାତ୍ର ଅଗ୍ନିଗର୍ଭା ବିପ୍ଳବ ନାହିଁ । ତାଙ୍କର ବାମ ଚେତନା ସର୍ବାଦୌ କଲ୍ୟାଣମୂଳକ ।

ମଲ୍ଲିକା ଅମର ଶେଖ, ମୁଁ ,ଅନାମିକା, ସାବିତ୍ରୀ ରାଜୀବନ୍ ସୁଚେତା ଓ ବନୀତା ଦ୍ୱିତୀୟ ଦିନର ଷଷ୍ଠ ଅଧିବେଶନରେ କବିତା ପାଠ କରିଥିଲୁ । ନିଜ ସୃଜନ ଶୀଳତା ସଂପର୍କରେ ମହାରାଷ୍ଟ୍ରର ମଲ୍ଲିକା କହିଲେ-''ମାନବ ଜୀବନର କାନ୍‌ଭାସ ନିସର୍ଗ ଠାରୁ, ଆକାଶ ଠାରୁ ବି ବିଶାଳ । କିନ୍ତୁ ମୋର ଅସ୍ତିତ୍ୱର ତୀବ୍ର ଅନୁଭବ ହେଉଛି ମାନବ ଜାତିର ପୀଡ଼ା- ଏବଂ ଏହା ହିଁ ସାହିତ୍ୟର ପ୍ରାଣ ବୋଲି ମୁଁ ବିଶ୍ୱାସ କରୁଛି । ଚାହିଁଲେ କେହି ପଛୁ, ବା ବାଲିଉପରେ ଲେଖାରହୁ 'ଲିଭିଯାଉ' ଶବ୍ଦରେ ନିଜକୁ ପ୍ରକାଶ କରି ପକାଇବା ମୋ ପାଇଁ ଅନିବାର୍ଯ୍ୟ । ଏହି ପ୍ରକାଶିତ ଶବ୍ଦ ମୋତେ ବଞ୍ଚିବାର ଅନୁଭବ ଦେଉଛି । ମୋର ବଞ୍ଚିରହିବାକୁ ଅର୍ଥାନ୍ୱିତ କରୁଛି ।'' ଏହାପରେ ମୋର ଦୁଇ ତିନିଗୋଟି ଧାଡ଼ି ବକ୍ତବ୍ୟ ସହ ଚାରୋଟି କବିତା ମୁଁ ଆବୃତ୍ତି କଲି । ''ପିଲାଦିନେ ସରୁଧାନ କେଣ୍ଡା ପରି ଝିଅଟିକୁ ଦେଖି ବାଉଁଶଗଜା ପରି ବଢ଼ି ଆସୁଥିବା କିଶୋରଟିକୁ କିମ୍ବା କଦଳୀ ବଣରେ ଉଡୁଥିବା ପ୍ରଜାପତିକୁ ଦେଖି ମୁଁ ଆତ୍ମହରା ହୋଇଯାଏ । ଚାରିପାଖର ଅଭାବ ଅନଟନ ଲକ୍ଷ୍ୟକଲେ ମୋ ମୁହଁ ଶୁଖିଯାଏ । ସବୁ ସମୟରେ ମୋ ଭିତରେ କବିତା କିନ୍ତୁ ମହୁମାଛି ପରି ଗୁଣୁଗୁଣୋଉ ଥାଏ ।'' ଏହାପରେ ମୋର ଦୁଇଗୋଟି କବିତାର ଇଂରାଜୀ ଅନୁବାଦ

ପାଠକଲି । 'ଠିକ୍ ମାଟି ପରି', 'ଇତିହାସ ନ ହେଉ' । ଯେ ଦୁଇ ଗୋଟି କବିତା ଯଥାକ୍ରମେ କବି ଜୟନ୍ତ ମହାପାତ୍ର ଓ ରମାକାନ୍ତ ରଥଙ୍କ ଦ୍ୱାରା ଅନୂଦିତ । ପ୍ରଥମେ ଓଡ଼ିଆରେ ଆବୃତ୍ତି କଲି, ପରେ ଇଂରାଜୀ ଓ ହିନ୍ଦୀ ଅନୁବାଦରେ ଚାରୋଟି କବିତା ପାଠକଲି । ତଥାପି ମୋ ପାଇଁ ନିର୍ଦ୍ଦିଷ୍ଟ ୧୫ ମିନିଟରୁ ଆହୁରି ୩ ମିନିଟ୍ ବଳିଲା । ଏହି ସମୟରେ ମୋ ଆହ୍ୱାନ କ୍ରମେ, ମୋର ଅନୁବାଦକ ଡକ୍ଟର ରାଜେନ୍ଦ୍ର ପସାଦ ମିଶ୍ର ମୋର 'ଅଧା ଅଧା ନକ୍ଷତ୍ର' କବିତାର ହିନ୍ଦୀ ରୂପାନ୍ତର ପାଠ କଲେ । ଏହା ପୂର୍ବରୁ 'ପରୀ ସଙ୍ଗେ ଦିନେ' ଓ 'ମୋ ଝିଅ' କବିତା ଦୁଇଟି ଆବୃତ୍ତି କରିଥିଲି । ମୋର କବିତାଗୁଡ଼ିକ ଶ୍ରୋତୃମଣ୍ଡଳୀ ଖୁବ୍ ପସନ୍ଦ କରିଥିଲେ ଓ ଅଧିବେଶନ ପରେ ମୋତେ ଅଭିନନ୍ଦନ ଜଣାଇଲେ । ଆମ ଓଡ଼ିଶାର ସମସ୍ତ ଅଂଶ ଗ୍ରହଣକାରୀଙ୍କ କାର୍ଯ୍ୟକ୍ରମ ପସନ୍ଦ ଯୋଗ୍ୟ ହୋଇଥିଲା ।

ଏହି ଆଲୋଚନା ଚକ୍ରରେ କାଶ୍ମୀର ଠାରୁ କେରଳ, ଆସାମ, ରାଜସ୍ଥାନ, ଗୋଆ ପର୍ଯ୍ୟନ୍ତ ସମସ୍ତ ଭାଷା ଓ ସାହିତ୍ୟର କବି ଲେଖିକା ଗଣ ନିମନ୍ତ୍ରିତ ହୋଇଥିଲେ । ଆସାମର ନିରୁପମା ବଡ଼ ଗୋହାଇଁ, କର୍ଣ୍ଣାଟକର ସାରା ଜୋସେଫ୍, ନବନୀତାଦି, ମଲ୍ଲିକା, କେରଳର ସାବିତ୍ରୀ ରାଜୀବନ୍ଙ୍କ ସହ ମୋର ବ୍ୟକ୍ତିଗତ ପରିଚୟ ଆଳାପ ହୋଇଥିଲା । ହୁଏତ ସିଟି ଇଣ୍ଟରନେସନାଲ ହୋଟେଲରେ ରହିଥିଲେ ଅଧିକ ଯୋଗାଯୋଗ ସମ୍ଭବ ହୋଇଥାନ୍ତା । ତଥାପି, ଏହି ତିନିଦିନର ଭାବବିନିମୟ ସଫଳ ହେବାର ପ୍ରତୀତି ସହ ସ୍ମରଣୀୟ ହୋଇ ରହିବ ନିଶ୍ଚୟ ।



# ମଞ୍ଚଉପରୁ...

ଆଜି ଲେଖିକା ସଂସଦର ୨ୟ ବାର୍ଷିକ ଅଧିବେଶନ। ୧୯୯୩ ଶେଷଭାଗକୁ ସଂଗଠିତ ହୋଇଛି ଏହି ସଂସଦ। ଏହାର ମଞ୍ଚରୁ ମୁଖ୍ୟ ଅତିଥିର ଭୂମିକା ନିର୍ବାହ କଲାବେଳକୁ ମୋ ଦୃଷ୍ଟି ଲେଉଟି ଯାଉଛି ସୁଦୂର ଅତୀତକୁ, ପ୍ରାୟ ୬୦ ବର୍ଷ ତଳକୁ। ଦିଶିଯାଉଛନ୍ତି କୁନ୍ତଳାକୁମାରୀ, ଫୁଲଭର୍ତ୍ତି ଗଙ୍ଗଶିଉଳି ଗଛର ଅନୂଢ଼ା ଶୋଭା ଓ ଜହ୍ନରାତି, ଛୁଇଁଯାଉଛି ବାସ୍ନାଭିଜା ପବନ। ଦିଶୁଛନ୍ତି କ୍ରମାନ୍ୱୟରେ ସରଳାଦେବୀ, ନିର୍ମଳାଦେବୀ, ବିଦ୍ୟୁତ୍ ପ୍ରଭା, ସୁନ୍ଦରମଣି ପଟ୍ଟନାୟକ ଇତ୍ୟାଦି କବିଗଣ। ଏହି ବାଣୀ ସାଧିକାଗଣ ବହୁଜଞ୍ଜାଳ ଓ ପ୍ରତିବନ୍ଧକ ସତ୍ତ୍ୱେ ସୃଜନପଥରେ ଅଗ୍ରସର ହୋଇଛନ୍ତି। କିଏ କେତେ ଦୂର ଅଗ୍ରସର ହୋଇଛି ସେ ବିଚାର ଏଠାରେ ମୁଖ୍ୟ ନୁହେଁ। କାରଣ ଶିକ୍ଷା, ପରିବେଶ ଓ ଅନୁପ୍ରେରଣା ଅନୁସାରେ ସେମାନଙ୍କ ସୃଷ୍ଟିଜଗତ ସଂଗଠିତ ହୋଇଛି।

କେବଳ ସେତିକି ନୁହେଁ, ମୁଁ ପୁଣି ଆଜି ଫେରି ଯାଉଛି ଆଜିକୁ ୩୨ ବର୍ଷ ତଳର ସମୟକୁ-ମୋର ପ୍ରାକ୍ କଲେଜ କାଳକୁ। ସେତେବେଳକୁ ମୋର କବିତା ଓଡ଼ିଶାର ସମସ୍ତ ପତ୍ରିକା ଓ ସମ୍ବାଦପତ୍ରର ସାହିତ୍ୟପୃଷ୍ଠା ମଣ୍ଡନ କରୁଥିଲା। ମୁଁ ଓ ମୋର ସମମର୍ମୀ ବାନ୍ଧବୀ କଥା ହେଉଥିଲୁ ଯେ, କବିତା ଲେଖିବାରୁ କେତେକ ଆମକୁ ସଂଶୟାଚ୍ଛନ୍ନ ଦୃଷ୍ଟିରେ ଦେଖୁଛନ୍ତି। ମୋର ସହପାଠିନୀ ଓ ସମସାମୟିକ ଲେଖିକାମାନେ କ୍ରମଶଃ ବିବାହ କରି ଲେଖାଲେଖି ଛାଡ଼ି ଦେଲେ। ମୋର ସାଂସାରିକ ଜଞ୍ଜାଳ ମଧ ମୋତେ କବିତାଠାରୁ କିଛିଦିନ ଦୂରରେ ରଖିଲା। କବିତାଠାରୁ ଦୂରେଇ ରହିଲାବେଳେ କଲିଜାରୁ ଖଣ୍ଡେ କିଏ କାଟିନେଲା ପରି ଛଟପଟ ହେଉଥିଲି, ଯଦିଓ କବିତା ରଚନା ଦିଗରେ ଧ୍ୟାନ ଦେବାକୁ ସମୟ ଓ ସୁଯୋଗ ପାଉ ନଥିଲି।

ଆଜି ପରିସ୍ଥିତି ବଦଳିଛି। ଏବେ, ଗଲାଜନ୍ମାଷ୍ଟମୀ ଦିନ ଝିଅଟିଏ ତାର କବିତା ପୁସ୍ତକ ଉନ୍ମୋଚିତ ହେବ ବୋଲି ମତେ ନିମନ୍ତ୍ରଣ କରିବାକୁ ଯାଇଥିଲା। ତା'ବାପାଥିଲେ ସାଥୀରେ, କବିତା ପୁସ୍ତକଟି ମୋତେ ଦେଇଥିଲେ। ଅବଶ୍ୟ ମୋର ସମସ୍ତ ଶୁଭେଚ୍ଛା ଥିବା ସତ୍ତ୍ୱେ ଅନିବାର୍ଯ୍ୟ କାରଣବଶତଃ ମୁଁ ସେହି ଉନ୍ମୋଚନ ଉତ୍ସବରେ ଯୋଗଦେଇ ପାରିଲି ନାହିଁ। କିନ୍ତୁ, ଭୁବନେଶ୍ୱରର ଯଶସ୍ୱୀ କବିଗଣ ସେଠାରେ ଉପସ୍ଥିତ ଥିବାର ଜାଣିଲି। ଖୁବ୍

ଆଶାଜନକ ମନେ ହେଲା । ଯା'ହଉ, ଝିଅଟିଏ ଲେଖୁଥିବାର ପରିବାରର ଲୋକ ସଚେତନ- ତାକୁ ଉତ୍ସାହ ଦେବା ନିଜର କର୍ତ୍ତବ୍ୟ ବୋଲି ବୁଝୁଛନ୍ତି । ପୁଣି ଅଳ୍ପଦିନ ତଳେ 'ସୁଚରିତା'ର ବାର୍ଷିକୋତ୍ସବରେ 'ସୁଚେତା' ଦେଖାହେଲେ । କହିଲେ, ''ମୁଁ ପୁରୀ ଫେରି ଯାଉଛି ।'' ''ରାତି ୮ଟାରୁ ବେଶି ହେଲାଣି, କେମିତି ଫେରିବ ?'' କହିଲେ ''ମୋ ମାଆ ଆସିଛନ୍ତି, ସାଙ୍ଗ ହୋଇ ଫେରିବୁ ।'' ଭଲ ଲାଗିଲା ଏଇଥିପାଇଁ ଯେ, ଦିନଯାକର କାମ ମାରା କରି ମାଆ ଝିଅ ସହିତ ସାହିତ୍ୟସଭାକୁ ଆସିଛନ୍ତି । ସମୟ ଓ ଦୃଷ୍ଟିକୋଣ ପ୍ରକୃତରେ ବଦଳିଛି ।

ଝିଅଟିଏ ସାହିତ୍ୟ ରଚନା କଲେ, କବିତା ଲେଖିଲେ ଅନ୍ଧାରଘରେ ଚିତ୍ର ଆଙ୍କିଲା ପରି, ନିଜ ସୃଷ୍ଟିକୁ ନିଜେ ବି ନିରୀକ୍ଷଣ କରିପାରେନା । ଯେହେତୁ ଆଲୋଚନା, ପସନ୍ଦ, ଅପସନ୍ଦ, ଉତ୍ସାହ ପାଇବା ତା'ପାଇଁ ସହଜ ହୁଏନା । ନାରୀମାନଙ୍କର ଏ ଦିଗରେ ଅସୁବିଧା ରହିଥାଏ । କାରଣ ଅଧିକାଂଶ ନାରୀ କଳା ସାହିତ୍ୟ ଜଗତ ପ୍ରତି ବୀତସ୍ପୃହ ସଂସାର ଓ ପରିବାର ସେମାନଙ୍କ ଠାରୁ ବହୁତ କିଛି ଦାବୀ କରିଥାଏ । ସେଇ ଦାବୀ ପୂରଣରେ ଦିନଯାଏ ରାତି ଆସେ, ରାତିଯାଏ ଦିନ ଆସେ, ପୁଣି.....

ଅଥଚ କବିତା ସଂରଚନାରେ ନିଜର ତ୍ରୁଟିକୁ ନିଜେ ଅଣ୍ଡାଳି ଅଣ୍ଡାଳି ଖୋଜିନେବା କଷ୍ଟ ସାଧ ହୋଇପଡ଼େ । ଆଉ ମଧ ନିଜର ତ୍ରୁଟିକୁ ଜାଣିଲେ ବି ନିଜେ ତାକୁ ସୁଧାରିବା ସହଜ ନୁହେଁ । ସେ ତ ଏକ ଭିନ୍ନ ପ୍ରସଙ୍ଗ । ମାତ୍ର ସମମର୍ମୀ କେହି ପଢ଼ିବା, ତର୍ଜମା କରିବା ବା କିଛିଟା ପରାମର୍ଶ ଦେବା ଦ୍ୱାରା କାବ୍ୟମାନସ ଉତ୍ସାହିତ ହୁଏ । ସୃଜନଶୀଳତା କିଛିଟା ସୃଜନଦୀକ୍ଷା ପ୍ରାପ୍ତ ହେଲେ ଅନ୍ତର୍ନିହିତ ଉତ୍ସଟି ତୀବ୍ର ହେବା ସହଜ ହୁଏ । ଆମେ ସ୍ୱୀକାର କରିବାକୁ ବାଧ ଯେ ନାରୀମାନଙ୍କର ଏ ଦିଗରେ ନିଶ୍ଚିତ ଭାବରେ ସୁବିଧା ସୁଯୋଗ କ୍ଷୀଣ ।

କେତେକଙ୍କ ମନରେ ପ୍ରଶ୍ନ ଉଠିପାରେ ଯେ ଲେଖିକା ସଂସଦଟି ସ୍ୱତନ୍ତ୍ର ଭାବେ ଗଢ଼ିବାର ଆବଶ୍ୟକତା କେଉଁଠି ? ସୃଜନଶୀଳତା କ୍ଷେତ୍ରରେ ସ୍ଥାନ ସଂରକ୍ଷଣ ତ ନାହିଁ, କିଛି କୋଟା (QUOTA) ମଧ ନାହିଁ । ଏ ସଂସଦର ସଭାପତି ବରିଷ୍ଠ ଗଦ୍ୟ ଶିଳ୍ପୀ ବୀଣାପାଣି ମହାନ୍ତି ସଂସଦର ଜନ୍ମ ଉଦ୍ଦେଶ୍ୟ ଓ ତାର ଭୂମିକା ସ୍ପଷ୍ଟ କରି ଦେଇଛନ୍ତି । ଲେଖିକାମାନେ ପାଟି ଖୋଲି ମନକଥା କହିପାରନ୍ତି ନାହିଁ । ପୁଣି ବଡ଼ ପାଟିରେ କହନ୍ତି ନାହିଁ, ପଦାକୁ ଆସି କାହା ସହିତ ମିଶନ୍ତି ନାହିଁ । ଏ ସଂସଦର ଧର୍ମ -ସେମାନେ ଆମପାଖକୁ ନ ଆସିଲେ ଆମେ ତାଙ୍କ ପାଖକୁ ଯିବା । ହଁ, ଆମେ ସେମାନଙ୍କ ପାଖକୁ ଯିବା, ତାଙ୍କ ଦରଆଉଜା କବାଟରେ ଟିପା ମାରିବା, ଭିତରକୁ ପଶିବା । ଆମେ ଅର୍ଥାତ୍ କେବଳ ଲେଖିକା ନୁହଁ, ଲେଖକମାନେ ବି । ଆନ୍ତତଃ ସେମାନଙ୍କ ଉଚ୍ଚାରଣର ଅଭୀପ୍ସାକୁ ଦୃପ୍ତ ଭଙ୍ଗୀରେ ପ୍ରତିଷ୍ଠା କରିବାକୁ ଉତ୍ସାହ ଦେବା । ଜଣେ ମହାନ୍ ଲେଖକ କହିଥିଲେ ''Woman is the feminine face of Earth'' ।

ବିଶ୍ୱ ସାହିତ୍ୟ, ଭାରତୀୟ ସାହିତ୍ୟ ଓ ଓଡ଼ିଆ ସାହିତ୍ୟର ଦରବାରରେ ଅନେକ ଲେଖିକା ଆପଣାର ଅନନ୍ୟ ସୃଜନଶୀଳତା ନିମିତ୍ତ ଯଥାର୍ଥ ସମ୍ମାନର ଅଧିକାରିଣୀ ହୋଇଛନ୍ତି । କେହି କେହି କହିପାରନ୍ତି, ଲେଖିକାମାନେ ଜୀବନର ଦାର୍ଶନିକ ଦିଗପ୍ରତି ଦୃକ୍‌ପାତ ନ କରି କେବଳ ଆବେଗଗାତିଶଯ୍ୟରେ ଭାସି ଯାଆନ୍ତି । ମାତ୍ର ଏହା ଶତକଡ଼ା ଶହେ ଠିକ୍ ନୁହେଁ । ଯଦି ଲେଖିକାଙ୍କ ରଚନାରେ ପ୍ରଜ୍ଞା ଅପେକ୍ଷା ଆବେଗର ଅନୁପାତ ଅଧିକ ହୋଇଥିବ, ତେବେ ସେମାନଙ୍କ ଜୀବନ ଧାରା ଓ ପରିସ୍ଥିତି ଦ୍ୱାରା ତାହା ନିୟନ୍ତିତ ହୋଇଥିବ । ପ୍ରକୃତରେ ଉପଯୁକ୍ତ ଶିକ୍ଷା, ପ୍ରଚୁର ଅଧ୍ୟୟନ, ନିରୀକ୍ଷଣ ଓ ଆତ୍ମସମୀକ୍ଷା ତଥା ଆଳାପ ଆଲୋଚନାରେ କବିର କାବ୍ୟମାନସ ଦୀକ୍ଷିତ ହେବା ଜରୁରୀ । ଲେଖିକାମାନେ ଏ ଦିଗରେ ଯଥେଷ୍ଟ ସୁଯୋଗ ପାଆନ୍ତି ନାହିଁ । ଏହା ସତ୍ତ୍ୱେ ଆନ୍ନା ଆଖମାତୋଭା, ନେଲିସାକ୍‌ସ, ପର୍ଲବକ୍, ଜିୟୋର୍ଣ୍ଣା, ମହାଦେବୀ ବର୍ମା, ଅମୃତା ପ୍ରୀତମ୍, ଆଶାପୂର୍ଣ୍ଣା, ମୈତ୍ରେୟୀ ଦେବୀ, ମହେଶ୍ୱେତା ଦେବୀ ଓଡ଼ିଶାର ବସନ୍ତ କୁମାରୀ, ବ୍ରହ୍ମୋତ୍ରୀ, ବୀଣାପାଣି କମ୍ ମହାର୍ଘ କୃତି ସୃଷ୍ଟି କରିନାହାନ୍ତି !

ଆଜିର ଉଦ୍‌ଘାଟନ ଉତ୍ସବରେ ପ୍ରଖ୍ୟାତ କବି ରମାକାନ୍ତ ରଥ ନାରୀମାନଙ୍କ ସ୍ୱଭାବକୁ ଚିହ୍ନାଇବାକୁ ଯାଇ କହିଲେ ''ମହିଳାମାନେ ସମସ୍ତଙ୍କ ଦୁଃଖ ଶୁଣନ୍ତି- ନିଜ ଦୁଃଖ କାହାକୁ କହନ୍ତି ନାହିଁ ।'' ହୁଏତ ସେୟା ଠିକ୍ । ତେବେ, ମହିଳାମାନେ ଦୁଃଖ ସହନ୍ତି ବୋଲି ସହୁଛନ୍ତି-ଏହା ଜାଣିପାରନ୍ତି ନାଁ ନାହିଁ ? ଜାଣିପାରିଲେ ଯେ ଦୁଃଖରୁ ମୁକୁଳିଯାଇ ପାରିବେ, ତା'ମଧ ସମ୍ଭବ ନୁହେଁ । ମାତ୍ର ଦୁଃଖକୁ ଜାଣି, ବୁଝି, ଚାଖି, ସହିବାକୁ ପ୍ରସ୍ତୁତ ହେବା ବଡ଼ କଥା । ଜଣେ ଲେଖିକା ଏହା କରିଥାଏ । ପ୍ରସ୍ତୁତ ହୋଇ ଯନ୍ତ୍ରଣା ସହେ ଓ ସେହି ଯନ୍ତ୍ରଣାରେ ଆତ୍ମାକୁ ଉଦ୍‌ବୁଦ୍ଧ ଓ ଅଭିଷିକ୍ତ କରାଏ ।

ଲେଖିକାଗଣ ଅଧ୍ୟୟନ ଓ ଆଲୋଚନା ପାଇଁ ଅବକାଶ ରଖିଲେ, ନିରପେକ୍ଷ ଭାବେ ଉପଲବ୍ଧିକୁ ବିଶ୍ଳେଷଣ କଲେ, ଅଭିବ୍ୟକ୍ତିକୁ ଶାଳୀନତା ପ୍ରଦାନ କଲେ, ନିଶ୍ଚୟ ଅନ୍ତର୍ଜଗତରୁ, ମଞ୍ଜାରୁ ଓଁ କାର ଧ୍ୱନି ଛୁଟି ଆସିବ ଓ ଲେଖିକା ହେବ ଯୁଗାନ୍ତକାରୀ ସ୍ରଷ୍ଟା ।

ଯଦି କେବେ କେହି 'ଆବେଗ ପ୍ରବଣତାର ଆତିଶଯ୍ୟ'ରେ ନାରୀ ସୃଷ୍ଟିକୁ ଦୋଷ ଦୁଷ୍ଟ କରେ, ତେବେ ତା'ସପକ୍ଷରେ ମୋର ଏତିକି କହିବା କଥା ଯେ, ବୁଦ୍ଧିଦୀପ୍ତ ପ୍ରଜ୍ଞାର ତୀକ୍ଷ୍ଣତାଠାରୁ ଗଭୀର ନିବିଡ଼ ଆବେଗର ନିଷ୍କପଟ ଉଚ୍ଚାରଣ ମଧ୍ୟରେ ଯଦି କେବେ ତୁଳନା କରାଯାଏ ଅଧିକାଂଶଠାରେ ଶେଷୋକ୍ତ ରଚନା ବରଣୀୟ ମନେ ହୋଇଥାଏ ।



# ସୃଜନର ଆତ୍ମା

ଶବ୍ଦ ନିର୍ମିତ ମହାସୌଧର ମଞ୍ଜି ଭିତରେ ସ୍ପନ୍ଦିତ ହେଉଥାଏ ଆତ୍ମାଟିଏ । ଇଟା କଂକ୍ରିଟ୍‌ରେ ସୌଧତଳେ ଆତ୍ମା ଛପିଥାଏ କି ନାଁ ଏହା ହୁଏତ ସ୍ଥପତିମାନେ କହିପାରିବେ । ମାତ୍ର ସାହିତ୍ୟ ସୌଧର ଆତ୍ମା ଅଦୃଶ୍ୟ, ଅସ୍ପର୍ଶ୍ୟ ହେଲେ ବି ଅବବୋଧରେ ଧରାପଡ଼ିଯାଏ । ସେହି ଆତ୍ମା ସିଧାସଳଖ ପାଠକର ଆତ୍ମାକୁ ଛୁଇଁପକାଏ- ପାଠକ ଅଭିଭୂତ ହୁଏ, ଆତ୍ମବିସ୍ମୃତ ହୁଏ । ତାର ଉପଲବ୍ଧି ଶାଣିତ ଓ ସକ୍ରିୟ ହୋଇଉଠେ । ଏହି ଆତ୍ମାକୁ ସାହିତ୍ୟସ୍ରଷ୍ଟା ଇଚ୍ଛାକରି କୌଣସି ନୀତିନିୟମ ବା ସଂରଚନା ପ୍ରକ୍ରିୟା ସାହାଯ୍ୟରେ ପ୍ରତିଷ୍ଠା କରିପାରେ ନାହିଁ । ଆତ୍ମା ଆପେ ଆପେ ସୃଜନ କର୍ମ ମଧ୍ୟରେ ସଂସ୍ଥିତ ହୋଇଯାଏ । କବି ଯେବେ ଭାବେ ମୋର ଏହି କବିତାଟି ମୁଁ ଖୁବ୍ ଜୀବନ୍ତ ଓ ସ୍ପନ୍ଦିତ କରି ତୋଳିବି, ତାହା ହୁଏତ ହୋଇପାରେ ନାହିଁ । ଏହି ଆତ୍ମା ସର୍ବଦା ସ୍ରଷ୍ଟାର ଅକ୍ତିଆର ବାହାରେ ରହିଥାଏ ଓ ପ୍ରଖ୍ୟାତ ଗଦ୍ୟଶିଳ୍ପୀ ସ୍ୱର୍ଗତ ଗୋପିନାଥ ମହାନ୍ତି 'କଳାଶକ୍ତି' ଭାଷାର ସୁପ୍ରଯୁକ୍ତ ଉଚ୍ଚାରଣ ମଧ୍ୟରେ, ଏହା ସହିତ କିଛି ରହସ୍ୟମୟ କାରଣ ହେତୁ ଏହି ଆତ୍ମାଟି ସୃଷ୍ଟି ମଧ୍ୟରେ ସଂସ୍ଥାପିତ ହୋଇଯାଏ ।

ରାଜଧାନୀର ମହା ମହା ସାହିତ୍ୟରଥୀଙ୍କ ଗହଣରେ ସେଦିନ ଆଲୋଚନା ଚାଲିଥାଏ । ଉପନ୍ୟାସ କିଭଳି ହେବା ଉଚିତ, କ'ଣ କ'ଣ ରହିଲେ ଭଲ ଉପନ୍ୟାସଟିଏ ହେବ, ବାଟ ତିଆରି କରୁଥାନ୍ତି ସେମାନେ ମୁଁ କିନ୍ତୁ ଭାବୁଥାଏ ସତେରେ କ'ଣ ଥିଲେ ଭଲ ଉପନ୍ୟାସଟିଏ ହେବ ? କିଏ ଭଲା ଏଭଳି ଉପାୟଟିଏ ସଜାଡ଼ି ରଖିଛି, କହିଦେବ, ଏୟା ହେଲେ ଉପନ୍ୟାସଟି ଭଲ ହବ ! ଭଲ ଅର୍ଥ କେବଳ ସୁଖପାଠ୍ୟ ବା ମନୋରଞ୍ଜକ ନୁହେଁ, ଅର୍ଥମୟ ଓ କଳାତ୍ମକ ହେବ, ପାଠକକୁ ଅଭିଭୂତ କରିପାରିବ । ସତଘଟଣାଟିକୁ ବିଷୟବସ୍ତୁ ରୂପେ ନେଲେ ବି ଉପନ୍ୟାସଟି ସାର୍ଥକ ହେଉନାହିଁ କାହିଁକି ? ଅବଶ୍ୟ, କଳାକୃତିର ସାର୍ଥକତା ବକ୍ତବ୍ୟର ସତ ମିଛ ଉପରେ ଆଦୌ ନିର୍ଭରଶୀଳ ନୁହେଁ । ମିଛ ତ ସବୁକାଳେ ମାୟାବୀ ପୁଣି ଅଧିକ ଆକର୍ଷଣୀୟ । କିନ୍ତୁ ଏଠାରେ ବି 'ମିଛ' ସାଧାରଣ ମିଛ ନୁହେଁ, ମିଛ ପୁଣି ସତଠାରୁ ଅଧିକ ସତ । କଳାଗତ ସତ୍ୟର ସ୍ୱରୂପ ଏହା ହିଁ । ଘଟଣାଟିଏ ସତ ହେଲେ ବି ତାହାକୁ ଉପସ୍ଥାପନ କରିବାର ଯେଉଁ ଲେଖକୀୟ ଦକ୍ଷତା, ତାହାହିଁ ଆତ୍ମାକୁ ପ୍ରତିଷ୍ଠା କରିବାରେ ସାହାଯ୍ୟ କରିଥାଏ ।

ମନେ କରନ୍ତୁ, ଜଣେ ଆଲୋଚକ କହିଲେ ଉପନ୍ୟାସରେ ଆକସ୍ମିକତା ଓ ନାଟକୀୟତା ରହିଲେ, ତାହା କୃତ୍ରିମ ମନେ ହେବ। ସ୍ୱାଭାବିକତା ବ୍ୟାହତ ହେବ, ତେଣୁ ଟାଣି ଓଟାରି ତିଆରି କଲା ଭଳି ଲାଗିବ। ହଁ, କେତେକ ହିନ୍ଦୀ ସିନେମା ପରି ଲାଗେ, ସେହି ଉପନ୍ୟାସକୁ ସୁଧୀପାଠକ ଛୁଏଁ ନାହିଁ। ଏକଥା ସତ। ଜୀବନ କମ୍ ଆକସ୍ମିକତାରେ ଭରପୂର ନୁହେଁ! କମ୍ ନାଟକୀୟ ନୁହେଁ ମଧ। ଏହି ନାଟକୀୟତା ଓ ଆକସ୍ମିକତାକୁ ସାହିତ୍ୟ ସୃଷ୍ଟିରେ ଜୀବନ୍ତ କରିବା ଲେଖକର ବାହାଦୂରୀ। ମଣିଷ ଜୀବନରେ, ସାମାଜିକ ସ୍ତରରେ, ଭାବଗତ ସ୍ତରରେ ନିତିପ୍ରତି କେତେ ଛୋଟ ବଡ଼ ଆକସ୍ମିକତା ଆସୁଛି- ମଣିଷ କେତେ ନାଟକୀୟ ପରିସ୍ଥିତି ଓ ଚରିତ୍ରର ସାମ୍ନା କରୁଛି। ତେଣୁ ସେ ଗୁଡ଼ିକୁ ଯଦି ସେ ସାହିତ୍ୟରେ ଅଭିବ୍ୟକ୍ତ କରେ, ତେବେ ତାହା ଅସ୍ୱାଭାବିକ ହୋଇଯିବ କାହିଁକି ? ଘଟଣା ଯେତେବେଳେ ସାହିତ୍ୟର ପୋଷାକ ପିନ୍ଧେ, ସୃଜନ-ସିଂହାସନରେ ବସେ, ତା'ର ରୂପରେଖ ବଦଳିଯାଏ। ତାର ଅବସ୍ଥିତି ଓ ତାତ୍ପର୍ଯ୍ୟ ସ୍ୱତନ୍ତ୍ର ହୋଇଯାଏ। ଲେଖକ ନିଜର ସୃଜନଶୀଳ ଶାଣିତତା, ନୂତନତାକୁ ସକ୍ରିୟ କରେ। ମାତ୍ର ନିଜେ ଜାଣିପାରେନା ସୃଷ୍ଟିଟି ଜୀବନ୍ତ ହେଲା କି ନାହିଁ। କାରଣ ସୃଜନଧର୍ମ ଏକ ରହସ୍ୟ। ସେଥିପାଇଁ, ସେହି ପ୍ରାଣଶକ୍ତିର ଅଭାବରେ ସୃଜନକଳାରେ ଆକସ୍ମିକତା ମିଥ୍ୟା ପରି ଲାଗେ, ନାଟକୀୟତା ଅବାସ୍ତବ ରୂପେ ପ୍ରତୀତ ହୁଏ। ଅତିରଂଜିତ ହୋଇ ବିରକ୍ତି ଆଣେ। ତେଣୁ ଆକସ୍ମିକତା ଓ ନାଟକୀୟତା ଯଥାର୍ଥ ଭାବେ ଚିତ୍ରିତ ହେଲେ ରଚନାଟି ପ୍ରାଣବନ୍ତ ହୁଏ। ତେବେ କ'ଣ ସେହି ଶକ୍ତି, ଯାହା ସତ୍ୟ ଓ କଳ୍ପନା ନିର୍ବିଶେଷରେ ଘଟଣା ମଧରେ ଉପସ୍ଥିତ ରହି ସାହିତ୍ୟକୁ ସାର୍ଥକତା ଆଣିଦିଏ ? ଆତ୍ମାର ଉଚ୍ଚାରଣକୁ ସାକାର କରି ଥୁଏ ?

ସାହିତ୍ୟ ଆସର ମଝିରେ, ବହୁ ସାହିତ୍ୟରଥୀଙ୍କ ଆଲୋଚନା ଭିତରେ, ଏହି ସୃଜନ-ଆତ୍ମାଟି ତଥାପି ଅଦୃଶ୍ୟ ଭାବରେ ରହି, ତା'ର ରହସ୍ୟମୟତା, ଅଣଆୟତ୍ତ ସ୍ଥିତିନେଇ ଲୁଚୁକାଳି ଖେଳେ। କିଏ କହିବ, କାହିଁକି ଏପରି ହୁଏ ? ଆକସ୍ମିକତା ଥାଇ ସାହିତ୍ୟ ଶ୍ଳାଘ୍ୟ, ସୁନ୍ଦର ହୁଏ, ନାଟକୀୟତା ଥାଇ ହୁଏ ମର୍ଯ୍ୟାଦାବନ୍ତ, ଅଥଚ ସକଳ ସ୍ୱାଭାବିକତା ମଧରେ ସାହିତ୍ୟ ହୁଏ ନିଷ୍ପ୍ରାଣ, ଅପାଂକ୍ତେୟ ? ତେଣୁ ମୂଳକଥା ହେଲା, ସତ୍ୟ, କଳ୍ପନା, ଆକସ୍ମିକତା, ନାଟକୀୟତା ଏହି ସକଳ ଘଟଣା ଆପେକ୍ଷିକ, ପୁଣି ପରସ୍ପର ସଂଯୁକ୍ତ। ବାସ୍ତବ ସତ୍ୟ ଓ କଳ୍ପନା ପରସ୍ପର ସାହଚର୍ଯ୍ୟରେ ପରସ୍ପରକୁ ବରଣୀୟ କରିଥାନ୍ତି। କ'ଣ ସେହି ପ୍ରାଣବତ୍ତା ଯାହା ଥରେ ପ୍ରତିଷ୍ଠା ହୋଇ ଗଲେ ସାହିତ୍ୟ ହୁଏ ଜୀବନ୍ତ, ଆକର୍ଷଣୀୟ, ଚିରକାଳୀନ। ସେହି ଶକ୍ତି ପ୍ରତିଷ୍ଠିତ ନହେଲେ ସାହିତ୍ୟ ଶବ ପାଲଟିଯାଏ- ତା'ର ଜଡ଼ ଶରୀରକୁ ଛୁଇଁ, କାକର-ଶୀତଳତାରେ ସୁଧୀ ପାଠକ ମ୍ରିୟମାଣ ହୋଇଯାଏ। ଥାଏ, ବୁଝିହେଉଥାଏ ଅଥଚ, ଦିଶୁ ନଥାଏ, ହାତରେ ଧରି ହେଉ ନଥାଏ, ତାହା ହିଁ ସୃଜନର ଆତ୍ମା।

❑❑❑

# ଏକବିଂଶ ଶତାବ୍ଦୀର ସାହିତ୍ୟ

ବିଂଶ ଶତାବ୍ଦୀ ଅପସରି ଯିବା ପାଇଁ ପ୍ରସ୍ତୁତ । ଏକବିଂଶ ଶତାବ୍ଦୀ ଆଗତ ପ୍ରାୟ । ୨୦୦୦ ମସିହା ଡିସେମ୍ବର ୩୧ ତାରିଖ ଦିନଟି ବିଂଶ ଶତକର ଶେଷ ଦିନ । ତା'ପର ଦିନଠାରୁ ଏକବିଂଶ ଶତକର ଆରମ୍ଭ । ସମୟର ବିଭାଜନ ଏହିପରି ହୋଇଥାଏ । ମାତ୍ର ଗୋଟିଏ ଦେଶ ବା ଜାତିର ବା ସମଗ୍ର ବିଶ୍ୱର କଳା, ସଂସ୍କୃତି ଓ ସାହିତ୍ୟକୁ ଗୋଟିଏ ଦିନର ନିର୍ଦ୍ଦିଷ୍ଟ ସୀମାରେଖା ଦ୍ୱାରା ବିଭାଜନ କରି ହୁଏ ନାହିଁ । ବିଂଶ ଶତକରୁ ଏକବିଂଶ ଶତକ ଜନ୍ମନେବ ନିଶ୍ଚୟ । ଏହି ଶତକରେ ସାହିତ୍ୟର ସ୍ୱରୂପ କ'ଣ ହେବ, ତାହା ପୂର୍ଣ୍ଣତଃ ନିର୍ଦ୍ଦିଷ୍ଟ କରି କେହି ଭବିଷ୍ୟବାଣୀ କରି ପାରିବ ନାହିଁ । କିନ୍ତୁ ବିଂଶ ଶତକରେ ଯାହା ଆଭାସିତ ହେଉଛି, ଏକବିଂଶ ଶତକରେ ତାହା କ୍ରମଶଃ ସ୍ପଷ୍ଟ ହୋଇ ପ୍ରତିଷ୍ଠିତ ହେବାର ଆଶା ପୋଷଣ କରାଯାଇ ପାରିବ । ବିଂଶ ଶତକର ସାଧନାର ଫଳଶ୍ରୁତି ଏକବିଂଶ ଶତକରେ ହେବ । ବିଂଶ ଶତକରେ ଯେଉଁ ବୀଜଟି ରୋପିତ ହେଲା, ଏକବିଂଶ ଶତକରେ ତାହା ଫଳଦାନ କରିବ । ବିଂଶ ଶତକରେ ସାହିତ୍ୟର ସ୍ୱରୂପ ଓ ମୂଲ୍ୟ ଯାହା ଅଛି, ଚଳିତ ଶତକର ଭବିଷ୍ୟତ ଯେଉଁ ରୂପରେ ପ୍ରତୀତ ହେଉଚି ଏକବିଂଶ ଶତାବ୍ଦୀରେ ତାହା ହଠାତ୍ କିଛି ଅଲଗା ହୋଇ ଯିବ ନାହିଁ । ହୁଏତ ତାର କିଛି ପରିବର୍ତ୍ତନ ଓ ପରିବର୍ଦ୍ଧନ ଘଟିପାରେ ।

ପ୍ରକୃତ ପକ୍ଷେ ଗୋଟିଏ ଶତାବ୍ଦୀର ମହାନକୃତି ମାନବଜାତିର ଉପଲବ୍ଧିର ଦିଗନ୍ତକୁ ପ୍ରସାରିତ ଓ ଉତ୍ତେଜିତ କରିଥାଏ ଓ ଏବଂ ତତ୍ ପରବର୍ତ୍ତୀ ଶତାବ୍ଦୀର ସାହିତ୍ୟ ମାନବକୁ ବିଶିଷ୍ଟ ଅନୁଭୂତି ନିମିତ୍ତ ସମର୍ଥ କରିଥାଏ । ଶତାବ୍ଦୀରୁ ଶତାବ୍ଦୀକୁ, ଏହିପରି ସାହିତ୍ୟ, ମାନବଜାତିର ଉପଲବ୍ଧିକୁ ଶାଣିତ, ପ୍ରସାରତି ଓ ଆରୋହଣଶୀଳ କରିଥାଏ ।

ଏହି ସମୟରେ ପ୍ରଶ୍ନଉଠେ ଯେ, ବିଂଶ ଶତକର ଶେଷ ପାଦରେ ଆଜି ଓଡ଼ିଆ ଭାଷା କ୍ଷେତ୍ରରେ ଯେଉଁ ସଙ୍କଟ ଦେଖା ଦେଇଛି, ଯେଉଁଭଳି ସହରୀ ଶିକ୍ଷିତ ସମାଜରେ ଏହାର ଅନାଦର ବଢ଼ି ଚାଲିଛି, ଆସନ୍ତା ଶତାବ୍ଦୀରେ ଏହି ଅନାଗ୍ରହ ଓ ଅବହେଳା କିଭଳି ଅବସ୍ଥାରେ ଉପନୀତ ହେବ ? ଓଡ଼ିଆ ଭାଷା ତୀବ୍ର ହତାଦର ମଧ୍ୟରେ ତିଷ୍ଠିବ କିପରି ? ଏହି ସାହିତ୍ୟ ପାଇଁ ପାଠକ ସମାଜ ପ୍ରସ୍ତୁତ ଥିବ ତ ? ପ୍ରଥମତଃ ଇଂରାଜୀ ମାଧ୍ୟମରେ ପ୍ରାଥମିକ

ଶିକ୍ଷାଦାନ ବହୁଳତା, ଓଡ଼ିଆ ଭାଷା ଶିକ୍ଷା ପ୍ରତି ଅନାଗ୍ରହ କ୍ରମଶଃ ପାଠକ ସଂଖ୍ୟାକୁ ହତାଶ ଜନକ ଭାବେ ହ୍ରାସ କରିଦେବ । ଦ୍ୱିତୀୟତଃ ଚଳଚିତ୍ର ଦୂରଦର୍ଶନର ମନୋରଞ୍ଜନ ମାଧ୍ୟମ ମଣିଷର ମନକୁ ଆକର୍ଷିତ କରି ଚାଲିବ । ଶସ୍ତା ମନୋରଞ୍ଜନରେ ନିଜକୁ ଭୁଲି ଯାଉଥିବା ମଣିଷ ଆଉ ଶବ୍ଦଗଢ଼ା କଳାର ଗଭୀରତାକୁ ହୁଏତ ଲେଉଟି ଚାହିଁବ ନାହିଁ । ଯେ ଆଶଙ୍କା ଯେ ଅମୂଳକ, ତାହା ନୁହେଁ । ମାତୃଭାଷା ପ୍ରତି ଅନାସ୍ଥା ଗୋଟାଏ ଜାତିର ହୀନମନ୍ୟତାର ଲକ୍ଷଣ ଭିନ୍ନ ଅନ୍ୟ କିଛି ନୁହେଁ । କାହିଁକି ଆଜି ଓଡ଼ିଆ ଲୋକେ ନିଜ ଦେଶରେ, ନିଜ ରାଜ୍ୟରେ ଓଡ଼ିଆରେ କଥା କହିବାକୁ ଶ୍ଲାଘ୍ୟ ମଣୁ ନାହାନ୍ତି ? କାହିଁକି ଆଜି ସମାଜର ଅର୍ଥନୀତିକ ଦୁର୍ବଳ ଶ୍ରେଣୀଠାରୁ ଧନିକଶ୍ରେଣୀ ପର୍ଯ୍ୟନ୍ତ ଶିଶୁଗଣଙ୍କୁ ଇଂରାଜୀ ସ୍କୁଲରେ ଭର୍ତ୍ତି କରୁଛନ୍ତି ? ସେଠାରେ ମାତୃଭାଷାକୁ ଗୁରୁତ୍ୱ ଦିଆଯାଉ ନାହିଁ । ସ୍କୁଲ ସ୍ତରରେ ଗୋଟିଏ ଭାଷାରେ ଜ୍ଞାନ ନ ଥିବା ପିଲା ପରବର୍ତ୍ତୀ କାଳରେ ସେହି ଭାଷାର ପୁସ୍ତକପଠନ କରିବାକୁ ସାଧାରଣତଃ ଅନାଗ୍ରହୀ ହୋଇଥାଏ । ତେଣୁ ଏକବିଂଶ ଶତାବ୍ଦୀରେ ଓଡ଼ିଆ ଭାଷାକୁ ସୁଦୃଢ଼ କରିବା ନିମିତ୍ତ ଉଦ୍ୟମ ହେବା ସର୍ବାଦୌ ବାଞ୍ଛନୀୟ । ଏହି ଉଦ୍ୟମ ସରକାରୀ ସ୍ତରରେ ଓ ଜନସାଧାରଣଙ୍କ ମାନସ ସ୍ତରରେ ଆରମ୍ଭ ହେବା ଆବଶ୍ୟକ । ନିଜ ଭାଷା ଓ ସାହିତ୍ୟ ପଠନ ଦ୍ୱାରା ବ୍ୟକ୍ତି ନିଜ ସଂସ୍କୃତି ସଂପର୍କରେ ଅବଗତ ହୁଏ । ଆତ୍ମ ପରିଚୟ ଲାଭ କରେ । ଆମ ଦେଶର ସାହିତ୍ୟ ଓ ସଂସ୍କୃତିର ସ୍ରୋତ ନାନାବାଧା ଓ ବିପଦ ମଧ୍ୟରେ ଯେଉଁପରି ପ୍ରଧାବିତ ହୋଇ ଚାଲିଛି, ତାହା ଅବଶ୍ୟ ଅପ୍ରତିହତ ରହିବ ବୋଲି ଆଶା କରାଯାଇପାରିବ । ଊନବିଂଶ ଶତକରୁ ବିଂଶ ଶତକର ଜନ୍ମ । ମାତ୍ର ବିଂଶ ଶତକର ଓଡ଼ିଆ ସାହିତ୍ୟକୁ ଲକ୍ଷ୍ୟ କଲେ ଏହି ଶତକରେ ଯେ ସାହିତ୍ୟ କ୍ଷେତ୍ରରେ ବିସ୍ଫୋରଣ ଘଟିଛି, ବହୁବିଧ ରଚନା ଓ ଶୈଳୀ ତଥା ଭାବର ପ୍ରସ୍ଫୁଟନ ସମ୍ଭବ ହୋଇଛି- ଏହା ସହଜରେ ସ୍ୱୀକାର କରିବାକୁ ହୁଏ । ତଥାପି ୧୮୯୮ରେ ଲିଖିତ ଫକୀରମୋହନ ସେନାପତିଙ୍କ 'ରେବତୀ' ଗଳ୍ପ ବିଂଶ ଶତକରେ ତା'ର ମୋହକ ପ୍ରଭାବ ବିସ୍ତାର କରି କେତେ କେଜାଣି ଲେଖକଙ୍କ ଦ୍ୱାରା ପୁନର୍ଲିଖିତ ହୋଇ ଚାଲିଛି । ସେହିପରି ସମ୍ଭାବନାଯୁକ୍ତ ୰କାଳିନ୍ଦୀ ପାଣିଗ୍ରାହୀଙ୍କ 'ନେତ୍ରମଣି' ଓ ଗୋପୀନାଥ ମହାନ୍ତିଙ୍କ ବଳୀଦତ୍ତ ଚରିତ୍ର ମିଥ୍ ପାଲଟି ଯାଇଛନ୍ତି । ତେଣୁ ଉତ୍ତମ ସାହିତ୍ୟର ସାମର୍ଥ୍ୟ ଅଛି, ତାହା ଶତାବ୍ଦୀରୁ ଶତାବ୍ଦୀକୁ ଡେଇଁ ଚାଲିବ- ସମୟ ଉପରେ ଆଧିପତ୍ୟ ବିସ୍ତାର କରି ଚାଲିବ- କାଳଜୟୀ ହୋଇ ପାରିବ । ଆମେ କାଳ ବିଭାଜନ ଦ୍ୱାରା ସାହିତ୍ୟକୁ ବିଭାଜିତ କରିପାରୁ ସତ୍ୟ, ମାତ୍ର କାଳଜୟୀ ସାହିତ୍ୟ, ଉପରୋକ୍ତ ମତେ ଏକବିଂଶ ଶତାବ୍ଦୀକୁ ମଧ୍ୟ ନିଜସ୍ୱ ଔଜଲ୍ୟରେ ମୁଗ୍ଧ କରିବ ।

ଶସ୍ତା ମନୋରଞ୍ଜନ ପ୍ରଭାବ ବୃଦ୍ଧି ପାଇ ଚାଲିଲେ ମଧ୍ୟ, ଏପରି ସମୟ ଆସିବ, ଯେବେ ମଣିଷ ଏଇ ଉପର ଦେଖାଣିଆ ମନୋରଞ୍ଜନ ଦ୍ୱାରା କ୍ଳାନ୍ତ ହୋଇ ପଡ଼ିବ । ସେତେବେଳେ ସେ ଖୋଜିବ ଆନ୍ତରିକତାର ସ୍ପର୍ଶ । ସେ ଖୋଜିବ ସାହିତ୍ୟର ନିର୍ଭର ଆଶ୍ରୟ । ବିଂଶ ଶତକର ଉପଭୋକ୍ତାବାଦ ଓ ଗଣ ମାଧ୍ୟମର ହଟଚମଟ ଭିତରେ ଦିଗଭ୍ରଷ୍ଟ

ହୋଇଥିବା ମାନବ ସମାଜ ମରୁଭୂମି ମଧ୍ୟରେ ବାଟ ହଜାଇଥିବା ନଦୀ ଭଳି ପ୍ରତୀତ ହେଉଥିଲେ ହେଁ ସମୟ ଆସିବ, ଯେତେବେଳେ ପ୍ରାଣର ଆଶ୍ୱାସ ପାଇଁ ସେ ସାହିତ୍ୟକୁ ଖୋଜିବ, କବିତାକୁ ଲୋଡ଼ିବ । ସାହିତ୍ୟ ଆଡ଼କୁ ହାତ ବଢ଼ାଇବ । ସାହିତ୍ୟ ପଠନ ଯେଉଁ ଦୀର୍ଘ ସ୍ଥାୟୀ ଉପଲବ୍ଧି ଦେଇଥାଏ, ତାହାର ସମକକ୍ଷ ଉପଲବ୍ଧି ଅନ୍ୟ କୌଣସି ମାଧ୍ୟମ ଦେବାକୁ ଅକ୍ଷମ ନିଶ୍ଚୟ ।

ସାହିତ୍ୟ ସେଥି ନିମିତ୍ତ ପ୍ରସ୍ତୁତ ହୋଇଥିବା ଦରକାର । ଆଜିର ଅବକ୍ଷୟୀ ସମାଜରେ ଯେଉଁଠି ଘୃଣା, ଈର୍ଷା ଓ ତୋଷାମୋଦ ପ୍ରଚୁର, ଯେଉଁଠି ହିଂସା ସଂତ୍ରାସ, ସ୍ୱାର୍ଥ ସର୍ବସ୍ୱତା ଗୋଷ୍ଠୀ ଜୀବନକୁ ଭୀତ, ସଂତ୍ରସ୍ତ କରିପକାଉଛି, ଏତେବେଳେ ସାହିତ୍ୟର ଭୂମିକା କ'ଣ ? ଅନ୍ୟ ଅର୍ଥରେ ସାହିତ୍ୟିକର ଭୂମିକା କ'ଣ ?

ସାହିତ୍ୟିକ ସମାଜର ସବୁଠାରୁ ସଚେତନ ନାଗରିକ । ସମାଜର ଆଶାନିରାଶା ତାର ଅନ୍ତଃକରଣକୁ ଆନ୍ଦୋଳିତ କରେ । ତେଣୁ ଏକବିଂଶ ଶତକର ସାହିତ୍ୟରେ ମାନବିକ ସଂବେଦନା ଅଧିକରୁ ଅଧିକ ପ୍ରକଟିତ ହେବା ଆବଶ୍ୟକ । ମଣିଷର ଭୟ ଓ ଦୁଃଖକୁ ଲାଘବ କରିବାର ସାମର୍ଥ୍ୟ ହାସଲ କରିବା ଓ ପୀଡ଼ିତ ମଣିଷର ସନ୍ନିଧିରେ ରହି ତା'ମନରେ ଆଶା ଓ ଉତ୍ସାହ ଭରିଦେବା ସାହିତ୍ୟର ଲକ୍ଷ୍ୟ ହେଉ- ଏହା ଆଶା କରିବା ନିହାତି ସ୍ୱାଭାବିକ । ଏକବିଂଶ ଶତକର ସାହିତ୍ୟ ଯଦି ସାଧାରଣ ମଣିଷର ପ୍ରାଣର ବାଣୀ ଫୁଟାଇ ନ ପାରିଲା, ଯଦି ତା'ର ଅନ୍ତରଙ୍ଗ ଅଧା ସ୍ୱପ୍ନକୁ ରୂପ ଦେଇ ନ ପାରିଲା, ଯଦି ତାର ସମ୍ଭାବନାକୁ ଆବିଷ୍କାର କରି ନ ପାରିଲା, ଯଦି ସାହିତ୍ୟ ହୋଇ ନ ପାରିଲା ଏହି ଶତକର ମଣିଷର ଆତ୍ମାର ପ୍ରତିଭୂ, ତେବେ ଏକବିଂଶ ଶତାବ୍ଦୀ ତାହାକୁ ଗ୍ରହଣ କରିବ ନାହିଁ । ସତ୍ ସାହିତ୍ୟିକ ମାତ୍ରେ ଏ ବିଷୟରେ ସଚେତନ । ଆମେ ଆଜି ଆଶା କରିବା ଯେ, ଆଗତ ପ୍ରାୟ ଏକବିଂଶ ଶତକର ସାହିତ୍ୟ ମଣିଷର ନିକଟବର୍ତ୍ତୀ ହେଉ,ହେଉ ତା'ର ଆତ୍ମାର ଅକପଟ ଉଚ୍ଚାରଣ, ତାର ଆକାଂକ୍ଷାର ଉଜ୍ଜ୍ୱଳ ରୂପକୁ ପ୍ରତିବିମ୍ବିତ କରୁ । ସାହିତ୍ୟ ମାନବାତ୍ମାର ତୃପ୍ତିବୋଧ ନିମିତ୍ତ ଅଭିପ୍ରେତ ହେଉ ।



## ଲେଖିକାଙ୍କର ଅନ୍ୟାନ୍ୟ ପୁସ୍ତକ

**କବିତା :**

☛ ଅସ୍ତ ଜହ୍ନର ଏଲିଜି (୧୯୬୯)

☛ ଗ୍ରସ୍ତ ସମୟ (୧୯୭୪)

☛ ସାହାଡ଼ା ସୁନ୍ଦରୀ (୧୯୭୮)

☛ ନିୟତ ବସୁଧା (୧୯୮୦, ୧୯୮୬)

☛ ନିମିଷେ ଅକ୍ଷର (୧୯୮୫) (ଓଡ଼ିଆ ସାହିତ୍ୟ ଏକାଡ଼େମୀ ପୁରସ୍କାର ପୁରସ୍କାର ପ୍ରାପ୍ତ)

☛ ମହାମେଘ (୧୯୮୮)

☛ ଶବରୀ (୧୯୯୧) (ଇମ୍ଫା ଶିଳ୍ପ ଗୋଷ୍ଠୀ ପ୍ରଦତ୍ତ ଶାରଳା ପୁରସ୍କାର ପ୍ରାପ୍ତ)

☛ ତନ୍ମୟ ଧୂଳି (୧୯୯୬) (କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ)

☛ ଅଧା ଅଧା ନକ୍ଷତ୍ର (୨୦୦୧) (କାମଧେନୁ ପ୍ରତୀକ - ଶାଶ୍ୱତୀ ରାଷ୍ଟ୍ରୀୟ ପୁରସ୍କାର ପ୍ରାପ୍ତ)

**ନିବନ୍ଧ/ପ୍ରବନ୍ଧ/ଗଦ୍ୟ**

☛ କଳ୍ପନାର ଅଭିଷେକ (୧୯୮୨, ୧୯୯୮)

☛ ସ୍ପନ୍ଦନର ଭୂମି (୧୯୯୩)

☛ ପ୍ରତିଫଳନ (୧୯୯୩)

☛ ଉତ୍ତର ଆଧୁନିକ ଓଡ଼ିଆ କବିତା ଓ ଅନ୍ୟାନ୍ୟ ପ୍ରବନ୍ଧ (୧୯୯୯)(ଭାରତୀୟ ସମାଲୋଚକମଣ୍ଡଳୀ ପୁରସ୍କାର ପ୍ରାପ୍ତ)

## ଅନୁବାଦ

- ☞ ଅପାପ ବିଦ୍ଧ (ଉପନ୍ୟାସ)
- ☞ ମୂଳଲେଖା-ପର୍ଲ ଏସ୍. ବକ୍
- ☞ କ୍ରୀତଦାସ (ଉପନ୍ୟାସ)
- ☞ ମୂଳଲେଖା - ଆଇ. ବି. ସିଙ୍ଗର
- ☞ ସାହସର ଶିଖା (ଉପନ୍ୟାସ)
- ☞ ମୂଳଲେଖା - ଚିଂଘିଜ୍ ଆଇତ୍‌ମାତଭ
- ☞ ଭିନ୍ନ ଦେଶୀର ମୁହଁ (କବିତା)

  ମୂଳଲେଖା : ଲାଟଭିଆନ୍ କବି - ମରିସ ଚାକ୍ ଲାଇ ଓ ରାଇସନ୍

- ☞ କହ୍ଲଣ ଚରିତ
- ☞ ନଗର ମନ୍ଥନ

} କେନ୍ଦ୍ର ସାହିତ୍ୟ ଏକାଡେମୀ ଆନୁକୁଲ୍ୟରେ

- ☞ ସୁବ୍ରମଣ୍ୟ ଭାରତୀଙ୍କ ଜୀବନୀ- ନ୍ୟାସ୍‌ନାଲ ବୁକ୍ ଟ୍ରଷ୍ଟ ଆନୁକୁଲ୍ୟରେ

## ହିନ୍ଦୀ ଅନୁବାଦରେ ପ୍ରକାଶିତ କବିତା ଗ୍ରନ୍ଥ

- ସମୟ ନହୀଁ ହୈ (ଚୁନିହୁଇ କବିତାଏଁ)

  ଅନୁବାଦ - ଶ୍ରୀନିବାସ ଉଦ୍‌ଗାତା

  ରାଧାକୃଷ୍ଣ ପ୍ରକାଶନ, ଦରିଆ ଗଞ୍ଜ, ନୂଆଦିଲ୍ଲୀ

- ଶବରୀ (କାବ୍ୟ)

  ଅନୁବାଦ - ଶ୍ରୀ ନିବାସ ଉଦ୍‌ଗାତା

  ବାଣୀ ପ୍ରକାଶନ, ନୂଆଦିଲ୍ଲୀ

- ଅଧା ଅଧା ନକ୍ଷତ୍ର

  ଅନୁବାଦ - ଡଃ ରାଜେନ୍ଦ୍ର ପ୍ରସାଦ ମିଶ୍ର

  ମେଧାବୁକ୍‌ସ, ଶାହାଦରା, ନୂଆଦିଲ୍ଲୀ





ଏହି ସଂକଳନସ୍ଥ ଲଳିତ ନିବନ୍ଧଗୁଡ଼ିକର ଆବେଦନ ପ୍ରତିଭାଙ୍କର ମୁଗ୍ଧ ପାଠକପାଠିକାମାନଙ୍କ ପାଇଁ ନିଶ୍ଚୟ କିଛି ସ୍ୱତନ୍ତ୍ରତା ଦାବୀ କରେ । ଏଗୁଡ଼ିକ ହେଲା ଆତ୍ମନେପଦୀ ଫିଚର ଧର୍ମୀ ଗଳ୍ପ ଓ ରମ୍ୟରଚନା । ଏସବୁ ଲେଖାର ରଚନାଶୈଳୀ ଯେପରି ମୁକ୍ତ - ସେହିପରି ମଧ୍ୟ ସୁସଂବନ୍ଧ । ଜୀବନ ଓ ସମାଜ ସହିତ ଜଡ଼ିତ, ସଂପୃକ୍ତ ଓ ଦାୟିତ୍ୱସଂପନ୍ନ ହୋଇ ତା'ର ବିଭିନ୍ନ ସମସ୍ୟା (ସେଥିରୁ କେତେକ ସମକାଳୀନ ଓ ଆଉ କେତେକ ସର୍ବକାଳର) ସଂପର୍କରେ କବି କେତେବେଳେ ତାଙ୍କର ମନନ-ସମ୍ଭୂତ କିଛି ଚିନ୍ତା ପ୍ରକାଶ କରିଛନ୍ତି ତ, ଆଉ କେତେବେଳେ ପୁଣି କେବଳ ମନନ ନୁହେଁ - ତା' ସହିତ ତାଙ୍କ ହୃଦୟର ସମ୍ବେଦନ ମିଶି ଯିବାରୁ ସେ ଗୁଡ଼ିକୁ ନେଇ ସେ ନିଜ ଭିତରେ ଘାରି ହୋଇଛନ୍ତି । କେତେବେଳେ କେଉଁ ଦୁଃଖାନ୍ତ ଘଟଣାରେ ତାଙ୍କର କବି ହୃଦୟ ବିଳପି ଉଠିଛି ତ, କେତେବେଳେ ପୁଣି ଅନ୍ଧନିୟତି ଓ ଅନ୍ଧସମାଜର ଉତ୍ପୀଡ଼ନ ଓ ଅପବିଧାନ ଉପରେ କ୍ରୁଦ୍ଧ ହୋଇ ଉଠିଛି । କେତେବେଳେ ପୁଣି ଏକ ଶୁଭକାମୀ କଲ୍ୟାଣମୟୀ ମାତୃ-ଚେତନାରେ ଉଦ୍‌ବୁଦ୍ଧ ହୋଇ ସେ ଅସହାୟ, ଅଜ୍ଞାନ, ହତଭାଗ୍ୟ ମଣିଷର ସର୍ବବିଧ ଦୁଃଖ ଯନ୍ତ୍ରଣାର ଆଶୁଉପଶମ ପାଇଁ ଏକ ବ୍ୟାକୁଳ ଅଭୀପ୍ସାମୟ ପ୍ରାର୍ଥନା ମଧ୍ୟ କରିଛନ୍ତି । ଏଇଥିଲାଗି ଏ ରଚନାଗୁଡ଼ିକର ପାଠକପାଠିକାମାନେ କେବଳ ସେଥିରୁ ଚିନ୍ତାର ବିଷୟଟିଏ ବା ଅନୁସନ୍ଧାନର ତଥ୍ୟଟିଏ ବା ତତ୍ତ୍ୱଟିଏ ପାଇବେ ନାହିଁ - ସେମାନଙ୍କ ନିଥର ହୃଦୟକୁ ସ୍ପର୍ଶ ଓ ଆଲୋଡ଼ିତ କରିବା ପାଇଁ କେତେକେତେ ଅନୁଭବ ଓ ଉପଲବ୍ଧିର ସ୍ପନ୍ଦନ ମଧ୍ୟ ଲାଭ କରିବେ ।